# ପଦାର୍ଥ ପଥିକ

## ତୃତୀୟ ଖଣ୍ଡ



# ପଦାର୍ଥ ପଥିକ

(ତୃତୀୟ ଖଣ୍ଡ)

ପ୍ରକାଶକ :
ଭାଗ୍ୟଧର ସାହୁ
ପଥିକ ପ୍ରକାଶନୀ,
ଗଡ଼ଗୋପିନାଥ ପ୍ରସାଦ କଲୋନୀ,ଏଲ୍ ୧୬୬, ରସୁଲଗଡ଼,
ଭୁବନେଶ୍ୱର-୭୫୧୦୧୦, ଓଡ଼ିଶା

ଅକ୍ଷର ସଜ୍ଜା :
ଶାରଳା ଗ୍ରାଫିକ୍ସ, ଭୁବନେଶ୍ୱର

ମୁଦ୍ରଣ :
ଶୋଭନ ପ୍ରେସ୍, ଭୁବନେଶ୍ୱର

ପ୍ରଚ୍ଛଦ :
ରମେଶ ଗୁମାନସିଂହ

ପ୍ରଥମ ପ୍ରକାଶ : ୨୦୦୩

ସହଯୋଗ ରାଶି : ୪୫.୦୦ ଟଙ୍କା ମାତ୍ର

ISBN - 81- 88034 - 12- 6

# ସୂଚୀପତ୍ର

# ଉପକ୍ରମଣିକା

'ପରାର୍ଥ ପଥିକ'ର ତୃତୀୟ ଭାଗ ପାଇଁ ଉପକ୍ରମଣିକାଟିଏ ଲେଖିଲା ବେଳକୁ ମନର ଆଖିରେ ବାରମ୍ବାର ଭାସି ଉଠୁଛି ଶାନ୍ତ ଏକ ସକାଳର ଦୃଶ୍ୟ :

ଉପରେ ନିର୍ମେଘ ନୀଳାକାଶ। ପ୍ରାଚୀ ତଟରେ ଉଦୟରାଗର ସ୍ୱର୍ଣ୍ଣଛଟା। ତଳେ ବିସ୍ତୃତ ଭୂଇଁକୁ ଦି ଭାଗ କରି ଅଙ୍କା ବଙ୍କା ନଈଟିଏ ପରି ଦୂର ଦିଗ୍‌ବଳୟ ଆଡ଼କୁ ପ୍ରସରି ଯାଇଛି ଏକ ଦୀର୍ଘ ପଥ।

ଏବଂ ସୂର୍ଯ୍ୟସ୍ନାତ ସେଇ ପଥରେ ସାଙ୍ଗ ମେଳରେ ଅନ୍ତରଂଗ ଆଳାପ ଜମାଇ ଆଗକୁ ବଢ଼ି ଚାଲିଛନ୍ତି ଜଣେ ପଥିକ। ସବୁରି ପରିଚିତ, ସବୁରି ମିତ ସେ। ସମସ୍ତଙ୍କଠୁ ବାରି ହୋଇ ପଡୁଛନ୍ତି ନିଜସ୍ୱ ପ୍ରଜ୍ଞାଦୀପ୍ତ ପ୍ରତିଭା ଓ ଅସାଧାରଣ ବ୍ୟକ୍ତିତ୍ୱ ବଳରେ। ମାତ୍ର ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ତାଙ୍କର ସେ ପ୍ରଚଣ୍ଡ ପ୍ରତିଭା ତାଙ୍କୁ କେବେ ସାଧାରଣ ମଣିଷଠାରୁ ଦୂରଛଡ଼ା ହୋଇ ରହିବାକୁ ମନ୍ତ୍ରଣା ଦେଇ ନାହିଁ। ଗଜଦନ୍ତ ଗମ୍ବୁଜରେ ଏକାକୀ ଏକ ଗୌରବମଣ୍ଡିତ ଜୀବନ ବଂଚିବାର ପ୍ରଲୋଭନ ସେ କଦାପି ଅନୁଭବ କରି ନାହାନ୍ତି। ସାମାନ୍ୟତମ ଦୂରତା ନରଖି ସାଧାରଣ ମଣିଷମାନଙ୍କ ସହ ସହଜରେ ମିଶିଯିବାକୁ, ସେମାନଙ୍କ ସହ ସବୁବେଳେ ସଂପର୍କିତ ହୋଇ ରହିବାକୁ ସତତ ବ୍ୟାକୁଳ ସେ। ଅତୁଳନୀୟ ସିଦ୍ଧି ଓ ସମ୍ମାନର ଅଧିକାରୀ ହୋଇ ବି ବେଶଭୂଷା ବା ବ୍ୟବହାର କେଉଁଥିରେ ଏତେ ଟିକେ ଆଟୋପ ନାହିଁ କି ଅଭିମାନ ନାହିଁ। ନିତାନ୍ତ ସାଧା ସିଧା ସରଳ ନମ୍ର ମଣିଷଟିଏ। ନୀରବ ନିରଳସ ସାଧକଟିଏ।

ଏହି ସଂସାରରେ ମହାନ୍ ଆତ୍ମାମାନେ କୁଆଡ଼େ ଜଣେ ଜଣେ ନିଃସଙ୍ଗ ପଦାତିକ। ସାଧାରଣ ଲୋକେ ସେମାନଙ୍କ ମହିମା ଓ ତ୍ୟାଗକୁ ବୁଝନ୍ତି ନାହିଁ, ପରିବର୍ତ୍ତନ ଓ ଉତ୍ତରଣ ପାଇଁ ସେମାନଙ୍କ ଆହ୍ୱାନର ଉତ୍ତର ଦିଅନ୍ତି ନାହିଁ। ପକ୍ଷାନ୍ତରେ ସେମାନଙ୍କ ଅଯାଚିତ ସାହାଯ୍ୟ ଓ ସଖ୍ୟକୁ ନିଷ୍ଠୁର ଭାବରେ ପ୍ରତ୍ୟାଖ୍ୟାନ କରନ୍ତି। ଯେଉଁମାନେ ଗଭୀର ଅନୁକଂପା ନେଇ ଆଗେଇ ଆସନ୍ତି ଅଜ୍ଞାନତା, ଅନ୍ଧକାର ଓ ଦୁଃଖଯନ୍ତ୍ରଣାରୁ ମଣିଷକୁ ମୁକ୍ତି ଦେବା ଲାଗି ସେମାନେ ଏଠାରେ

ଚିରକାଳ ଲାଞ୍ଛନା ସହନ୍ତି, ଉପହସିତ ଓ ନିର୍ଯ୍ୟାତିତ ହୁଅନ୍ତି । ପ୍ରେମର ପ୍ରତିଦାନରେ ଅକୃତଜ୍ଞ ଅଜ୍ଞାନ ମଣିଷ ସେମାନଙ୍କୁ କ୍ରୁଶ-କାଠରେ ଚଢ଼ାଏ, ଗୁଳିବିଦ୍ଧ କରେ ଅଥବା ବିଷର ପିଆଲା ପିଆଇ ହତ୍ୟା କରେ ।

ଗୋଟିଏ ଦୃଷ୍ଟିକୋଣରୁ ଏପରି ବିଚାରର ସତ୍ୟତାକୁ ଅସ୍ୱୀକାର କରାଯାଇ ନ ପାରେ । କିନ୍ତୁ ପୃଥିବୀ ଓ ମାନବପ୍ରେମୀ ଏହି ମହାତ୍ମାମାନେ ସତରେ କ'ଣ ନିଃସଙ୍ଗ ? ବିଷୟଟିକୁ ଅନ୍ୟ ଏକ ଦୃଷ୍ଟି କୋଣରୁ ଦେଖିଲେ ସେମାନେ ତ ଆସିଥାନ୍ତି ଲୋକସଂଗ୍ରହ ପାଇଁ । ନିଃସଙ୍ଗତାର ସମସ୍ତ ପଥର କାନ୍ଥ ଭାଙ୍ଗିଦେଇ ଅନ୍ୟମାନଙ୍କ ସହ ସାଙ୍ଗ ହେବା ପାଇଁ, ସେମାନଙ୍କ ହାତଧରି ଉତ୍ତୋଳିତ କରିନେବା ପାଇଁ । ସେଇ କାରଣରୁ ହିଁ ଇଚ୍ଛାକୃତ ଭାବରେ ସେମାନେ ଯାବତୀୟ ଯାତନା ଓ କ୍ଳେଶ ବରଣ କରନ୍ତି । କଣ୍ଟକାକୀର୍ଣ୍ଣ ପଥରେ ପାଦ ପକାନ୍ତି । କାଦୁଅ ଭିତରକୁ ପଶନ୍ତି ଏବଂ ସର୍ବୋପରି ସାଥୀ ମଣିଷମାନଙ୍କର କଲ୍ୟାଣ ପାଇଁ ଆପଣାକୁ ଅକାତରେ ଅର୍ପଣ କରନ୍ତି ।

କିଏ ସେମାନଙ୍କୁ ଭୁଲ ବୁଝୁ ବା ଏପରିକି ପ୍ରତାରିତ ବି କରୁ ସେଥିପ୍ରତି ସେମାନଙ୍କର ଭୟ ନଥାଏ, ଭ୍ରୂକ୍ଷେପ ନଥାଏ । ତଥାପି ସେମାନେ ସଂସାରଯାକ ମନୁଷ୍ୟ-ସାଙ୍ଗମାନଙ୍କୁ ହିଁ ଲୋଡୁଥାନ୍ତି । ଶିଖରାରୋହଣ ପ୍ରକ୍ରିୟାରେ ଆତ୍ମାର ଦୋସରମାନଙ୍କ ସହ ନିୟତ ଡୋର ଲଗାଉଥାନ୍ତି ।

ପୂର୍ବାଲୋଚିତ ଆମର ପରିଚିତ ପଥିକବଂଧୁ ଜଣକ ଏଇମିତି ଏକ ସାଙ୍ଗ ଖୋଜୁଥିବା ମଣିଷ । ତେଣୁ ଏକେଲା ନୁହେଁ, ସମସ୍ତଙ୍କ ସହ ବାଟ ଚାଲିବାରେ ତାଙ୍କର ଆଗ୍ରହ । ସମସ୍ତଙ୍କୁ ନେଇ ନୂଆ ଏକ ଜୀବନ ବଂଚିବାରେ ତାଙ୍କର ଆନନ୍ଦ । ଆପଣାର ଏକକ ମୁକ୍ତି ପାଇଁ ସେ କେବେ ବି ଲାଳାୟିତ ହୋଇ ନାହାନ୍ତି । ସମସ୍ତଙ୍କର ମୁକ୍ତି ଓ ସିଦ୍ଧିଲାଭ ଉଦ୍ଦେଶ୍ୟରେ ସେ ଶିକ୍ଷା ଓ ସାହିତ୍ୟକୁ ମାଧ୍ୟମ କରି ନିରବଚ୍ଛିନ୍ନ ସାଧନା କରିଆସିଛନ୍ତି । ତାଙ୍କର ଶକ୍ତିମନ୍ତ ଲେଖନୀ ସାହାଯ୍ୟରେ ସମାଜର ଅଶିକ୍ଷା, ଅନ୍ୟାୟ ଓ ଅସମାନତା ବିରୋଧରେ ନୀରବ ସଂଗ୍ରାମ ଚଳାଇ ଆସିଛନ୍ତି ।

ସାମୟିକ ସୃଜନ-ଉନ୍ମାଦନାର ବଶବର୍ତ୍ତୀ ହୋଇ ବା ତଥାକଥିତ ପ୍ରେରଣାରୂପୀ 'କାଳିସୀ' କବଳିତ ହୋଇ ସେ କେବେ କିଛି ଲେଖନ୍ତି ନାହିଁ । ସାହିତ୍ୟ ତାଙ୍କ ପାଇଁ କେବଳ ଏକ କଳ୍ପନା ବିଳାସ ନୁହେଁ କି ଶବ୍ଦମୈଥୁନ ନୁହେଁ, ଏହା ତାଙ୍କ ଆତ୍ମପ୍ରକାଶର ବଳିଷ୍ଠ ମାଧ୍ୟମ । ସାଥୀ ସହଯାତ୍ରୀମାନଙ୍କ ପ୍ରତି ତାଙ୍କର କିଛି ବକ୍ତବ୍ୟ ଥାଏ ବୋଲି ସେ ଲେଖନ୍ତି । ପ୍ରକୃତ ଅର୍ଥରେ ସାହିତ୍ୟ ତାଙ୍କ ପାଇଁ ଏକ ଜୀବନସାଧନା । ତାଙ୍କ ଜୀବନ ଓ ସାହିତ୍ୟ ମଧ୍ୟରେ କୌଣସି ବିଭାଜନ ରେଖା

ନାହିଁ । ତାଙ୍କ ଆଚରଣ ଓ ଉଚ୍ଚାରଣ ଭିତରେ ତିଳେ ମାତ୍ର ଅନ୍ତର୍ଦ୍ୱନ୍ଦ୍ୱ ବା ଅସଂଗତି ନାହିଁ ଯାହା ଅନ୍ୟ ଅନେକ ଅସାହିତ୍ୟିକ ବା ତଥାକଥିତ ସାହିତ୍ୟିକମାନଙ୍କ କ୍ଷେତ୍ରରେ ଆମେ ଦେଖିବାକୁ ପାଉଁ ।

ତାଙ୍କ ସୃଜନଶୀଳ ବ୍ୟକ୍ତିତ୍ୱର ସ୍ୱଚ୍ଛନ୍ଦ ବିହାର ପାଇଁ ସେ ବାଛିଛନ୍ତି ପ୍ରବନ୍ଧ ସାହିତ୍ୟର ବିମୁକ୍ତ ପରିସର । ଚିରସ୍ରାବୀ ନଦୀଧାରା ପରି ତାଙ୍କ ଲେଖନୀରୁ ଅବିରାମ ଝରିଚାଲିଛି ଅଜସ୍ର ପ୍ରବନ୍ଧର ଅଖଣ୍ଡ ପ୍ରବାହ । ବିଷୟ ବୈଚିତ୍ର୍ୟ ସତ୍ତ୍ୱେ ତାଙ୍କ ସାହିତ୍ୟର ଅନ୍ତଃସ୍ୱର କିନ୍ତୁ ଅତ୍ୟନ୍ତ ସ୍ପଷ୍ଟ ଓ ଅକପଟ । ସବା ମୂଳରେ ମଣିଷ । ତେଣୁ ସବୁ ମଣିଷ ଏକ ସୁନ୍ଦର ଓ ସଂପନ୍ନ ଜୀବନ ଯାପନ କରିବେ । ଏ ପୃଥିବୀ ଆଉ ଥିଲାବାଲା ଏବଂ ନଥିଲାବାଲା- ଏପରି ଦୁଇ ଶିବିରରେ ବିଭକ୍ତ ହୋଇ ରହି ନଥିବ, ସମସ୍ତଙ୍କପାଇଁ ସମାନ ସୁଯୋଗ ଓ ସୁବିଧା ଉପଲବ୍ଧ ହେଉଥିବ, ପୁରୁଣା ପରମ୍ପରାବଦ୍ଧ ସମାଜ ସବୁବେଳେ ଏକ ନୂଆ ସମାଜକୁ ବାଟ ଛାଡ଼ିଦେଉଥିବ, ରାଷ୍ଟ୍ର ତଥା ଶାସନ ବ୍ୟବସ୍ଥା ବ୍ୟକ୍ତି ସତ୍ତାର ସ୍ୱାଧୀନ ଓ ନିର୍ବିଘ୍ନ ବିକାଶ ପାଇଁ ଅନୁକୂଳ ବାତାବରଣଟିଏ ଯୋଗାଇ ଦେଉଥିବ ଏବଂ ସର୍ବୋପରି ସମସ୍ତେ ସାଙ୍ଗ ହୋଇ ପାହାଚ ପାହାଚ ଉଠିଯାଉଥିବେ ଏକ ଆନନ୍ଦମୟ ଭବିଷ୍ୟତ ଆଡ଼କୁ- ଏହା ହିଁ ତାଙ୍କ ବକ୍ତବ୍ୟର ମୂଳକଥା ।

ସ୍ୱାଧୀନୋତ୍ତର ଭାରତବର୍ଷରେ ଉପାସୀ-ମଣିଷଟି ଅନ୍ତତଃ ଦୁଇ ଓଳି ଖାଇବାକୁ ପାଉ । ବାରଦୁଆର ଶୁଣିପିଣ୍ଡା ହେଉଥିବା ଓ ଫୁଟ୍‌ପାଥିରେ ଶୋଉଥିବା ବୁଢ଼ା ଲୋକଟି ମୁଣ୍ଡଗୁଞ୍ଜିବାକୁ ଥାନ ବା ଆଶ୍ରୟଟିଏ ପାଉ, ସକାଳୁ ସକାଳୁ ଜରି ଗୋଟାଉଥିବା ଝିଅଟି ଇସ୍କୁଲକୁ ଯାଉ, ରୋଗୀଟିଏ ଉପଯୁକ୍ତ ଔଷଧ ଓ ସେବାଯତ୍ନ ପାଉ, ବିଜ୍ଞାନ ବଳରେ ବନ୍ୟା,ବାତ୍ୟା ଓ ମରୁଡି ଆଦି ଦୈବ ଦୁର୍ବିପାକର ମୁକାବିଲା ହେଉ, ସବୁମଣିଷଙ୍କର ସର୍ବନିମ୍ନ ଆବଶ୍ୟକତା ପୂରଣ ହେଉ ଓ ଏ ପୃଥିବୀ ଅନ୍ୟର ପାହାଚରେ ପାଦରଖି ଆନନ୍ଦ ଆଡ଼କୁ ଅଗ୍ରସର ହେଉ- ଏତିକି ହିଁ ତ ତାଙ୍କର ଆଶା ଓ ଅଭିଳାଷ !

ଯାହା କିଛି ମଣିଷର ଅଗ୍ରଗତି ପଥରେ ବାଧା ଆଣିଦିଏ, ଯାହାକିଛି ମାନବିକତାର ଅଭ୍ୟୁଦୟକୁ ବିଡ଼ମ୍ବିତ କରେ, ଯାହା କିଛି ମଣିଷଜାତିର ବିକାଶକୁ ଖର୍ବ କରିପକାଏ ଓ ତାହାର ବିବର୍ତ୍ତନକୁ ବିଳମ୍ବିତ କରି ରଖେ, ସେ ସବୁକୁ ସେ ନିର୍ଭୀକ ଓ ଶାଣିତ ସମାଲୋଚନା ମାଧ୍ୟମରେ ନିର୍ଦ୍ଦୟ ଭାବରେ ବ୍ୟକ୍ତ କରନ୍ତି ।

ତାଙ୍କ ସାହିତ୍ୟ ଏବଂ ଅଭିଭାଷଣରେ ସାମାଜିକ ଓ ଆଧାତ୍ମିକ ବିପ୍ଳବର ଶଙ୍ଖଧ୍ୱନି ଶୁଭେ । ମନେହୁଏ ବ୍ୟକ୍ତି ତଥା ସମୂହ ଜୀବନରେ ସମାନତା, ସ୍ୱାଧୀନତା

ଓ ଭ୍ରାତୃତ୍ୱର ଉପଲବ୍ଧି ନ ହେବା ଯାଏ ତାଙ୍କର ବିଦ୍ରୋହୀ ଆତ୍ମା ସଂଗ୍ରାମରୁ ନିବୃତ୍ତ ହେବନାହିଁ । ଛାତ୍ର ଜୀବନରୁ ସେ ଦେଶମୁକ୍ତିର ମହାସଂଗ୍ରାମରେ ଝାସ ଦେଇଥିଲେ । ଆଜି ଅଶୀତିପର ବୟସରେ ଉପନୀତ ହୋଇ ବି ତାଙ୍କର ସେ ଯୋଦ୍ଧୃଭାବ ନିସ୍ତେଜ ହୋଇନାହିଁ । ତାଙ୍କ ଭିତରର ତାରୁଣ୍ୟ ଓ ଉଦ୍ଦାମତା ଏବେ ବି ଅମ୍ଳାନ ରହିଛି । ବୟସାଧିକ୍ୟ ଓ ଅସୁସ୍ଥତାର ପ୍ରଭାବରେ ତାଙ୍କର ଶରୀରଟି ସିନା ଶୀର୍ଣ୍ଣ ଦିଶୁଛି, ହେଲେ ପ୍ରଚଣ୍ଡ ଆତ୍ମଶକ୍ତି ଅନିର୍ବାଣ ହୋଇ ଜଳୁଛି ତାଙ୍କ ଆନ୍ତର ସତ୍ତାରେ । ପର୍ବତର ଜୀର୍ଣ୍ଣ ଗୁହାଟି ଭିତରୁ ତଥାପି ପ୍ରତିଧ୍ୱନିତ ହେଉଛି ଏକ ପରାକ୍ରମୀ ସିଂହର ଗର୍ଜନ ।

ବାର୍ଦ୍ଧକ୍ୟକୁ ସେ ଅସ୍ୱୀକାର କରନ୍ତି । ତାଙ୍କ ଜୀବନରେ ସେ ସତେ ଅବା ଅହରହ ଶୁଣୁଛନ୍ତି ମାଆଙ୍କର ସେଇ ଉଦ୍ଦୀପନାମୟୀ ଉଦ୍‌ବୋଧନ :

Remain young. Never stop striving towards perfection.

ଅର୍ଥାତ୍- ତରୁଣ ରହ, ପୂର୍ଣ୍ଣତାର ପ୍ରୟାସରୁ କେବେ ବି ବିରତ ହୁଅନାହିଁ ।

ଜଣେ ତା' ଜୀବନରେ କେତେ ବର୍ଷ ବଞ୍ଚିଲା, ତାହାର ସଂଖ୍ୟା କଦାପି ତାହାକୁ ବୁଢ଼ା କରିଦିଏ ନାହିଁ । ଆମର ଅଗ୍ରଗତି ବନ୍ଦ ହୋଇଗଲେ ହିଁ ଆମେ ବୁଢ଼ା ହେବାକୁ ଆରମ୍ଭ କରୁ । ଏହି ମର୍ମରେ ଦେଖିଲେ ଏ ଯାବତ୍ ବାର୍ଦ୍ଧକ୍ୟ ତାଙ୍କୁ ସ୍ପର୍ଶ କରି ପାରିନାହିଁ । ପ୍ରାକୃତିକ ନିୟମରେ ବୟସବୃଦ୍ଧି ସହିତ ଶରୀରଟି ଅବକ୍ଷୟର ଶିକାର ହୋଇଛି ସତ, ସେ କିନ୍ତୁ ଏ ସବୁକୁ ଏତେ ବେଶୀ ଖାତିର କରନ୍ତି ନାହିଁ । ଏ ବୟସରେ ବି ସେ ଅସମ୍ଭବ ଭାବରେ ଆତ୍ମନିର୍ଭରଶୀଳ । ପ୍ରତିଦିନ ସେ ରୋଷେଇ କରନ୍ତି ବା ରୋଷେଇରେ ସାହାଯ୍ୟ କରନ୍ତି, ବାସନ ମାଜନ୍ତି, ନିଜର ଲୁଗାପଟା ନିଜେ ସଫା କରନ୍ତି, ବଗିଚା କାମ କରନ୍ତି, ପୁଣି ବଂଧୁମେଳରେ ଚାଲି ଚାଲି ହାଟ କରିବାକୁ ବି ଯାଆନ୍ତି ।

ଅସୁସ୍ଥତା ପ୍ରତି ମଧ ସେଇ ଦୁର୍ଦ୍ଧର୍ଷ ଓ ବେପରବାୟ ଭାବ । ତା'ରି ଭିତରେ ସବୁକାମ ଚାଲିଥାଏ । କାଶ ଓ କଫରେ ବେଳେ ବେଳେ କଣ୍ଠରୁଦ୍ଧ ହୋଇଯାଏ, ମାତ୍ର ରବୀନ୍ଦ୍ର-ସଂଗୀତ ଗାଇବାରୁ ସେ ବିରତ ହୁଅନ୍ତି ନାହିଁ । ଦୁର୍ବଳତା ହେତୁ କଥା କହିବାକୁ କଷ୍ଟ ହେଉଥିଲେ ବି ତାକୁ ପରୁଆ ନ କରି ସେ ଘଣ୍ଟା ଘଣ୍ଟା ଧରି ପାଠଚକ୍ରରେ ଶ୍ରୀଅରବିନ୍ଦଙ୍କର ଗ୍ରନ୍ଥ ଆଲୋଚନା କରୁଥାନ୍ତି ନିର୍ବିକାର ଚିତ୍ତରେ ।

ତାଙ୍କ ଅସୁସ୍ଥତାର କାରଣ ବଡ଼ ଅଦ୍ଭୁତ । ସଂସାର ସହିତ, ମଣିଷମାନଙ୍କର ଦୁଃଖବେଦନା ସହିତ ଏକ ନିବିଡ଼ ସଂବେଦନଶୀଳତା ଓ ଏକାତ୍ମକତା ହିଁ ତାଙ୍କ

ଶରୀରରେ ଅସ୍ୱସ୍ତି ଓ ଅସୁସ୍ଥତା ରୂପେ ପ୍ରତିଫଳିତ ହୁଏ । ଡାକ୍ତରୀ ବିଜ୍ଞାନ ଅନୁଯାୟୀ ସେ ଭୋଗୁଥିବା ଅନିର୍ଦ୍ଦିଷ୍ଟ ଅସୁସ୍ଥତାକୁ ଏଲର୍ଜି ବୋଲି କୁହାଯାଉଛି । ଥରେ ଜଣେ ବଂଧୁ ତାଙ୍କୁ ପଚାରିଲେ, 'ଆପଣଙ୍କ ଭିତରେ କାହିଁକି ଏ ଏଲର୍ଜି ?' ଉତ୍ତରରେ ସେ କହିଲେ, 'ଏ ସଂସାରରେ ଏତେ କଥା ଘଟିଯାଉଥିବ, ଆଖି ଆଗରେ ମଣିଷମାନେ ପୋକମାଛି ପରି ମରିଯାଉଥିବେ, ଭାସିଯାଉଥିବେ, ଏଥିରେ ଜଣେ ଥୟ ଧରିବ କିପରି ? ଉଦାସୀନ ରହି ପାରିବ କିପରି ? ଉଦାସୀନ ରହିବା ଅପେକ୍ଷା ଏ ଦେହ ବରଂ ଅସୁସ୍ଥ ହେବାକୁ ମୁଁ ଶ୍ରେୟସ୍କର ମଣିବି । ପାଷାଣ ହୋଇଯିବାଠୁ କଷଣ ପାଇବାକୁ ପସନ୍ଦ କରିବି ।' ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖି ଦେଖି କେବା ସହୁ- ଭୀମଭୋଇଙ୍କର କରୁଣାସିକ୍ତ କରୁଣ ସ୍ୱରଟି ସତେ ଅବା ଅନୁରଣିତ ହେଉଥିଲା ତାଙ୍କର ସେଇ କେଇପଦ କଥାରେ । ସେ ଯେଉଁ ଅସୁସ୍ଥତାର ଶିକାର ହୋଇଛନ୍ତି ତାହାର କାରଣ ଯେ ଏତେ ସୂକ୍ଷ୍ମ ଓ ରହସ୍ୟମୟ, ସେ କଥା ସହଜରେ ବିଶ୍ୱାସ କରି ହୁଏ ନା ।

ପ୍ରସଙ୍ଗତଃ ମନେ ପଡ଼େ ଶ୍ରୀଅରବିନ୍ଦଙ୍କ 'ସାବିତ୍ରୀ' ମହାକାବ୍ୟର ଗଭୀର ତାତ୍ପର୍ଯ୍ୟପୂର୍ଣ୍ଣ କେତୋଟି ପଂକ୍ତି ଏବଂ ଏକ ବୃହତ୍ତର ପରିପ୍ରେକ୍ଷୀରେ ବିଶ୍ୱପରିତ୍ରାତା ଅବତାର ପୁରୁଷଙ୍କ ବିପୁଳ ଦୁଃଖଯନ୍ତ୍ରଣାର ସ୍ୱରୂପ ଏଥିରୁ କିଞ୍ଚିତ୍ ଅନୁମାନ ଓ ଅବବୋଧ କରିହୁଏ-

A million wounds gape in his secret heart.
He journeys sleepless through an unending night;
Antagonist forces crowd across his path;
A seige, a combat is his inner life.
Even worse may be the cost, direr the pain
His large indentity and all-harbouring love
Shall bring the cosmic anguish into his depths,
The sorrow of all living things shall come
And knock at his doors and live within his house;
A dreadful cord of sympathy can tie
All suffering into his single grief and make
All agony in all the worlds his own.

(Savitri *Book Six, Canto-Two*)

'ସହସ୍ର କ୍ଷତ ଆଁ କରି ରହିଛନ୍ତି ତାଙ୍କ ନିଭୃତ ହୃଦୟରେ । ଏକ ଅସରନ୍ତି ରାତ୍ରି ଭିତର ଦେଇ ଚାଲିଛି ତାଙ୍କର ଅତନ୍ଦ୍ର ଯାତ୍ରା । ପ୍ରତିରୋଧୀ ଶକ୍ତିସବୁ ତାଙ୍କ

ବାଟ ଓଗାଳି ଠିଆ ହୋଇଛନ୍ତି, ଭିତ ଲଗାଇଛନ୍ତି ତାଙ୍କ ଚଲାପଥରେ । ଆନ୍ତର ଜୀବନ ତାଙ୍କର ଏକ ଅବରୋଧ ଓ ସଂଗ୍ରାମ । ଏପରିକି ଏହାଠୁ ବି ଅଧିକତର ମୂଲ୍ୟ ତାଙ୍କୁ ଦେବାକୁ ପଡ଼ିପାରେ, ବେଦନା ହୋଇପାରେ ଆହୁରି ବିଷମତର । ତାଙ୍କର ବିଶାଳ ଏକତ୍ୱବୋଧ ଓ ସର୍ବାଶ୍ରୟ ପ୍ରେମ ବିଶ୍ୱଯନ୍ତ୍ରଣାକୁ ନେଇ ଆସିବ ଆପଣାର ଗଭୀରକୁ । ଯାବତୀୟ ଜୀବର ଦୁଃଖ ଆସି କରାଘାତ କରିବ ତାଙ୍କ ଦ୍ୱାର ଦେଶରେ ଏବଂ ତାଙ୍କ ଗୃହରେ ପ୍ରବେଶପୂର୍ବକ ବସବାସ କରିବ । ସହାନୁଭୂତିର ଏକ ନିଦାରୁଣ ଡୋର ନିଜସ୍ୱ ଏକକ ସତ୍ତାପଟି ସହିତ ବିଶ୍ୱବେଦନାକୁ ବାନ୍ଧିଦେଇପାରେ ଏବଂ ଅଖିଳ ଜଗତର ସକଳ ଯନ୍ତ୍ରଣା ତାଙ୍କର ଆପଣାର ହୋଇଉଠିପାରେ ।'

ଏପରି ସ୍ଥିତିକୁ ନ ଯିବା ଯାଏ ଉପରବର୍ଣ୍ଣିତ ବିଷୟଟିର ରହସ୍ୟଭେଦ କରିବା ଆମ ପକ୍ଷେ କଷ୍ଟକର । କିଛି ମାନସିକ ଧାରଣା କରିହେବ ସତ, ମାତ୍ର ଅନୁଭୂତିରେ ଏ କଥା ଧରା ଦେବନାହିଁ । ସେ ଯାହା ହେଉ, ପ୍ରିୟ ପଥିକ ବଂଧୁଙ୍କ ଭିତରେ ଥିବା ପରମ ଦିବ୍ୟସତ୍ତା ତାଙ୍କୁ ଆଶୀର୍ବାଦ କରନ୍ତୁ, ଆହୁରି ବାଟ ଚାଲିବାକୁ ଓ ଦୁଃଖକୁ ଅତିକ୍ରମ କରିବାକୁ ବଳ ଦିଅନ୍ତୁ । ସମସ୍ତଙ୍କର ସଦିଚ୍ଛା କ୍ରମେ ମାତୃ କୃପାରୁ ସେ ଶତାୟୁ ହୁଅନ୍ତୁ । ଏହାହିଁ ଆମର ପ୍ରାର୍ଥନା ।

ତାଙ୍କର ଏକାଅଶୀତମ ଜନ୍ମ ତିଥି ପାଳନର ଅବ୍ୟବହିତ ପୂର୍ବରୁ 'ପରାର୍ଥ ପଥିକ'ର ତୃତୀୟଭାଗ ଆମ୍ଭ ପ୍ରକାଶ କରୁଛି । ସଂକଳନଟି ସହ ସଂପୃକ୍ତ ସମସ୍ତ ଲେଖକଲେଖିକା ତଥା ପାଠକପାଠିକା ଭାଇଭଉଣୀଙ୍କ ତରଫରୁ ପରାର୍ଥ ପଥିକଙ୍କୁ ଜନ୍ମ ଦିନରେ ହୃଦୟଭରା ଅନେକ ଅନେକ ଶୁଭ କାମନା ।

*- ରବୀନ୍ଦ୍ରନାଥ ପାଢ଼ୀ*
*ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର,*
*ଖଣ୍ଡଗିରି, ଭୁବନେଶ୍ୱର*

# ମନସ୍ୱୀ ଚିତ୍ତରଂଜନ

*(ବିଶିଷ୍ଟ ଚିନ୍ତାନାୟକ ପ୍ରଫେସର ଚିତ୍ତରଂଜନ ଦାସଙ୍କ ପଞ୍ଚସପ୍ତତିତମ ଜନ୍ମଦିବସ, ୨୯ ଅକ୍ଟୋବର, ଅବକାଶରେ ତାଙ୍କର ଜୀବନ ଓ ସାଧନା ପ୍ରସଙ୍ଗରେ ଉପସ୍ଥାପିତ ଏକ ଅନ୍ତରଂଗ ଆଲେଖ୍ୟ)*

ଏପ୍ରିଲ୍ ପହିଲା । ଉତ୍କଳ ଦିବସ । ବୋଧହୁଏ ୧୯୮୬ର କଥା । ରେଭେନ୍‌ସା କଲେଜର ପଦାର୍ଥ ବିଜ୍ଞାନ ଲେକ୍‌ଚର ଥିଏଟରରେ ଆୟୋଜିତ ହୋଇଥାଏ ସଭା । ବକ୍ତା ଭାବରେ ଉପସ୍ଥିତ ଥାଆନ୍ତି ଡଃ ସଦାଶିବ ମିଶ୍ର, ଶ୍ରୀ ଚିତ୍ତରଂଜନ ଦାସ ଓ ଶ୍ରୀ ସୌମ୍ୟରଂଜନ ପଟ୍ଟନାୟକ । ସଭା କାର୍ଯ୍ୟ ପରିଚାଳନା କରୁଥାନ୍ତି ତଦାନୀନ୍ତନ ଉପାଧ୍ୟକ୍ଷ ଡଃ ଦେବକାନ୍ତ ମିଶ୍ର । ସଭାକକ୍ଷ ଶ୍ରୋତା ପରିପୂର୍ଣ୍ଣ । ପ୍ରଥମେ ଭାଷଣ ଦେଲେ ଡଃ ସଦାଶିବ ମିଶ୍ର । ସାର୍ ଚାଲିଗଲେଣି, ଏବେ ବି କିନ୍ତୁ ତାଙ୍କ ହାସ୍ୟୋଜ୍ଜ୍ୱଳ ମୁଖ, ପରିମିତ ଅଥଚ ବିଦଗ୍ଧ ବାକ୍‌ବିଳାସ ଓ ପରିଶୀଳିତ କୌତୁକବୋଧ ବା Wit ଆମ ସ୍ମୃତିରେ ସେମିତି ଜୀବନ୍ତ ଅଛି । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ସ୍ମୃତି ଓ ଇତିହାସ ଯେ ଏତେ ଚମତ୍କାର ଭାବରେ କୁହାଯାଇପାରେ, ସେଦିନ ସାର୍‌ଙ୍କ ଭାଷଣ ଶୁଣି ନ ଥିଲେ ବୁଝି ହୋଇନଥାନ୍ତା । ତାଙ୍କ ପରେ କହିବେ ଶ୍ରୀ ଚିତ୍ତରଂଜନ ଦାସ । ଡଃ ଦେବକାନ୍ତ ମିଶ୍ର ତାଙ୍କ ସ୍ୱଭାବସୁଲଭ ମୃଦୁ ମଧୁର ହାସ୍ୟୋଚ୍ଛଳ ଭଂଗୀରେ ପରିଚିତ କରାଇଦେଲେ, ''ଜ୍ଞାନର ସବୁ ବିଭାଗରେ ତାଙ୍କର ସହଜ ସଞ୍ଚରଣ, ଏପରି କୌଣସି ବିଷୟ ନାହିଁ ଯେଉଁ ବିଷୟରେ ଚିତ୍ତଭାଇ କହି ନ ପାରିବେ ।'' ଏପରି ଉକ୍ତି ଶୁଣୁ ଶୁଣୁ ଡଃ ସଦାଶିବ ମିଶ୍ର ଅସହିଷ୍ଣୁ ହୋଇ ଉଠିଲେ, ତାଙ୍କ ଆଖିରେ ସ୍ୱଭାବ ସୁଲଭ ଭଙ୍ଗୀରେ ତୀକ୍ଷ୍ଣ ସକୌତୁକ ବ୍ୟଙ୍ଗ ଫୁଟିଉଠିଲା । ସେ ଯେପରି ପ୍ରତ୍ୟୁତ୍ପନ୍ନମତିସଂପନ୍ନ ଠିକ୍ ସେମିତି ବି ଉପସ୍ଥିତ ପ୍ରତ୍ୟୁତ୍ତରଦାନସୁକୁଶଳ । ଅଯଥା ଉଠି ମନ୍ତବ୍ୟ କରିଦେଲେ, ''ଯେ ସବୁ ବିଷୟରେ କହି ପାରନ୍ତି ସେ କୌଣସି ବିଷୟରେ କିଛି ଜାଣି ନଥାନ୍ତି ।'' ଶ୍ରୋତାଗଣ ସ୍ତମ୍ଭୀଭୂତ । କିପରି ଗ୍ରହଣ କରିବେ ଏପରି ବିରୂପ ମନ୍ତବ୍ୟକୁ ଚିତ୍ତବାବୁ ? ପରିସ୍ଥିତି କ'ଣ ଘଟିବ ? ଚିତ୍ତବାବୁ ବି କିଛି କମ୍ ବିଦ୍ରୂପପରାୟଣ ନୁହଁନ୍ତି । କି ପ୍ରତିକ୍ରିୟା ପ୍ରକାଶ କରିବେ ସେ ?

ସେ କିନ୍ତୁ ଧୀର ସ୍ଥିର ଭାବରେ ତାଙ୍କର ଭାଷଣ ଆରମ୍ଭ କଲେ, ଯେପରି ମନ୍ତବ୍ୟଟିକୁ ଶୁଣି ନାହାନ୍ତି । ଆଖି ଓ ମୁଖରେ କିନ୍ତୁ ପ୍ରତିକ୍ରିୟା ଫୁଟି ଉଠୁଥାଏ, ଭାଷାରେ ବି । ଡଃ ସଦାଶିବ ମିଶ୍ର ଯେଉଁ ବିଷୟରେ କହିଛନ୍ତି ସେ ସେହି ବିଷୟରେ କହିବେ । କହିଲେ ବି । ସ୍ୱତନ୍ତ୍ର, ଉତ୍କଳ ପ୍ରଦେଶ ଗଠନ ସମ୍ବନ୍ଧରେ ପୁଣି ଏତେ କଥା ଅକୁହା ଥିଲା ? ଡଃ ସଦାଶିବ ମିଶ୍ର ଶ୍ରୋତାଙ୍କୁ ଇତିହାସର ଭାସମାନ ସ୍ତରଟି ସହିତ ପରିଚିତ କରାଇଥିଲେ, ଶ୍ରୀ ଦାସ କାହିଁ କେତେ ଗଭୀରକୁ ଘେନିଗଲେ । ଇତିହାସ ଜୀବନ୍ତ ହୋଇଉଠିଲା । ଭାଷଣଟି ସେଦିନ ଡଃ ମିଶ୍ରଙ୍କ ଉଗ୍ର ମନ୍ତବ୍ୟର ଯଥୋଚିତ ପ୍ରତ୍ୟୁତ୍ତର ଥିଲା । ଡଃ ମିଶ୍ର କିଛି କମ୍ ଅପ୍ରସ୍ତୁତ ହୋଇ ନଥିଲେ । ଅବଶ୍ୟ ସଭାଟି ସେଦିନ ସବୁ ଦିଗରୁ ସାଫଲ୍ୟମଣ୍ଡିତ ହୋଇଥିଲା, ସୌମ୍ୟବାବୁ ଓ ଦେବକାନ୍ତ ବାବୁ ଚମତ୍କାର ଭାବରେ ନିଜ ନିଜର ବକ୍ତବ୍ୟ ଉପସ୍ଥାପନ କରିଥିଲେ । ପ୍ରକୃତରେ ଭାଷଣଗୁଡ଼ିକ ଥିଲା ପରସ୍ପରର ଉଦ୍ଦୀପକ ଓ ପରିପୂରକ ।

ଏଠାରେ ପ୍ରସଙ୍ଗଟିକୁ ଅବତାରଣା କରିବାର ତାତ୍ପର୍ଯ୍ୟ ହେଉଛି, ସଭାରେ ବକ୍ତାଙ୍କୁ ପରିଚିତ କରାଗଲାବେଳେ ପ୍ରାୟ ଅତ୍ୟୁକ୍ତି କରାଯାଇଥାଏ । ପ୍ରଫେସର ମିଶ୍ର କଥାଟାକୁ ଆକ୍ଷରିକ ଅର୍ଥରେ ଗ୍ରହଣ କରି ନ ଥିଲେ ଭଲ ହୋଇଥାନ୍ତା । ତେବେ ଚିତ୍ତରଂଜନ ଦାସଙ୍କ କ୍ଷେତ୍ରରେ କଥାଟିରେ ବିଶେଷ ଅତିରଂଜନ ନଥିଲା । ଦେବକାନ୍ତ ମିଶ୍ର ଚିତ୍ତଭାଇଙ୍କୁ ଭଲ ଭାବରେ ଜାଣନ୍ତି । ସେ ପ୍ରାୟ ସତ କଥାଟି କହିଥିଲେ । ପ୍ରକୃତରେ ଜ୍ଞାନ ଜଗତର ବିଭିନ୍ନ ଓ ବିଚିତ୍ର ବିଷୟରେ ଚିତ୍ତବାବୁ ଆଗ୍ରହୀ, ଶିକ୍ଷା, ଧର୍ମ, ଇତିହାସ, ରାଜନୀତି, ସଂସ୍କୃତି, ଦର୍ଶନ, ନୃତତ୍ତ୍ୱ, ମନସ୍ତତ୍ତ୍ୱ, ସମାଜବିଜ୍ଞାନ ଓ ସାହିତ୍ୟ ଏସବୁ କ୍ଷେତ୍ରରେ ତାଙ୍କର ଗ୍ରୀକ୍ ଦାର୍ଶନିକସୁଲଭ ଏନ୍‌ସାଇକ୍ଲୋପେଡ଼ିକ୍ ଅନ୍ୱେଷା ଅବିସମ୍ବାଦିତ । ପ୍ରକୃତରେ ଓଡ଼ିଶାରେ କାହିଁକି ଭାରତରେ ତାଙ୍କ ପରି ବିଦ୍ୱାନ ଓ ମୁକ୍ତମନର ବିବେକବାନ ମଣିଷ କ୍ୱଚିତ୍ ଥିବେ । ଖଦଡ଼ ଧୋତି ପଞ୍ଜାବୀ ପରିହିତ ଅନହଙ୍କୃତ ସରଳ ଲୋକଟିକୁ ଦେଖିଲେ ତାଙ୍କ ବ୍ୟକ୍ତିତ୍ୱ ଓ କୃତିତ୍ୱ ସମ୍ବନ୍ଧରେ ହୁଏତ ଅବଧାରଣା କରିହେବ ନାହିଁ, କିନ୍ତୁ ତାଙ୍କ ଭାଷଣ ଶୁଣିଲେ କି ଲେଖା ପଢ଼ିଲେ ମନସ୍ୱୀ ଲୋକଟିକୁ ଶ୍ରଦ୍ଧା ଓ ସମ୍ମାନ ନ ଜଣାଇବାରେ ଗତ୍ୟନ୍ତର କାହିଁ ? ଲେଖନୀ ତାଙ୍କର ଧାରାସ୍ରାବୀ । ବିଶେଷତଃ ପ୍ରବଂଧ ରଚନାରେ କୃତିତ୍ୱ ଅସାମାନ୍ୟ- ଯାହାଙ୍କର ଉଭୟ ପୂର୍ବସୂରୀ ଓ ଉତ୍ତରସୂରୀ ଅନୁପସ୍ଥିତ । ପ୍ରକୃତରେ ଚିତ୍ତଭାଇ ତୁଳନାରହିତ ।

ଚିତ୍ତରଂଜନ ଦାସ ଭୂମିଷ୍ଠ ହୁଅନ୍ତି ୧୯୨୩ରେ । ଆଜିକୁ ୭୪ ବର୍ଷ ତଳେ । ସେ ୧୯୪୧ରେ କଟକର ରେଭେନ୍ସା କଲିଜିଏଟ୍ ସ୍କୁଲରୁ ମ୍ୟାଟ୍ରିକୁଲେସନ୍ ପାସ୍ କରନ୍ତି ପ୍ରଥମ ଶ୍ରେଣୀରେ ଓ ରେଭେନ୍ସା କଲେଜରେ ନାମ ଲେଖାନ୍ତି

ଆଇ.ଏ.ପଢ଼ିବାକୁ । ବିଷୟ ବାଛନ୍ତି ଗଣିତ, ଅର୍ଥନୀତି ଓ ଲଜିକ୍ । ଏହି ଆଇ.ଏ.କ୍ଲାସ୍‌ରେ ପଢ଼ିବା ପର୍ଯ୍ୟନ୍ତ ତାଙ୍କ ଜୀବନର ଗତି ଥିଲା ସରଳରୈଖିକ ଓ ବ୍ୟବସ୍ଥିତ । ପରବର୍ତ୍ତୀ କାଳରେ କିନ୍ତୁ ପ୍ରଚଳିତ ବ୍ୟବସ୍ଥାରେ ଗୋଟିଏ ମେଧାବୀ ଛାତ୍ରର ଆନୁଷ୍ଠାନିକ ଶିକ୍ଷାଦୀକ୍ଷା ଦୃଷ୍ଟିରୁ ତାଙ୍କ ଜୀବନଧାରା ବିପର୍ଯ୍ୟସ୍ତ ହୋଇଯାଇଥିଲା । ସତେ ଅବା ସେହି ବିପର୍ଯ୍ୟୟ ଥିଲା ଭିନ୍ନ ଏକ ସ୍ୱାଦର ବ୍ୟବସ୍ଥିତ ଜୀବନର ପ୍ରସ୍ତୁତି ପର୍ବ । ସେ ୧୯୪୨ ଅଗଷ୍ଟ ନ'ର ଭାରତଛାଡ଼ ଆନ୍ଦୋଳନରେ ଯୋଗ ଦିଅନ୍ତି ଓ ପରିଣାମ ସ୍ୱରୂପ ଜେଲ୍ ଦଣ୍ଡ ଭୋଗନ୍ତି । ଜେଲ୍‌ରେ କଟେ ୩ ବର୍ଷ । ସେଇ ୧୯୪୫ରେ ଜେଲ୍‌ରୁ ଖଲାସ୍ ହେବାଠାରୁ ଏଇ ଆଜି ପର୍ଯ୍ୟନ୍ତ ପ୍ରାୟ ୫୨ଟି ବର୍ଷ ବିତିଗଲାଣି; ସେ ସ୍ଥିର ହୋଇ କେଉଁଠି ରହି ପାରିନାହାନ୍ତି, ଭାରତୀୟ ବୁଦ୍ଧିଜୀବୀଙ୍କ ପରି ଶିକ୍ଷାକୁ ସାର୍ଟିଫିକେଟ୍ ସର୍ବସ୍ୱ ବୋଲି ଗ୍ରହଣ କରିନାହାନ୍ତି କି ଅର୍ଥ ସଂଗତିଦୃଷ୍ଟିରୁ ନିରୁପଦ୍ରବ ସ୍ଥିର ଚାକିରି ଜୀବନଟିଏ ଖୋଜି ନାହାନ୍ତି । ସାଂସାରିକ ଓ ସାମାଜିକ ସୁବୁଦ୍ଧି କେବେ ନଥିଲା ତାଙ୍କର । ୧୯୪୫ରେ ସେ ଯାଆନ୍ତି ଶାନ୍ତି ନିକେତନ । ଆରମ୍ଭ ହୁଏ ଅଧ୍ୟୟନ ଓ ଗବେଷଣାର ଏକ ନିରବଚ୍ଛିନ୍ନ ଜୀବନଯାତ୍ରା । ସେଠାରେ ସେ ୧୯୪୫ରୁ ୧୯୪୮ ପର୍ଯ୍ୟନ୍ତ ଅଧ୍ୟୟନ କରନ୍ତି । ମୁଖ୍ୟ ବିଷୟ ଦର୍ଶନ । କାଣ୍ଟ୍, ସ୍ପିନୋଜା ଓ ବର୍ଗସଁ ପଢ଼ନ୍ତି । ସ୍ପିନୋଜାଙ୍କ ଜୀବନ ଓ କୃତିଗୁଡ଼ିକ ଉପରେ ଗବେଷଣାମୂଳକ ନିବଂଧ ଲେଖନ୍ତି । ୧୯୪୮ରୁ ୧୯୫୦ ପର୍ଯ୍ୟନ୍ତ ବିଦ୍ୟାଭବନରେ ଗବେଷକ ଭାବରେ ଯୋଗ ଦିଅନ୍ତି । ଓଡ଼ିଆ ଭାଷାରେ ଲେଖା ଆରମ୍ଭ ହୁଏ । ସେଦିନର ସେହି ଗବେଷଣାରେ ସ୍ୱାକ୍ଷର ସ୍ୱରୂପ ୩ଟି ବହି ଏବେ ବି ଔଜ୍ଜ୍ୱଲ୍ୟ ହରାଇ ନାହାନ୍ତି । ଉକ୍ତ ବହିଗୁଡ଼ିକ ହେଲା : (୧) ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ (୨) ଓଡ଼ିଶାର ମହିମାଧର୍ମ, (୩) ବଳରାମ ଦାସଙ୍କ ଗୀତା ସଂପାଦନା । ୧୯୫୦ରେ ସେ ଯାଆନ୍ତି ଡେନ୍‌ମାର୍କ । ସେତେବେଳେ ଶାନ୍ତିନିକେତନର ଛାତ୍ରଠାରୁ କେହି ସାର୍ଟିଫିକେଟ୍ ଖୋଜୁନଥିଲେ । ଆର୍ନ୍ତଜାତିକ ସ୍ତରରେ ଶାନ୍ତିନିକେତନର ଶିକ୍ଷା ପ୍ରତି ସର୍ବତ୍ର ଶ୍ରଦ୍ଧା ଓ ବିଶ୍ୱାସ ଥିଲା । ତେଣୁ ଶ୍ରୀ ଦାସ ଏଣ୍ଟ୍ରାନ୍ସ ପରୀକ୍ଷା ଦେଇ କୋପେନ୍‌ହେଗେନ୍ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ଓ ନୃତତ୍ତ୍ୱ ବିଭାଗରେ ସ୍ନାତକୋତ୍ତର ଶିକ୍ଷାଲାଭ କରନ୍ତି । ୧୨ଟି ସେମିଷ୍ଟର ପରୀକ୍ଷାକୁ ସେ ୧୦ଟିରେ ସଂପୂର୍ଣ୍ଣ କରି ୧୯୫୫ରେ ସେହି ବିଶ୍ୱବିଦ୍ୟାଳୟର ସର୍ବଶେଷ ଡିଗ୍ରୀ ଲାଭ କରିବାର କୃତିତ୍ୱ ଅର୍ଜନ୍ତି । କିନ୍ତୁ ଡିଗ୍ରୀ କି ସାର୍ଟିଫିକେଟ୍ ପ୍ରତି ଶ୍ରୀ ଦାସଙ୍କର କୌଣସି ମୋହ ନଥିଲା, ତାହାର ଅର୍ଥକାରୀ ଦିଗଟିର ସଦୁପଯୋଗ କରିବାକୁ ବି ଆଗ୍ରହ ନଥିଲା । ବୋଧହୁଏ ସେ ସାର୍ଟିଫିକେଟ୍‌ଗୁଡ଼ିକୁ ନଷ୍ଟ କରି ଦେଇଥିଲେ । କୋପେନ୍‌ହେଗେନ୍ ବିଶ୍ୱବିଦ୍ୟାଳୟରୁ

ସେ ସିଧା ଆସି ୧୯୫୫ରେ ଚଂପତିମୁଣ୍ଡାର ସେକେଣ୍ଡାରୀ ସ୍କୁଲ 'ଜୀବନ ବିଦ୍ୟାଳୟ'ରେ ଯୋଗ ଦିଅନ୍ତି ଓ ସେଠାରେ ରହନ୍ତି ଶିକ୍ଷକ ଭାବରେ ୧୯୫୮ ପର୍ଯ୍ୟନ୍ତ । ସେଠାରେ ତାଙ୍କର ଅନ୍ୟତମ ଛାତ୍ରଥିଲେ ଶିଳ୍ପୀ ଓ ସାହିତ୍ୟିକ ଶ୍ରୀ ବିନୋଦ ରାଉତରାୟ । ୧୯୫୯ରେ ଶ୍ରୀ ଦାସ ଯାଆନ୍ତି ଆଗ୍ରା । ଆଗ୍ରାର'Institute of Rural Higher Education' ଅନୁଷ୍ଠାନର Psychology and Sociology P.G. ବିଭାଗରେ ନିଯୁକ୍ତି ପାଆନ୍ତି ଆସୋସିଏଟ୍ ପ୍ରଫେସର ପଦବୀରେ । ଅବଶ୍ୟ ବିନା ସାର୍ଟିଫିକେଟ୍ ଓ ବିନା ପ୍ରମାଣପତ୍ରରେ । ବୋଧହୁଏ ତାଙ୍କ ବିଦ୍ୟାବୁଦ୍ଧି, ପାଣ୍ଡିତ୍ୟ ଓ ଗବେଷଣାଲବ୍ଧ ଅଭିଜ୍ଞତା ସମ୍ବନ୍ଧରେ ଶିକ୍ଷା ଓ ସଂସ୍କୃତି ଉଚ୍ଚ ମହଲରେ କାହାର କୌଣସି ଅବିଶ୍ୱାସ ନଥିଲା । ବାଧା ଉପୁଜିଥିଲା ନିଶ୍ଚୟ, କିନ୍ତୁ ଶେଷପର୍ଯ୍ୟନ୍ତ ସାର୍ଟିଫିକେଟ୍ ଖୋଜା ଯାଇନଥିଲା । ସେଠାରେ ସେ ଥିଲେ ୧୫ବର୍ଷ । ୧୯୭୪ ପର୍ଯ୍ୟନ୍ତ । ସେଇଠୁ ଯାଇଥିଲେ ଜର୍ମାନି । ସୋନେନ୍‌ବର୍ଗ ଆନ୍ତର୍ଜାତୀୟ ଅନୁଷ୍ଠାନରେ ସେ Visiting Professor ଭାବରେ ଦର୍ଶନ ଓ ମନସ୍ତତ୍ତ୍ୱ ପଢ଼ାଇଛନ୍ତି ଦୁଇବର୍ଷକାଳ । ୧୯୬୨ରୁ ୧୯୬୪ ପର୍ଯ୍ୟନ୍ତ । ପରେ ଫେରନ୍ତି ଆଗ୍ରାକୁ । ୧୯୭୪ ବେଳକୁ ଆଗ୍ରାସ୍ଥ ଅନୁଷ୍ଠାନରେ ଅବ୍ୟବସ୍ଥା ଦେଖାଦିଏ ଓ ଶ୍ରୀ ଦାସଙ୍କ ପାଇଁ ଶ୍ରୀ ଅରବିନ୍ଦ ଆଶ୍ରମରୁ ଆହ୍ୱାନ ଆସେ । ମୁକ୍ତି ଖୋଜୁଥିଲେ । ମୁକ୍ତି ମିଳିଗଲା । ସେହିଦିନଠାରୁ ସେ ଶ୍ରୀ ଅରବିନ୍ଦ ଆଶ୍ରମ ସ୍କୁଲଗୁଡ଼ିକର ଶିକ୍ଷା ଦିଗଟିର ଦାୟିତ୍ୱରେ ଅଛନ୍ତି । ପଢ଼ାପଢ଼ି ଲେଖାଲେଖି ଅବ୍ୟାହତ ରଖିଛନ୍ତି । ବାର୍ଦ୍ଧକ୍ୟ ତାଙ୍କୁ ରିକ୍ତ କରି ଦେଇନାହିଁ । ଜୀବନ ସମ୍ବନ୍ଧରେ ଅଭିଯୋଗ କରାଯାଏ ଯେ, ମଣିଷର ଯୌବନରେ ପ୍ରଜ୍ଞା ନଥାଏ, ଥାଏ କର୍ମଦକ୍ଷତା; ବାର୍ଦ୍ଧକ୍ୟରେ ପ୍ରଜ୍ଞା ଅର୍ଜିଲା ବେଳକୁ କର୍ମଦକ୍ଷତା ତାହା ହାତରୁ କାଢ଼ି ନିଆଯାଇଥାଏ । ଚିତ୍ତବାବୁଙ୍କ ଜୀବନ ବ୍ୟତିକ୍ରମ । ଏଠାରେ ବାର୍ଦ୍ଧକ୍ୟର ପ୍ରଜ୍ଞା ଓ ଯୌବନର କର୍ମଦକ୍ଷତା ଏକାଠି ଅଛନ୍ତି ଏକାବେଳେକେ ଏକ ଘଟରେ । ତୀକ୍ଷ୍ଣ ବୁଦ୍ଧିର ଉଜ୍ଜ୍ୱଳତାରେ ଓ କ୍ଷୁରଧାର ବିଚାରର କ୍ଷମତାରେ ତାଙ୍କର ଲେଖା ଦିନୁ ଦିନ ସମୃଦ୍ଧତର ହୋଇ ଚାଲିଛି । ନିକଟରେ ପ୍ରକାଶିତ 'ବିଶ୍ୱକୁ ଗବାକ୍ଷ'ଟିକୁ ପଢ଼ିଲେ ଉପରୋକ୍ତ ମନ୍ତବ୍ୟର ତାତ୍ପର୍ଯ୍ୟ ବୁଝିହେବ ।

ଉପରୋକ୍ତ ଜୀବନାଲେଖ୍ୟରୁ ଜାଣିହେବ ଯେ, ଚିତ୍ତବାବୁ ବହୁ ବିଚିତ୍ର ଅଭିଜ୍ଞତାସଂପନ୍ନ । ଅଧିକନ୍ତୁ ସେ ଦେଶବିଦେଶର ବହୁ ସ୍ଥାନ ବୁଲିଛନ୍ତି ଓ ବହୁ ଭାଷା ଶିଖିଛନ୍ତି । ଲେଖାଲେଖି ଓ ପଢ଼ାପଢ଼ିରେ ସେ ସବୁଦିନେ ଉତ୍ସାହୀ ଓ ମନୋଯୋଗୀ ହୋଇରହିଛନ୍ତି । ସଂସାର ଓ ପରିବାର ରହିଯାଇଛି ନେପଥ୍ୟରେ, ଯଦିଓ ଗାର୍ହସ୍ଥ୍ୟଧର୍ମ ପାଳନରେ କି ସାମାଜିକ କର୍ତ୍ତବ୍ୟରେ ଅବହେଳା କରିବାର ଅପବାଦ ନାହିଁ । ସେ

ପଢ଼ିଛନ୍ତି ଆମ ସମୟର ଯାହାସବୁ ପାଠ୍ୟ । ତାଙ୍କ ପଠନର ପରିଧି ବିରାଟ । ବୋଧର କ୍ଷିପ୍ରତା ବି ଅସାମାନ୍ୟ । ବିଶେଷତଃ ମନସ୍ତତ୍ତ୍ୱ, ସମାଜବିଜ୍ଞାନ, ନୃତତ୍ତ୍ୱ, ଦର୍ଶନ ଓ ସାହିତ୍ୟ ସଂଲଗ୍ନ ଶାସ୍ତ୍ରଗୁଡ଼ିକରେ ଉଜ୍ଜ୍ୱଳନ୍ତ ଭାବରେ ବିଦ୍ୱାନ୍ ସେ । ତଥ୍ୟ ଓ ତତ୍ତ୍ୱ ପ୍ରତି ଆସକ୍ତ ବି । Wisdom, Knowledge ଓ Information ତାଙ୍କଠାରେ ନିର୍ବିରୋଧ ସମନ୍ୱୟରେ ଉପନୀତ । ଅଧିକନ୍ତୁ ସେ ବହୁ ଭାଷାବିତ୍, ପଣ୍ଡିତ ଓ ମନସ୍ୱୀ ବି । ଆହୁରି ଆନନ୍ଦର କଥା ଯେ, ସେ କେବଳ ବିଶ୍ୱରେ ଯାହା କିଛି ଭଲ କଥା ଲେଖାଯାଇଛି ବା ଜ୍ଞାତ ହୋଇଛି ତାହା ଜାଣି କ୍ଷାନ୍ତ ହୋଇନାହାନ୍ତି, ସେହିସବୁ ଶ୍ରେଷ୍ଠ ଚିନ୍ତା ଓ ବିଚାରକୁ ଆମକୁ ଜଣାଇବାକୁ ଚାହିଁଛନ୍ତି- ଉଭୟ ମୌଳିକ ରଚନା ଓ ଅନୁବାଦରେ । ଅନୁବାଦ ଓ ମୌଳିକ ରଚନାର ସଂଖ୍ୟା ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିରୁ ଏତେ ବିରାଟ ଯେ, ତାହା ଅନ୍ୟ କାହାର ୭୪ ବର୍ଷର ଜୀବନକାଳ ମଧ୍ୟରେ ଭାବି ହେବନାହିଁ । ଶ୍ରମ ଓ ଅଧ୍ୟବସାୟ ବିଶାଳ । ଅନୁବାଦରେ କ'ଣ ନ କରିଛନ୍ତି ଚିରବାବୁ ? ମହାତ୍ମାଗାନ୍ଧୀଙ୍କର ଅଧିକାଂଶ ରଚନାକୁ ସେ ଅନୁବାଦ ମାଧ୍ୟମରେ ଓଡ଼ିଶାକୁ ଆଣିଛନ୍ତି, ଅନୁବାଦ ବି କରିଛନ୍ତି ଶ୍ରୀଅରବିନ୍ଦଙ୍କ The Life Divine (ଦିବ୍ୟଜୀବନ), The Synthesis of Yoga (ଯୋଗସମନ୍ୱୟ) ଓ Human cycle (ମାନବଯୁଗଚକ୍ର)କୁ । ଶ୍ରୀମାଙ୍କ ମାତୃରଚନାବଳୀର ମୋଟ ୧୭ ଖଣ୍ଡର ଅନୁବାଦ ମଧ୍ୟ ତାଙ୍କ ଅନୁବାଦ କୃତିତ୍ୱର ଅନ୍ତର୍ଭୁକ୍ତ । ଅଧିକନ୍ତୁ ଓଡ଼ିଆଏ ତାଙ୍କରି ଅନୁବାଦ ପ୍ରସାଦରୁ ଆହୁରି ଅନେକ ଭଲ ବହି ପଢ଼ିବାର ସୁଯୋଗ ପାଇଛନ୍ତି· ଯଥା: ମୋ' ଜୀବନ ଓ ସାଧନା: ଆଲବର୍ଟ ସ୍ୱାଇତ୍‌ଜର୍ (୧୯୬୦) ଡକ୍ଟର ଜିଭାଗୋ, ଦାସୀ ସିଲିଆ, ସମ୍ମୋହିନୀ, ଚାଷୀ, ରାଜକୁମାର, ପ୍ରଥମ ପ୍ରତିଶ୍ରୁତି, ରବୀନ୍ଦ୍ର ଗଳ୍ପଚୟନ, ରୁଷିଆ ଚିଠି, ବିନୋଦିନୀ, ଦୁଇ ଭଉଣୀ ଓ ବିଦ୍ରୋହୀ ଆତ୍ମା ଇତ୍ୟାଦି । ସିଧା ସେ ଫିନିସ୍, ଜର୍ମାନ୍ ଓ ଫରାସୀ ଭାଷାରୁ ଅନୁବାଦ କରିପାରନ୍ତି । ଅନୁବାଦରେ ତାଙ୍କର ନିର୍ବାଚନ ଅଛି, ଅଛି ବି ଦାୟିତ୍ୱଶୀଳତା । ଅନୁବାଦକୁ ସେ ଯଥାସାଧ୍ୟ କରିଛନ୍ତି ଏକାଧାରରେ ବିଶ୍ୱସ୍ତ ଓ ସୁନ୍ଦର ।

ମୌଳିକ ରଚନାର ସଂଖ୍ୟା ବି କିଛି କମ୍ ନୁହେଁ । 'ଶିଳ୍ପତୀର୍ଥ' ଓ 'ଏରେତ୍‌ଜ୍ ଇସ୍ରାଏଲ୍' ଭଳି ଭ୍ରମଣକାହାଣୀ ଯେପରି ଦକ୍ଷତାର ସହ ଲେଖିପାରନ୍ତି ସେପରି ଉତ୍ସାହରେ ବି ଲେଖିପାରନ୍ତି ରୋହିତର ଡାଏରୀ (ବହୁଖଣ୍ଡରେ ବିଭକ୍ତ) । ପ୍ରବନ୍ଧ ସଙ୍କଳନ ଓ ସାହିତ୍ୟ ସମାଲୋଚନାରେ ସଂଖ୍ୟା ଅନେକ । କେତେଗୁଡ଼ିକର ନାମୋଲ୍ଲେଖ ଅବଶ୍ୟ ପ୍ରୟୋଜନ । ଯଥା- ସଂସ୍କୃତି ଓ ଓଡ଼ିଶା, ଓଡ଼ିଆ ସନ୍ଥସାହିତ୍ୟ, ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶଧାରା, ଜୀବନ ବିଦ୍ୟାଳୟ, ଶିଯାରୁ ସଂକ୍ରମଣ,

ସମାଜ, ଗାନ୍ଧୀ ଓ ଗୋପବନ୍ଧୁ, ଜାତିରେ ମୁଁ ଯବନ, ମା' ନିଷାଦ, ପଶ୍ୟତି ଦିଶି ଦିଶି, ତରଙ୍ଗ ଓ ତଡ଼ିତ, ଶିଳା ଓ ଶାଳଗ୍ରାମ, ଏକଲବ୍ୟ କାହାଣୀ ଓ ଅନ୍ୟାନ୍ୟ ପ୍ରବନ୍ଧ, କେତେ ଦିଗନ୍ତ, ନଖ ଦର୍ପଣେନ, ଅରମ୍ୟରଚନା, ଓଡ଼ିଆ ଓ ଓଡ଼ିଶା ଏବଂ ବିଶ୍ୱକୁ ଗବାକ୍ଷ ଇତ୍ୟାଦି । ଇଂରାଜୀ ଭାଷାରେ ବି ସେ ଲେଖିଛନ୍ତି କେତେକ ବହି ଓ ପ୍ରବଂଧ । ତନ୍ମଧ୍ୟରୁ Studies in Medieval Religions of Orissa ଓ Glimpses into Oriya Literature ର ନାମ ଉଲ୍ଲେଖଯୋଗ୍ୟ । ତେବେ ସେ ମୁଖ୍ୟତଃ ଓଡ଼ିଆ ସାହିତ୍ୟ ଇତିହାସରେ ପ୍ରାବନ୍ଧିକ ଭାବରେ ଉଜ୍ଜ୍ୱଳ ସିଦ୍ଧିର ଅଧିକାରୀ ଭାବରେ ସ୍ୱୀକୃତ ।

ଚିତ୍ତବାବୁ ପ୍ରାବନ୍ଧିକ । ଜଗତ, ଜୀବନ ଓ ସମାଜ ସମ୍ବନ୍ଧରେ ତାଙ୍କର ଜିଜ୍ଞାସା ଓ କୌତୂହଳର ସୀମା ନାହିଁ । ତେବେ ତାଙ୍କ ପ୍ରବନ୍ଧର ଗୋଟିଏ କକ୍ଷପଥ ଅଛି । ସେ ଜୀବନସାରା ଅଳ୍ପ କେତୋଟି କଥା ଚାହାଁନ୍ତି; Wisdom (ପ୍ରଜ୍ଞା), ସ୍ୱଭୂମିପ୍ରୀତି, ପ୍ରତିବାଦର ସ୍ପୃହା ଓ ମଣିଷର ମୁକ୍ତି । ତେଣୁ ତାଙ୍କର ବକ୍ତବ୍ୟ ଅଛି, ଯେଉଁ ବକ୍ତବ୍ୟ ଧର୍ମ, ଦର୍ଶନ, ସଂସ୍କୃତି, ସମାଜ, ଭାଷା ଓ ସାହିତ୍ୟ ତଥା ରାଜନୀତି କ୍ଷେତ୍ରରେ ମୁକ୍ତିବୁଦ୍ଧିର ପ୍ରବଳ ପ୍ରବାହରେ ସ୍ଫୀତକାୟ, ଜଡୀଭୂତ, ସମୟବିରୁଦ୍ଧ, ଅଭ୍ୟାସାଶ୍ରୟୀ, କାଏମୀ ପ୍ରାଚୀନ ତଥା ପ୍ରଚଳିତ ବ୍ୟବସ୍ଥାର ବିଲୋପନ ଓ ନିମଜ୍ଜନ କକ୍ଷପଥରେ ସଦା ଘୂରୁଥାଏ । ଯେଉଁ ଦେଶରେ ଗ୍ରହଣହୀନ ବର୍ଜନ ଓ ଆନନ୍ଦହୀନ ଧର୍ମ ସାହିତ୍ୟ ସାଧନା ଚାଲିଛି, ଯେଉଁଠି ପରଂପରାଗ୍ରସ୍ତ ବାର୍ଦ୍ଧକ୍ୟର ଉପାସନା ଚାଲିଛି, ସେଠାରେ ସେ ତାରୁଣ୍ୟ ସୁଲଭ ସ୍ୱାଧୀନତାର ବାୟୁ ପ୍ରବାହିତ କରିବାକୁ ଚାହାନ୍ତି । ତେଣୁ ତାଙ୍କ ଲେଖାରେ ପ୍ରଜ୍ଞା, ପ୍ରତିବାଦର ସ୍ପୃହା, ସ୍ୱଭୂମିର ନବୀକରଣ ଇଚ୍ଛା ଓ ମଣିଷର ମୁକ୍ତି ଆକାଂକ୍ଷାର ସମୀକରଣ ଘଟିଛି । ବିଶ୍ୱକୁ ଗବାକ୍ଷ ଲୋଡ଼ା । 'ବିଶ୍ୱକୁ ଗବାକ୍ଷ'ର ଶେଷ ଅଧ୍ୟାୟରେ ସେ ପ୍ରଶ୍ନ ଉଠାଇଛନ୍ତି, ''ମଣିଷର ସେହି ଅସଲ ବଳଟି କ'ଣ ? ତା'ର ଦୁଃଖ ଅପନୋଦନର ଅସଲ ଉପାୟଟି କ'ଣ ?'' ଆଉ ଉତ୍ତର ବି ଦେଇଛନ୍ତି । ସେହି ଉତ୍ତରରେ ତାଙ୍କ 'World View' ପ୍ରତିଫଳିତ, ମେଦିନୀ ଦୃଷ୍ଟି ପ୍ରତିବିମ୍ବିତ । ସେ କହନ୍ତି, ''ଆପେ ଆପଣାକୁ ହିଁ ସବା ଆଗେ ନ ଦେଖି ସମସ୍ତଙ୍କ ମେଳରେ ଆପଣାକୁ ଦେଖିପାରିଲେ ଏବଂ ଯେଉଁଭଳି ଏକ ବ୍ୟବସ୍ଥା ଦ୍ୱାରା ପୃଥିବୀର ଅଧିକାଂଶ ମନୁଷ୍ୟ ମଧ୍ୟ ଆଗ ଆପଣାକୁ ନ ଦେଖି ସମସ୍ତଙ୍କ ମେଳରେ ହିଁ ଆପଣାକୁ ଏକତ୍ର ମିଳାଇ ଦେଖିପାରିବେ ଓ ପରସ୍ପର ସହିତ ଅଙ୍ଗୀକାରବଦ୍ଧ ହୋଇ ରହିପାରିବେ ପୃଥିବୀରେ ସେହିଭଳି ଏକ ବ୍ୟବସ୍ଥାକୁ ସତକୁ ସତ ସମ୍ଭବ କରି ଆଣିବା ଲାଗି ଆପଣାର ଜୀବନକୁ ଅନୁରୂପ ଭାବରେ ବଂଚିବା ଓ ସଜାଡ଼ି ଆଣିବା- ତାହାହିଁ

ସମ୍ବେଦନଶୀଳତା, ତାହାହିଁ ଯଥାର୍ଥ ଆତ୍ମୀୟତା । ତାହାକୁ ଆମେ ମନେ କଲେ ଆଧ୍ୟାତ୍ମିକତା ବୋଲି ମଧ୍ୟ କହିପାରିବା । ଆଧ୍ୟାତ୍ମିକତା କହିଲେ କେବଳ ଏକ ବିଚାରକୁ ବୁଝାଏ ନାହିଁ, ଜୀବନର ସତକୁ ସତ ଗ୍ରହଣ କରାଯାଉଥିବା ଏକ ନିଷ୍ପତ୍ତିକୁ ବୁଝାଏ । ମୁଁ ଆପଣାକୁ ମୋ ଦୁଃଖରେ, ମୋର ସୁଖରେ, ମୋର ସ୍ୱପ୍ନଗୁଡ଼ିକରେ ଅଥବା ମୋର ଔଜ୍ଜ୍ୱଲ୍ୟଗୁଡ଼ିକରେ ଆପଣାକୁ ମୋଟେ ବିଚ୍ଛିନ୍ନ ବୋଲି ଭାବିବ ନାହିଁ । ମୋର ଏହି ସଂସାରଟିକୁ ମୁଁ ମୋଟେ ଗୋଟାସୁଦ୍ଧା ଏକୁଟିଆ ଭୋଗ କରିବାକୁ ମନ କରିବି ନାହିଁ । ମୁଁ ସମସ୍ତଙ୍କୁ ଭାଗ ଦେବି- ମୋ ଅନୁଭୂତିରେ ଭାଗ ଦେବି । ମୋର ଯାବତୀୟ ଆକାଙ୍କ୍ଷାରେ ଭାଗ ଦେବି, ଆମ ସମସ୍ତଙ୍କୁ ବାଂଧି ଏକତ୍ର ରଖିଥିବା ସୂତ୍ରଟିକୁ ହିଁ ସବା ମୂଳ ସତ୍ୟ ରୂପେ ସ୍ୱୀକାର କରିବି ଓ ଏଠାରେ ସଂପୃକ୍ତ ସମସ୍ତଙ୍କର ସୁହୃଦ୍‌ରୂପେ ସୋପାନରୁ ସୋପାନ ବାଟ ଚାଲୁଥିବି ତାହାହିଁ ଆଧ୍ୟାତ୍ମିକତା । ଜୀବନ ବଂଚିବାରେ ଏହି ସ୍ୱାଭାବିକ ସଂଲଗ୍ନତା ଅର୍ଥାତ୍ ସ୍ୱାଭାବିକ ପ୍ରୀତିର ଆୟାମଟି ଯୋଡ଼ା ହୋଇପାରିଲେ ଜୀବନ ଏକ ଆଧ୍ୟାତ୍ମିକ ଜୀବନରେ ପରିଣତ ହୁଏ, ସେହି ସୋପାନରେ ମୋର ବୋଲି କହିଲେ ଏକାବେଳକେ ସମସ୍ତଙ୍କୁ ବୁଝାଏ ।'' (ପୃ-୩୦୯) । ତାଙ୍କର ଧ୍ୟେୟ ଓଡ଼ିଶା କି ଭାରତ ନୁହେଁ, ଧ୍ୟେୟ ବିଶ୍ୱ; ତାଙ୍କର ସମସ୍ୟା ଓଡ଼ିଆ କି ଭାରତୀୟଙ୍କ ସମସ୍ୟା ନୁହେଁ, ତାଙ୍କର ସମସ୍ୟା ମଣିଷର ସମସ୍ୟା । ଓଡ଼ିଆଙ୍କୁ ସେ ମଣିଷ ହେବାକୁ ପ୍ରବର୍ତ୍ତାନ୍ତି, ଅଳ୍ପରେ ସୁଖ ନ ଖୋଜି ଭୂମାର ଅନ୍ୱେଷଣରେ ପଠାନ୍ତି । ତାଙ୍କ ଦୃଷ୍ଟିଭଙ୍ଗୀ ବଡ଼ ର୍‍ୟାଡିକାଲ୍ । ସବୁଠାରେ - ଧର୍ମ, ସାହିତ୍ୟ, ସଂସ୍କୃତି, ଦେଶାତ୍ମବୋଧ ତଥା ରାଜନୀତି ଓ ସମାଜନୀତିରେ ବୃଦ୍ଧ ପିତାମହ ପ୍ରପିତାମହଙ୍କ ନିୟମନିଷେଧ ପୋଛି ଦେଇ, ପ୍ରଚଳିତ ବ୍ୟବସ୍ଥାର କାଏମୀ ସ୍ୱାର୍ଥସର୍ବସ୍ୱ ସଂକୀର୍ଣ୍ଣ ବୁଦ୍ଧିକୁ ପରିହାର କରି ତା' ପରିବର୍ତ୍ତେ ଆଣିବାକୁ ହେବ ସ୍ୱାଧୀନତାର ଆସ୍ପୃହା, ସମାଜ ବିଜ୍ଞାନୀର ସାମ୍ୟଆଦର୍ଶ ଓ କୌତୂହଳ ତଥା ଗଣତାନ୍ତ୍ରିକ ଜୀବନଚର୍ଯ୍ୟା । ଚିତ୍ତବାବୁ ସଂସ୍କାରମୁକ୍ତ ମନର ଅଧିକାରୀ ନିଶ୍ଚୟ, କିନ୍ତୁ କେବଳ ଗୋଟିଏ କ୍ଷେତ୍ରରେ ସେ କେଜାଣି କାହିଁକି ମନଟିକୁ ଆଦୌ ଖୋଲା ରଖିପାରନ୍ତି ନାହିଁ- ସେହି କ୍ଷେତ୍ରଟି ହେଉଛି ଆଧୁନିକ ସାହିତ୍ୟ । ଆଧୁନିକ ସାହିତ୍ୟ ପ୍ରତି ବିମୁଖ ହେବାର କାରଣ ଅବଶ୍ୟ ଅଛି, କିନ୍ତୁ ଏତେ ଜୁଗୁପ୍ସା ଶୋଭନୀୟ ନୁହେଁ । ତାଙ୍କରି ଭାଷାରେ ତାଙ୍କ, ଘୃଣାର ରୂପ ଦେଖନ୍ତୁ । ସେ ଠାଏ ଲେଖିଛନ୍ତି, ''ଆମ ସିନେମା ଭିତରକୁ ଯେପରି ବମ୍ବେ ମାଡ଼ି ଆସିଲାଣି, ଆମ ସଂଗୀତ ଭିତରକୁ ଯେପରି ହିନ୍ଦି ଛୋକାରିଆ ଭାବଯମକଗୁଡ଼ାକ ପଶି ଆସୁଛନ୍ତି, ଆମ ସାହିତ୍ୟ ଭିତରେ ସେହିପରି ହାତରେ ଇଂରେଜୀ ନଳୀ ଧରିଥିବା ଅବର୍ଜିଆ ଶିକାରୀମାନେ କେତେ କେତେ ଗର୍ଦ୍ଧ

ଜମାଇବାକୁ ଆସିଲେଣି... ଏବଂ ଏହି ନବ୍ୟବାବୁ ବିଳାସଗୁଡ଼ାକୁ ଅତ୍ୟନ୍ତ ଅସଭ୍ୟ ଭାବରେ ସାହିତ୍ୟରେ ନୂତନ ସ୍ୱାଦ ବୋଲି କୁହାଯାଉଛି । ଆମର ବଢ଼ିଆ ବଢ଼ିଆ ସାହିତ୍ୟିକମାନେ ତେଣୁ ଲାଳସାଗ୍ରସ୍ତ ହୋଇ ଯାତ୍ରୁସାତ୍ରୁ ଯାହା ଉଦରସ୍ଥ କରୁଛନ୍ତି, ତାହାକୁ ହଜମ କରିବା ପୂର୍ବରୁ ଆମ ପିଣ୍ଡାଗୁଡ଼ିକ ଉପରେ ହଗିବାରେ ଲାଗିଛନ୍ତି ଏବଂ ସେହି ବ୍ୟଭିଚାରକୁ ସାହିତ୍ୟରେ ଅଭିନବ ବୋଲି କୁହାଯାଉଛି ।'' (ବିଶ୍ୱକୁ ଗବାକ୍ଷ-ପୃଷ୍ଠା, ୧୯୫) । ଚିତ୍ତବାବୁ ଯାହାସବୁ ପଢ଼ିଛନ୍ତି ସବୁ ହଜମ କରିଛନ୍ତି ବୋଲି କିଏ କହିବ ? ତାଙ୍କଠାରୁ ବଳି କେହି ବଡ଼ପଣ୍ଡିତ କାହିଁ ଜନ୍ମ ହେଲେ ହୁଏତ କହି ପାରିବ, ଆମ କ୍ଷୁଦ୍ରବୁଦ୍ଧି ସେଠିକୁ ପାଉନାହିଁ ଏବେ । ଆମେ କେବଳ ଏତିକି କହିପାରିବା ଯେ, ଯିଏ ନିଷେଧନୀତିର ବିରୁଦ୍ଧରେ ନିତ୍ୟ ପ୍ରବହମାନ ମୁକ୍ତିର ଆହ୍ୱାନ ଦିଅନ୍ତି ସେ ସାହିତ୍ୟର ପରିବର୍ତ୍ତନ ପ୍ରତି ଏତେ ଅସହିଷ୍ଣୁ ନ ହେଲେ ଶୋଭା ପାଆନ୍ତା ।

ଏ ମଧ୍ୟରେ ପାଠକେ ଚିତ୍ତବାବୁଙ୍କ ଗଦ୍ୟରୀତି ସହିତ ପରିଚିତ ହୋଇ ସାରିଛନ୍ତି ନିଶ୍ଚୟ । ତାଙ୍କ ଗଦ୍ୟରୀତି ତାଙ୍କର ଏକାନ୍ତ ନିଜସ୍ୱ । ଦିନକୁଦିନ ତାହାର ସ୍ୱଚ୍ଛତା ଓ ବହମାନତା ବଢ଼ୁଛି ସିନା, କେବେ କମୁନାହିଁ । ବାହାକୁ ଦେଖିଲେ ମନେ ହେବ ତାଙ୍କ ରୀତିର ବୈଶିଷ୍ଟ୍ୟ ବାକ୍ୟ ବିନ୍ୟାସ ନିହିତ;- ବାକ୍ୟଗୁଡ଼ିକ ବ୍ୟଞ୍ଜାତ୍ମକ, ନିର୍ମେଦ ଓ ଦ୍ରୁତଗାମୀ । ସ୍ୱଚ୍ଛ ଓ ଶକ୍ତିଶାଳୀ । କିନ୍ତୁ ତାଙ୍କ ଗଦ୍ୟରୀତି ପ୍ରକୃତରେ, ଏକ ବିଶେଷ ଧରଣର ମନର ରଚନା- ଯେଉଁ ଧରଣର ମନ କେବଳ ଏହି ରୀତିରେ ହିଁ ଆପଣାକୁ ଉନ୍ମୋଚନ କରିପାରେ । ପ୍ରକୃତରେ ସେପରି ମନର ଅଧିକାରୀ ହୋଇ ନଥିଲେ ଏହି ରୀତି ଅବ୍ୟବହାର୍ଯ୍ୟ ହୋଇଉଠିବ । ତେଣୁ ଯାହାର ମନ ଚିତ୍ତବାବୁଙ୍କ ମନ ପରି ବିଦଗ୍ଧ, ସୁବେଦୀ, ସୁରସିକ, ବିଶ୍ଳେଷଣ ନିପୁଣ, ବିବେକୀ, ସହୃଦୟ, ସଂସ୍କାର ଓ ମୁକ୍ତବିଚାରବୁଦ୍ଧି ସଂପନ୍ନ, ସାହସୀ ଓ ସତର୍କ, କ୍ଷିପ୍ର ତଥା ଆତ୍ମ ପ୍ରତ୍ୟୟଶୀଳ ହୋଇ ନ ଥିବ- ସେ ଏପରି ଗଦ୍ୟକୁ ଆୟତ୍ତ କରି ପାରିବେ ନାହିଁ । ତେଣୁ ଚିତ୍ତବାବୁଙ୍କ ଗଦ୍ୟରୀତି ଅନନୁକରଣୀୟ ହୋଇ ରହିବ ଅନେକକାଳ ।

ଯେଉଁ ଓଡ଼ିଶାରେ ତାରୁଣ୍ୟ ସବୁଦିନେ ଜରାଗ୍ରସ୍ତ ସେହି ଓଡ଼ିଶାରେ ବୟସରେ ବୃଦ୍ଧ ଓ ମନରେ ତରୁଣ ଚିତ୍ତରଂଜନ ଦାସଙ୍କୁ ଆସନ୍ତୁ ସମସ୍ତେ ଏହି ପଞ୍ଚସପ୍ତତିତମ ବର୍ଷ ବୟସ ଉପଲକ୍ଷେ ଶ୍ରଦ୍ଧା ଓ ସମ୍ମାନ ଜ୍ଞାପନ କରିବା ଓ ତାଙ୍କର ଦୀର୍ଘ ନିରାମୟ ଜୀବନ କାମନା କରିବା ।

*(ପ୍ରତିଭାପୂଜା ପରିଷଦ, କଟକ ପକ୍ଷରୁ ପ୍ରକାଶିତ ଓ ପ୍ରସାରିତ)*

-ପ୍ରଫେସର ଦାଶରଥି ଦାସ

# ପ୍ରେରଣାର ବଗିଚାଟିଏ

୧୯୭୫ ମସିହା ଡିସେମ୍ବର ୬ ତାରିଖ ସଂଧ୍ୟା । ରାଜେନ୍ଦ୍ର କଲେଜ, ବଲାଙ୍ଗୀରର ସଭାକକ୍ଷ । ଚିତ୍ତଭାଇ ଶ୍ରୀଅରବିନ୍ଦଙ୍କ ପୂର୍ଣ୍ଣାଙ୍ଗଶିକ୍ଷା ଓ ଆଜିର ଜୀବନ ଉପରେ ଭାଷଣ ଦେଉଥାନ୍ତି । ସେତେବେଳେ ମୁଁ ତୃତୀୟ ବାର୍ଷିକ କଳା ସ୍ନାତକ ଛାତ୍ର । ଚିତ୍ତଭାଇଙ୍କ କଥାଗୁଡ଼ିକ ଅତ୍ୟନ୍ତ ଶକ୍ତିଶାଳୀ ଓ ଭାବଦ୍ୟୋତକ ମନେ ହେଉଥାଏ । ବେଳେ ବେଳେ ତାଙ୍କ କଠୋର ଶାଣିତ ଭାଷା ମୋତେ ବିସ୍ମିତ କରୁଥାଏ । ସେ ପ୍ରାୟ ୪୫ ମିନିଟ୍ କହିଲେ । ମୋତେ ଖୁବ୍ କମ୍ ସମୟ ଭଳି ବୋଧ ହେଲା । ଘଣ୍ଟାଏରୁ ଅଧିକ କହିବେ ବୋଲି ଆଶା କରୁଥିଲି । ତେଣୁ କିଛିଟା ହତାଶ ହେଲି । କିନ୍ତୁ ସେ ଯାହାସବୁ କହିଲେ ମୋ ମନକୁ ଛୁଇଁ ଯାଉଥିଲା ଓ ମୁଁ ମୁଖ୍ୟ କଥାଗୁଡ଼ିକ ଟିପି ନେଉଥିଲି । ସେହି ନୋଟ୍‌ଟି ଏବେ ବି ମୋ ବହିପତ୍ର ଭିତରେ କୋଉଠି ଥିବ ।

ଏଇଟା ଥିଲା ମୋ ପାଇଁ ଚିତ୍ତଭାଇଙ୍କର ପ୍ରଥମ ଦର୍ଶନ । ପରିଚୟ ବା କଥାବାର୍ତ୍ତା ହେବାର ସୁଯୋଗ ସେତେବେଳେ ମିଳି ନ ଥିଲା । ଦିନେ ଦୁଇଦିନ ଆଗରୁ ଆମର ଇଂରାଜୀ ଅଧ୍ୟାପକ ଆମକୁ ସୂଚାଇ ଦେଇଥିଲେ ଯେ ଜଣେ ଆନ୍ତର୍ଜାତୀୟ ଖ୍ୟାତିସଂପନ୍ନ ବକ୍ତା କଲେଜକୁ ଆସୁଛନ୍ତି । ତେଣୁ ଖୁବ ଆଗ୍ରହ ଓ ଉତ୍କଣ୍ଠା ସହ ସଭାରେ ମୁଁ ଯୋଗ ଦେଇଥିଲି । ସେତେବେଳେ ମୁଁ ନୂଆ ନୂଆ ଶ୍ରୀଅରବିନ୍ଦଙ୍କ ପ୍ରତି ଆକୃଷ୍ଟ ହୋଇଥାଏ । ଶ୍ରୀଅରବିନ୍ଦଙ୍କ କୌଣସି ଗ୍ରନ୍ଥ ପଢ଼ି ନ ଥାଏ । ଏଠୁ ସେଠୁ ତାଙ୍କ ବିଷୟରେ କିଛି ଜାଣିଥାଏ । ଅଧିକ ଜାଣିବା ପାଇଁ ଖୁବ୍ ବେଶୀ ଉତ୍କଣ୍ଠା ରହିଥାଏ । ତେଣୁ ସେଦିନ ଚିତ୍ତଭାଇଙ୍କ କଥାଗୁଡିକ ପୂରା ପିଇ ଯାଉଥାଏ । ସଭା ଶେଷ ହେଲା ପରେ ଜଣେ ଅଧ୍ୟାପକ (ଶ୍ରୀଯୁକ୍ତ ମୁରଲୀ ସାର୍) ଓ ଅନ୍ୟ କେଇଜଣଙ୍କ ଗହଣରେ ସେ କଲେଜ ଛକରେ ଥିବା ଗେଷ୍ଟ ହାଉସକୁ ଚାଲି ଚାଲି ଗଲେ । ତାଙ୍କ କଥା ଶୁଣିବା ପାଇଁ ମୁଁ ସନ୍ତର୍ପଣରେ ଗୋଡାଇଥାଏ । ଅଧ୍ୟାପକ ମହାଶୟ ଆଗରୁ କିଛିଦିନ ପଣ୍ଡିଚେରୀ ଶ୍ରୀଅରବିନ୍ଦ ଆଶ୍ରମରେ ଅବସ୍ଥାନ କରି କୌଣସି କାରଣରୁ ଚାଲି ଆସିଥିଲେ । ସେ ନିଜର ଅନୁଭୂତି ତଥା କେତେକ ସନ୍ଦେହକୁ ନେଇ ଗୁଡିଏ ପ୍ରଶ୍ନ ଚିତ୍ତଭାଇଙ୍କୁ ପଚାରି ଚାଲିଥାନ୍ତି ଏବଂ ଚିତ୍ତଭାଇ ସେଗୁଡିକର ଅତି ଯଥାର୍ଥ ଉତ୍ତର ଦେଉଥାନ୍ତି । ତାଙ୍କ ଉତ୍ତରରେ ଆନ୍ତରିକତା ଓ ଗଭୀର ଅବବୋଧ ଫୁଟି ଉଠୁଥାଏ । ମୁଁ ଲକ୍ଷ୍ୟ କଲି ଭାଷଣ ଦେବା ସମୟରେ ତଥା ବାଟ ଚାଲିଲା ବେଳେ ସେ ଅଧିକାଂଶ ସମୟ ପ୍ରଣାମ ମୁଦ୍ରାରେ ରହୁଛନ୍ତି ବା ଅନ୍ତର୍ମୁଖୀ ହୋଇ ରହୁଛନ୍ତି । ସେ ଯାହା ସବୁ

କହୁଥାନ୍ତି ତାହା ତାଙ୍କ ହୃଦୟର ଗଭୀର ପ୍ରଦେଶରୁ ସ୍ୱତଃ ଝରି ଆସୁଥିଲା ଭଳି ମୋର ମନେ ହେଉଥାଏ ।

ଏହି ଘଟଣାଟି ମୋ ମନରେ ଗଭୀର ରେଖାପାତ କରିଥିଲା । ଶ୍ରୀ ଅରବିନ୍ଦଙ୍କ ଲେଖା ପଢ଼ିବା ଓ ତାଙ୍କୁ ଅଧିକ ଜାଣିବାର ପିପାସା ଜନ୍ମିଲା । ସେ ଦିନ ରାତିରେ ଆମେ ହଷ୍ଟେଲ ପିଲା ପିକ୍‌ନିକ୍ ଉଦ୍ଦେଶ୍ୟରେ ଟିକରପଡା ବାହାରିଲୁ । ବସ୍‌ରେ ଗଲାବେଳେ ଚିତ୍ତଭାଇଙ୍କ କଥାଗୁଡ଼ିକ ମୋ କାନରେ ବାରମ୍ବାର ବାଜୁଥାଏ । ତାଙ୍କ ସ୍ମୃତି ପାଖେ ପାଖେ ଥିବାରୁ ପିକ୍‌ନିକ୍‌ଟି ମଧ୍ୟ ବଡ ଉପଭୋଗ୍ୟ ହେଲା । ଏହି ଘଟଣାର ପ୍ରାୟ ସପ୍ତାହକ ପରେ ମୁଁ ଶ୍ରୀଅରବିନ୍ଦଙ୍କ ନିଜସ୍ୱ ଲେଖା ତଥା ତାଙ୍କ ସମ୍ପର୍କିତ ଲେଖା କିଛି ବହି କିଣି ପଢ଼ିବାର ସୁଯୋଗ ପାଇଲି । ପରେ ପରେ ଅଧ୍ୟୟନର ଧାରା ଆହୁରି ବଢ଼ି ଚାଲିଲା । ମୋତେ ନୂଆ ବାଟଟିଏ ମିଳିଗଲା । କିନ୍ତୁ ସେଇ ବାଟରେ କେତେଦୂର ମୁଁ ଠିକ୍ ଭାବରେ ଚାଲିପାରିଲି ସେଇଟା ଭିନ୍ନ ପ୍ରସଙ୍ଗ ।

ଏହାର ଅନେକ ବର୍ଷ ପରେ ୧୯୮୯ ମସିହାରେ ପାଟଣାଗଡ ନିକଟସ୍ଥ ଖୁଣ୍ଟସମଲାଇ ଗ୍ରାମରେ ସ୍ୱାଧ୍ୟାୟ ଶିବିର ଅନୁଷ୍ଠିତ ହେଲା । ସେଇଠି ଚିତ୍ତଭାଇଙ୍କୁ ଦ୍ୱିତୀୟ ଥର ଲାଗି ଦର୍ଶନ କଲି । ଏଥର କେବଳ ଦର୍ଶନ ନୁହେଁ ପରିଚୟ ଓ ଅନ୍ତରଙ୍ଗ ଆଳାପ ମଧ୍ୟ ହୋଇପାରିଲା । ଚାରିଦିନ ଧରି ଖୁବ୍ ନିକଟରୁ ତାଙ୍କୁ ଦେଖିଲି । ତାଙ୍କ ଜୀବନଶୈଳୀ ଓ ଉନ୍ନତ ଭାବଧାରା ମୋର ହୃଦୟକୁ ଛୁଇଁଲା । 'ଯୋଗ ସମନ୍ୱୟ' ଗ୍ରନ୍ଥ ବୁଝାଇଲା ବେଳେ ସେ ଯେପରି ଭାବରେ ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମିକୁ ଉପସ୍ଥାପିତ କରି ବିଭିନ୍ନ ପ୍ରଶ୍ନ ଓ ସମସ୍ୟାର ସମାଧାନ ଦେଉଥିଲେ ତାହା ଅନନ୍ୟ ସାଧାରଣ ଥିଲା । ବସ୍ତୁ ସକଳ ପ୍ରତି ତାଙ୍କ ଦୃଷ୍ଟି ଭଙ୍ଗୀର ସ୍ୱାତନ୍ତ୍ର୍ୟ ଅତି ନିକଟରୁ ଅନୁଭବ କରିହେଲା । କପଟତା, ସ୍ୱାର୍ଥପରତା ଓ ରକ୍ଷଣଶୀଳ ମନୋଭାବ ଉପରେ ସେ କିପରି ପ୍ରଚଣ୍ଡ ପ୍ରହାର କରିପାରନ୍ତି ତା'ର ପରିଚୟ ମଧ୍ୟ ପାଇଲି । କିନ୍ତୁ ପ୍ରଚୁର ଅଧ୍ୟୟନ ଓ ବିପୁଳ ଜ୍ଞାନ ପ୍ରତି ମୋ ହୃଦୟରେ ସମ୍ମାନବୋଧ ବଢ଼ିଗଲା । ସର୍ବୋପରି ତାଙ୍କ ବନ୍ଧୁ ବାନ୍ଧିବାର କଳା ମୋତେ ଚମତ୍କୃତ କଲା । ତାଙ୍କ ପ୍ରତି ମୋର ଶ୍ରଦ୍ଧା ଓ ଅନୁରାଗ ବହୁଗୁଣିତ ହେଲା ।

ବିଭିନ୍ନ ପୁସ୍ତକ ଓ ପତ୍ରପତ୍ରିକାରୁ ଚିତ୍ତଭାଇଙ୍କ ଉଚ୍ଚକୋଟୀର ସାରସ୍ୱତ ପ୍ରତିଭାର ପରିଚୟ ମିଳେ । ତାଙ୍କ ଗଦ୍ୟ ରଚନାର ବଳିଷ୍ଠ ଶୈଳୀ ଅନନୁକରଣୀୟ ଏବଂ ଏହାର ଗଭୀର ଆବେଦନ ସର୍ବଜନ ସ୍ୱୀକୃତ । ଜୀବନ ଓ ସାଧନା ପ୍ରତି ତାଙ୍କର ପ୍ରତିବଦ୍ଧତା ତାଙ୍କ ଲେଖନୀକୁ ବଜ୍ର କରିଛି । ସମାଜରେ ବୈପ୍ଳବିକ ପରିବର୍ତ୍ତନ ଆଣିବା ଲାଗି ସମସ୍ତ ସାମର୍ଥ୍ୟ ଓ ଉପାଦାନ ତାଙ୍କ ଲେଖାଗୁଡ଼ିକରେ ରହିଛି । ଯେଉଁ କାମ ବି

ସେ ହାତକୁ ନେଇଛନ୍ତି ତାକୁ ପୂର୍ଣ୍ଣ ଆନ୍ତରିକତା ସହ ସମ୍ପୂର୍ଣ୍ଣ କରିଛନ୍ତି । ନିରବଚ୍ଛିନ୍ନ ତାଙ୍କର ସାଧନା । ଅଜସ୍ର ଦୈହିକ ଓ ମାନସିକ ପରିଶ୍ରମ ସେ କରିଛନ୍ତି ଓ ଏବେ ବି କରୁଛନ୍ତି । ଶ୍ରୀମା ଶ୍ରୀଅରବିନ୍ଦଙ୍କ ଗ୍ରନ୍ଥଗୁଡିକର ସଫଳ ଅନୁବାଦ ଏହାର ଉଦାହରଣ ମାତ୍ର । ମଣିଷକୁ ଭଲ ପାଇବା, ପରସ୍ପରର ସୁହୃଦ୍ ହେବା ଓ ପାରସ୍ପରିକତା ବଢ଼ାଇବା- ଏହାରି ଉପରେ ସେ ସର୍ବଦା ସର୍ବୋଚ୍ଚ ଗୁରୁତ୍ୱ ଦେଇ ଆସିଛନ୍ତି । ସମସ୍ତ ସଂକୀର୍ଣ୍ଣତା, କୃତ୍ରିମତା ଓ କପଟତା ପରିହାର କରି ସାମୂହିକ ଭାବରେ ପରିପୂର୍ଣ୍ଣ ଜୀବନ ବଞ୍ଚିବାକୁ ସେ ଆହ୍ୱାନ ଦେଇ ଆସିଛନ୍ତି ।

୧୯୯୨ ମସିହାର ମଇ ଶ୍ରମଶିବିର ପାଇଁ ଡେରା ଯାଇଥାଏ । ତା ୨୧.୫.୯୨ ଦିନ ମୁଁ ପହଞ୍ଚିଲା ବେଳକୁ ଚିତ୍ତଭାଇ ଆସି ନ ଥାନ୍ତି । ସଂଧ୍ୟାବେଳେ ସେ ଆସିଲେ । ଦେଖିଲି ବହୁ ବନ୍ଧୁଙ୍କ ଗହଣରେ ସେ ଆସୁଛନ୍ତି । ବାଟରୁ କେତେ ବନ୍ଧୁ ତାଙ୍କୁ ପାଛୋଟି ଆଣୁଛନ୍ତି ଗଭୀର ଶ୍ରଦ୍ଧାରେ । ସମସ୍ତଙ୍କ ସହ ତାଙ୍କର ପ୍ରଫୁଲ୍ଲିତ ସମ୍ଭାଷଣ । କେତେ ଆତ୍ମୀୟତା, କେତେ ପ୍ରୀତିଉଚ୍ଛଳ ହସ ! ସୌଖ୍ୟଭାବର କେତେ ସୁଖ ! ସମସ୍ତଙ୍କ ହୃଦୟରେ ଚିତ୍ତଭାଇଙ୍କ ପ୍ରତି କେତେ ସମ୍ମାନବୋଧ ! ସେ ଦିନ ପ୍ରତ୍ୟକ୍ଷରେ ଓ ମର୍ମତଃ ବୁଝିଲି ଶିକ୍ଷକ ଓ ଛାତ୍ରଙ୍କ ମଧ୍ୟରେ ଏପରି ସ୍ନେହ ସୌହାର୍ଦ୍ଦ୍ୟ ଓ ବନ୍ଧୁତା ନ ରହିଲେ ଶିକ୍ଷା କଦାପି ସାର୍ଥକ ହୋଇପାରିବ ନାହିଁ । ମାଆଙ୍କର ବାଣୀ ଆଜି ମନେ ପଡେ- "If you wish to be respected by your child, have respect for yourself and be at every moment worthy of respect ." ଶିକ୍ଷକ ଭିତରେ ଏପରି କିଛି ଗୁଣ ରହିବା ଦରକାର ଯାହା ଛାତ୍ରକୁ ସ୍ୱତଃସ୍ଫୂର୍ତ୍ତ ଭାବରେ ତା ଆଡକୁ ଆକର୍ଷିତ କରିଆଣିବ । ଶ୍ରୀଅରବିନ୍ଦଙ୍କୁ ବରୋଦାର ଛାତ୍ରମାନେ ଏବଂ ରବୀନ୍ଦ୍ରନାଥଙ୍କୁ ଦେଶ ବିଦେଶର ଛାତ୍ରମାନେ ଯେଉଁଭଳି ସମ୍ମାନ ଦେଉଥିଲେ ତାହା ଭାବିଲେ ହୃଦୟରେ ପୁଲକ ଅନୁଭୂତ ହୁଏ । ଚିତ୍ତଭାଇ ଯେଉଁଆଡେ ଯାଆନ୍ତି ତାଙ୍କୁ ମଧ ତାଙ୍କର ଶ୍ରଦ୍ଧାଳୁ ମାନେ ସେଇଭଳି ଶ୍ରଦ୍ଧା ଓ ସମ୍ମାନ ଜଣାଇଥାନ୍ତି ।

ଡେରା ଶିବିରରେ ସେଦିନ ଯେତେବେଳେ ଚିତ୍ତଭାଇ ପାଖକୁ ଆସିଲେ ମୁଁ ତାଙ୍କୁ ପ୍ରଣାମ ଜଣାଇଲି । ସେ ପ୍ରଣାମ ଗ୍ରହଣ କଲେ, କିନ୍ତୁ କିଛି କହିଲେ ନାହିଁ । ମୁଁ ଭାବିଲି ମୋତେ ଚିହ୍ନି ପାରିଲେ ନାହିଁ ବୋଧହୁଏ । ତେଣୁ ମୁଁ ନିଜ ତରଫରୁ ପରିଚୟ ଦେଇ କହିଲି, ‘‘ମୁଁ କାଶମ ଭାଇ,’’ ସେ କହିଲେ -‘‘ଜାଣିଛି, କହିବାର ଆବଶ୍ୟକ ନାହିଁ ।’’ ଡେରା ଶିବିରରେ ହଠାତ୍ ମୋର ସ୍ୱାସ୍ଥ୍ୟ ଖରାପ ହୋଇ ପଡିବାରୁ ମୁଁ ଦୁଇଦିନ ମାତ୍ର ରହି ଚାଲି ଆସିଲି । ଚିତ୍ତଭାଇଙ୍କ ସହ ମିଶିବାର ଯେଉଁ ଆନନ୍ଦ ତାହା ପୂରା ଉପଭୋଗ କରିପାରିଲି ନାହିଁ ।

ଏହାପରେ ତା ୫-୪-୯୩ ରେ କଟକ ମାତୃଭବନର ଏପ୍ରିଲ ସମ୍ମିଳନୀ ବେଳେ ତାଙ୍କ ସହ ସାକ୍ଷାତ ହେଲା । ସେତେବେଳେ ମୁଁ ପେଟରେ ଅସୁସ୍ଥତା ଭୋଗୁଥାଏ । ଏ କଥା ତାଙ୍କୁ ଆଗରୁ କହିଥିଲି । ପାଖରେ ଜଳଖିଆ ଖାଇ ବସିଲାବେଳେ ସେ ହଠାତ୍ କହିଲେ," ଏଥର ଆଶ୍ରମରେ ବାବାଜୀ ମହାରାଜଙ୍କୁ ସାକ୍ଷାତ କଲାବେଳେ ମୁଁ ଆପଣଙ୍କ ପେଟ ଅସୁବିଧା କଥା ତାଙ୍କୁ ଜଣାଇଛି । 'ସେ ଲେଖା ଲେଖି କରୁଛନ୍ତି, ଆମ କାମରେ ସହଯୋଗ କରୁଛନ୍ତି, ଆପଣ ତାଙ୍କ ଅସୁବିଧା କଥା ଟିକିଏ ବୁଝନ୍ତୁ ବୋଲି ମହାରାଜଙ୍କୁ କହି ଆସିଛି ।" ଏକଥା ଶୁଣି ମୁଁ ବିସ୍ମିତ ହେଲି । ଆଶ୍ରମ ପରିଦର୍ଶନର ବ୍ୟସ୍ତ ମୁହୂର୍ତ୍ତ ଭିତରେ ଅନ୍ୟ ଅନେକଙ୍କ ଭିତରୁ ମୋ କଥା ସେ ମନେ ରଖି ବାବାଜୀ ମହାରାଜାଙ୍କ ଆଗରେ ଉପସ୍ଥାପିତ କରିଥିବେ, ଏକଥା ହଠାତ୍ ମୁଁ ବିଶ୍ୱାସ କରିପାରିଲି ନାହିଁ । ଭାବିଲି ମୁଁ ତ ମୋ କଥା ବାବାଜୀ ମହାରାଜଙ୍କୁ ଜଣାଇବାକୁ ଚିତ୍ତଭାଇଙ୍କୁ ଆଗରୁ କହି ନଥିଲି । କିପରି ସେ ମୋ କଥା ମନେ ରଖି ଏପରି କହିପାରିଲେ ? କ'ଣ ମୋତେ ଖୁସୀ କରିବା ପାଇଁ ବା ସାହସ ଦେବା ପାଇଁ ମନରୁ ଗଢ଼ି ଏପରି କହୁଛନ୍ତି ? ଏହା ମୋ ଭୌତିକ ମନର କ୍ରୀଡ଼ା ଥିଲା । କିନ୍ତୁ ପରମୁହୂର୍ତ୍ତରେ ଯେତେବେଳେ ସମସ୍ତଙ୍କ ପ୍ରତି ତାଙ୍କର ଅସାଧାରଣ ଶ୍ରଦ୍ଧାଶୀଳତା ଓ ବନ୍ଧୁପଣ ବିଷୟ ଚିନ୍ତା କଲି- ଯାହାକି ତାଙ୍କ ଲେଖାଗୁଡ଼ିକରେ ତଥା ସଂପର୍କ ଗୁଡ଼ିକରେ ଅତ୍ୟନ୍ତ ସ୍ପଷ୍ଟ- ସେତେବେଳେ ତାଙ୍କୁ ବିଶ୍ୱାସ ନ କରି ରହିପାରିଲି ନାହିଁ । ତାଙ୍କ ହୃଦୟରେ ମୋ ପାଇଁ ଅଳ୍ପଲା ସ୍ଥାନଟିଏ ରହିଛି ଜାଣି କୃତକୃତ୍ୟ ହେଲି । ତାଙ୍କ ପ୍ରତି ଶ୍ରଦ୍ଧା ଓ କୃତଜ୍ଞତାରେ ମୋ ହୃଦୟ ପୂର୍ଣ୍ଣ ହୋଇଉଠିଲା । ସେଦିନ ମାତୃଭବନରେ ତାଙ୍କ ଭାଷଣରେ ସେ କହିଥିଲେ- "ଆମ ନିଜ ଭିତରେ ଦିବ୍ୟଶିଶୁକୁ ଜନ୍ମଦେବାକୁ ହେବ । ସେଥିପାଇଁ ଆମକୁ ପ୍ରଥମେ ନିଜେ ଜନନୀ ହେବାକୁ ପଡ଼ିବ । ମଧୁମୟୀ ଦୀପ୍ତିମୟୀ ମାଆଙ୍କର ମାଧୁର୍ଯ୍ୟ ବିଷୟରେ ଆଲୋଚନା କରିବା ଅପେକ୍ଷା ସ୍ୱୟଂ ମାଆ ହୋଇ ନିଜ ଭିତରେ ଦିବ୍ୟ ସନ୍ତାନକୁ ଜନ୍ମ ଦେବା ଶ୍ରେୟସ୍କର । ପାଚିଲା ଆମ୍ବର ଗୁଣଗାନରେ ସମୟ କାଟିବା ଅପେକ୍ଷା ତାକୁ ଖାଇ ରସଗ୍ରହଣ କରିବା ଅଧିକ ବାଞ୍ଛନୀୟ । ଗୁରୁ ସହଜ ହେଲେ ମା' ହୁଏ, ଆମେ ସହଜ ହେଲେ ସନ୍ତାନ ହୋଇପାରିବା । ନିଜେ ସନ୍ତାନ ହୋଇପାରିଲେ ସବୁ ସହଜ ହୋଇଯିବ ।" ଚିତ୍ତଭାଇଙ୍କର ମାର୍ମିକ କଥାଗୁଡ଼ିକ ସେଦିନ ହୃଦୟରେ ଲାଖିଯାଇଥିଲା ।

୧୯୯୫ ମସିହାରେ ମୁଁ ଚିତ୍ତଭାଇଙ୍କ ପାଖକୁ ଚିଠି ଲେଖି ଅନୁରୋଧ କଲି ଆମ ଗାଆଁ ଝରେଇବାହାଲିରେ ସ୍ୱାଧ୍ୟାୟଶିବିର କରିବାକୁ । ସେ କହିଲେ, 'କିଛି ଦିନ ଅପେକ୍ଷା କରନ୍ତୁ । ପ୍ରଥମେ ସେଠିକାର ଯୁବକମାନଙ୍କୁ ଏଥିପାଇଁ ପ୍ରସ୍ତୁତ କରନ୍ତୁ ।'

ତା'ପରେ ପ୍ରାୟ ବର୍ଷକ ପରେ ସେ ନିଜେ ହିଁ ମୋ ପାଖକୁ ଚିଠି ଲେଖି ସ୍ୱାଧ୍ୟାୟ ଶିବିର ଆୟୋଜନ କରିବାକୁ କହିଲେ । ମୋର ଆନନ୍ଦର ସୀମା ରହିଲା ନାହିଁ । ୧୯୯୬ ମସିହା ମାର୍ଚ୍ଚ ୧୫ ତାରିଖରୁ ୧୯ ତାରିଖ ଯାଏ ଏଇ ସ୍ୱାଧ୍ୟାୟ ଶିବିର ଅନୁଷ୍ଠିତ ହୋଇଥିଲା । 'ଯୋଗ ସମନ୍ୱୟ' ଗ୍ରନ୍ଥର ପ୍ରଥମ ପାଞ୍ଚୋଟି ପରିଚ୍ଛେଦର ଅଧ୍ୟୟନ ଓ ଆଲୋଚନା ହେଲା । ଏହି ପାଞ୍ଚଦିନ କାଳ ଚିତ୍ତଭାଇଙ୍କର ନିବିଡ଼ ସାନ୍ନିଧ୍ୟରେ ଆସି ମୁଁ ଅନେକ କଥା ଶିଖିବାକୁ ପାଇଲି । ତାଙ୍କର ସରଳ, ନିରାଡମ୍ବର, ସମର୍ପିତ ଜୀବନକୁ ଅତି ନିକଟରୁ ନିରେଖିଲି । ସେତେବେଳେ ସେ ମୋତେ ପରାମର୍ଶ ଦେଇଥିଲେ ଓଡ଼ିଆରେ ଶ୍ରୀଅରବିନ୍ଦଙ୍କ ଜୀବନୀ ପୁସ୍ତକ ଲେଖିବା ପାଇଁ । ମୁଁ ଆନନ୍ଦରେ ସମ୍ମତି ଦେଇଥିଲି । ଶିବିର ସମାପ୍ତ ପରେ ଯେଉଁଦିନ ସେ ଏଠୁ ବିଦାୟ ନେଲେ ମୋତେ କହିଯାଇଥିଲେ– ''ଆମ କଥା ମନେ ରହିଲା ତ ! ଜୀବନୀ ଲେଖିବାକୁ ଭୁଲିବେ ନାହିଁ ।'' ମୁଁ ପୁଣି ମୋର ସମ୍ମତି ଦୋହରାଇଥିଲି । ପରବର୍ତ୍ତୀ କାଳରେ ଶ୍ରୀଅରବିନ୍ଦଙ୍କ ଜୀବନୀ ପୁସ୍ତକ ଲେଖିବାରେ ମୁଁ ଯେ ସମର୍ଥ ହେଲି ସେଥିଲାଗି ଚିତ୍ତଭାଇଙ୍କ ପ୍ରେରଣା ଓ ସହାୟତା ହିଁ ମୁଖ୍ୟତଃ ଦାୟୀ ।

ସେଦିନ ବିଦାୟ ବେଳାର ଗୋଟିଏ କଥା ମୋର ମନେ ପଡୁଛି । ଚିତ୍ତଭାଇଙ୍କୁ ନେବା ପାଇଁ ଭୁବନେଶ୍ୱରରୁ ଯେଉଁ କାର୍ ଆସିବା କଥା ତାହା ଆସିଲା ନାହିଁ । ଏତେ ଦୂର ବସ୍‌ରେ ଯାତ୍ରା କରିବା ତାଙ୍କ ସ୍ୱାସ୍ଥ୍ୟ ଦୃଷ୍ଟିରୁ କଷ୍ଟକର ହେବ ନିଶ୍ଚୟ । କିନ୍ତୁ ସେ ତିଳେ ମାତ୍ର ବିରକ୍ତି ବା ବିବ୍ରତଭାବ ପ୍ରକାଶ କଲେ ନାହିଁ । ସ୍ଥାନୀୟ ବସ୍ ଆସିଯିବାରୁ ସେ ସଙ୍ଗେ ସଙ୍ଗେ ସେଥିକୁ ଉଠିଗଲେ । ସାଙ୍ଗରେ ଭାଗ୍ୟଧର ଭାଇ ଥାଆନ୍ତି । କିନ୍ତୁ ସୁଖର କଥା ଠିକ୍ ସେହି ସମୟରେ ହିଁ ଉଦ୍ଦିଷ୍ଟ କାର୍‌ଟି ଆସି ପହଞ୍ଚିଗଲା । ସେ ବସ୍‌ରୁ ଓହ୍ଲାଇ ଆସି କାର୍ ଡ୍ରାଇଭରକୁ ପ୍ରଥମେ ତା'ର କୁଶଳ ଜିଜ୍ଞାସା କଲେ । ସେ ଥକିଯାଇଥିବ, ତେଣୁ ତା'ର ବିଶ୍ରାମ ଲୋଡ଼ା କି ବୋଲି ପଚାରି ବୁଝିଲେ । ଡ୍ରାଇଭର ଜଣକ ବାଟରେ ବିଶ୍ରାମ ନେଇଛି ବୋଲି କହିବା ପରେ ଯାଇ ଚିତ୍ତଭାଇ କାର୍ ଚଢ଼ିଲେ ।

ଖୁବ୍ ଦରଦୀ ମଣିଷଟିଏ ସେ । ସମସ୍ତଙ୍କ ସହ ସବୁବେଳେ ଖିଅ ଲଗାଇ ସେ ଆପଣାର ଜୀବନ ବଞ୍ଚୁଛନ୍ତି । ତାଙ୍କ ଶ୍ରଦ୍ଧା ଓ ଅନୁରାଗର ସୀମା ନାହିଁ । ସେ ଜଣେ ବିଶ୍ୱମାନବ । ଭଗବାନଙ୍କ ପାଇଁ ତଥା ସକଳ ମଣିଷଙ୍କ ପାଇଁ ଜୀବନ ବଞ୍ଚିବା ତାଙ୍କର ପ୍ରଧାନ ଲକ୍ଷ୍ୟ । ସେ ଚିରପ୍ରସନ୍ନ, ଚିରସମ୍ମତ ଓ ଚିରସମର୍ପିତ । ତାଙ୍କର ଅଭୀପ୍ସା ଉତ୍ତୁଙ୍ଗ, ଗଭୀର ଓ ପ୍ରଖର । ତାଙ୍କର ବିଶ୍ୱାସ ଅଟଳ ଓ ଅବିଚଳ । ତାଙ୍କର ସାହସ ବଳିଷ୍ଠ, ପ୍ରଜ୍ଞାସନ୍ଦୀପିତ ଓ ସମତାର ଭିତ୍ତିରେ ସୁପ୍ରତିଷ୍ଠିତ । ତାଙ୍କ ଲେଖା ପଢ଼ିଲେ ଓ

ତାଙ୍କ କଥା ଶୁଣିଲେ ତାଙ୍କର ବିଶ୍ୱାସ ଓ ସାହସ ଆମ ପାଖକୁ କେଡ଼େ ସହଜରେ ସଂକ୍ରମିତ ହୋଇଆସେ ।

ଚିତ୍ତଭାଇ ଜଣେ ଯଥାର୍ଥ ଶିକ୍ଷାର୍ଥୀ ଓ ଜଣେ ଯଥାର୍ଥ ଶିକ୍ଷକ । ଶିକ୍ଷକତା ପ୍ରତି ତାଙ୍କ ଯେଉଁ ଶ୍ରଦ୍ଧା ରହିଛି ଆଧୁନିକ ସମାଜରେ ତାହା ଅତ୍ୟନ୍ତ ବିରଳ । ଜଣେ ବିଶ୍ୱ ଶିକ୍ଷକ (World - Teacher) ହେବାର ସମସ୍ତ ଯୋଗ୍ୟତା ତାଙ୍କର ରହିଛି । ଯେଉଁମାନେ ତାଙ୍କର ସ୍ଥୂଳ ସାନ୍ନିଧରେ ଆସିଛନ୍ତି, ତାଙ୍କ ସହ ବାଟ ଚାଲୁଛନ୍ତି, ସେମାନେ ଧନ୍ୟ ହୋଇଛନ୍ତି । ତେବେ ଆମ ନିଜ ଭିତରେ ତଥା ସମାଜ ଭିତରେ ସେ ଯେଉଁ ପରିବର୍ତ୍ତନ ଓ ଉତ୍ତୋଳନ ଆଶା କରନ୍ତି, ଆମେ କେତେଦୂର ସେଥିଲାଗି ସମ୍ମତ ହୋଇଛୁ ବା ସହଯୋଗ କରୁଛୁ ସେ ବିଷୟରେ ଆତ୍ମସମୀକ୍ଷା କରିବାର ସମୟ ଆସିଛି ।

ଚିତ୍ତଭାଇ ମୋ ପାଇଁ ପ୍ରେରଣାର ବଗିଚାଟିଏ । ମୋ ଜୀବନର ଭୂମିରେ ସେ ସର୍ବଦା ପ୍ରେରଣାର ଜାତି ଜାତିକା ଫୁଲ ଫୁଟାଇ ଆସିଛନ୍ତି । ଅନ୍ୟମାନଙ୍କ ଜୀବନରେ ବି ସେପରି ହେଉଛି । ତାଙ୍କ ମହିମାନ୍ୱିତ ସତ୍ତାର ସୌରଭ ମୋ ପାଇଁ ଅବିସ୍ମରଣୀୟ ।

ଶେଖ୍ ଅବଦୁଲ୍ କାଶମ୍

*ଗ୍ରାମ : ଝରେଇବାହାଲି, ପୋ:ଅ ସାହାଜବାହାଲ*

*ଭାୟା: ତୁରୁଡ଼ାପଲି, ଜିଲ୍ଲା- ବଲାଙ୍ଗିର*

# ପରାର୍ଥ ପଥିକ : ଚିତ୍ତରଂଜକ ଚିତ୍ତରଂଜନ

ସେ ଲୋକ ଜଣକ ସବୁବେଳେ ସେମିତି । ଏଣୁ ତେଣୁ ଖଣ୍ଡେ ଖଦଡ଼ ଧୋତି ଆଉ ଖଣ୍ଡେ ଜାମା । ତା' ସାଙ୍ଗକୁ ହୁଏତ ଗୋଟେ ଶାନ୍ତିନିକେତନୀ ବ୍ୟାଗ୍ । ତାଙ୍କ ବେଶ ପୋଷାକରେ ସେମିତି କିଛି ଚାକଚକ୍ୟ ନଥାଏ ।

ଖାଇବା ପିଇବା ବି ସେମିତି । ଯେ ସ୍ଥାନେ ଯେମନ୍ତ ମିଳଇ । ବସିବାରେ ମିଶିବାରେ କିଛି ଖାସ ବାରଣ ନ ଥାଏ ସେମିତି । ପିଲା ବୁଢ଼ା ସମସ୍ତଙ୍କ ସହିତ ମିଶନ୍ତି । ଶିକ୍ଷିତ ଅଶିକ୍ଷିତ ବି ବାରନ୍ତି ନାହିଁ ।

ସହର ମଫସଲ ତାଙ୍କ ପାଇଁ ସବୁବେଳେ ସମାନ । ଆଜି ସମୁଦ୍ର କୂଳରେ ତ କାଲି ପୁଣି ପାହାଡ଼ ମୂଳରେ । ଯେଉଁଠି ରହିଲେ ବି ତାଙ୍କ ଲେଖା ଚାଲିଥାଏ । ଲେଖା ଲେଖି କେତେବେଳେ ବନ୍ଦ ହୁଏନି ବୋଧେ । ନ ହେଲେ ଏତିକି ଆୟୁଷ ଭିତରେ ଶତାଧିକ ବହି ଲେଖିଥାନ୍ତେ କିପରି ?

ତାଙ୍କ ଲେଖାଲେଖି ଦେଖିଲେ ସତରେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ତାଙ୍କୁ ଯେ ସଭା ସମିତିରେ ପୁଣି ଶୁଣିବ ସେ ଆହୁରି ଆଶ୍ଚର୍ଯ୍ୟ ହେବ । କୌଣସି ଦୃଷ୍ଟିରୁ ତାଙ୍କୁ ମାପି ହେବନି । ଅକଳନ୍ତି ସତରେ ତାଙ୍କ ବ୍ୟକ୍ତିତ୍ୱ, ତାଙ୍କର ପଢ଼ାପଢ଼ି ।

ସଭାସମିତିରେ ଅଧିକାଂଶ ବେଳେ ଦେଖିଛି ସମସ୍ତଙ୍କ ପଛରେ ସେ ଚାଲିଥିବେ । ଆଗ ଧାଡ଼ିରେ ବସିବାକୁ କେବେ ପ୍ରାୟ ବାହାରନ୍ତିନି । କୁହାଳିଆ ପ୍ରବୀଣମାନଙ୍କ ମେଳ ବି ତାଙ୍କୁ ସେମିତି ଭଲ ଲାଗେନି ବୋଧେ ।

ସେ ଅଧିକାଂଶ ବେଳେ ତରୁଣମାନଙ୍କ ମେଳରେ ଥାନ୍ତି । ସେମାନଙ୍କୁ ଛିଗୁଲଉ ଥାନ୍ତି । ଆଗକୁ ଯିବା ପାଇଁ ସବୁବେଳେ ଉସକଉ ଥାନ୍ତି । ସବୁବେଳେ ନୂଆ ନୂଆ ବହିକଥା କହନ୍ତି । ଥଟ୍ଟା ନକଲ ହୁଅନ୍ତି । ଅଳପ ଅଳପ ହସୁଥାନ୍ତି । ଅଳପ ଅଳପ ରସୁଥାନ୍ତି । ଅନେକ ସମୟରେ ଉଦାସ ହୋଇ ବସିଥାନ୍ତି ।

ମୋତେ ସବୁବେଳେ ସତରେ ସେ ବଡ଼ ଅଦ୍ଭୁତ ଲାଗନ୍ତି । ତାଙ୍କ ବ୍ୟକ୍ତିତ୍ୱ ଅପହଞ୍ଚ ହୋଇ ରହିଗଲା ଭଳି ଲାଗେ । ମୋର ହେତୁ ହେଲା ଦିନ ଠାରୁ ଖାସ ମୁଁ ତାଙ୍କ ପ୍ରେମରେ ପଡ଼ିଛି । ତିରିଶ ବର୍ଷରୁ ବେଶୀ ହେବଣି ତାଙ୍କ ସହିତ ମୋର ସମ୍ପର୍କ । କେତେ ମନେ ରଖି ପାରନ୍ତି ସେ ! ଅଦ୍ଭୁତ ସ୍ମରଣ ଶକ୍ତି । ଅତୁଳନୀୟ ଆତ୍ମୀୟତା ।

ତାଙ୍କୁ ସତରେ ମୁଁ ବହୁତ ଭଲ ପାଏଁ । ଯଥେଷ୍ଟ ସମ୍ମାନ ଦେଖାଏଁ । ମୋର ମନେହୁଏ ସେ ବି ମୋ ପ୍ରତି ଅଖଣ୍ଡ ଶ୍ରଦ୍ଧାଶୀଳ । ମୋ ବୌଦ୍ଧିକ ଜୀବନ ବିକାଶର ସବୁ ଖବର ସେ ରଖନ୍ତି । କେଡ଼େ ଶୁଭାନୁଧାୟୀ ସତରେ ମୋର ସେ । ଯେଉଁଠି ଯେପରି ଭାବରେ ଦେଖା ହେଲେ ବି ପରମ ଅନ୍ତରଂଗ ଭାବେ କଥା ହୁଅନ୍ତି । କୁଶଳ ଜିଜ୍ଞାସା କରନ୍ତି । ଏତେ ଆତ୍ମୀୟତା, ଶ୍ରଦ୍ଧା ବାଣ୍ଟିବାର ଏତେ ପ୍ରବଣତା ମୁଁ କ୍ୱଚିତ ଲୋକଙ୍କ ପାଖରେ ଦେଖେ ।

ସେ ମୋ ସମକ୍ଷରେ ସବୁ ଦୃଷ୍ଟିରୁ ଅନନ୍ୟ ସତରେ ।

ଏତେ ପଢ଼ାପଢ଼ି ମୋ ପ୍ରଦେଶର ଆଉ କାହାର ଅଛି ?

ଏତେ ଅନ୍ତର୍ମୁଖୀନତା ?

ଏତେ ଗ୍ରାହକତା, ଏତେ ଗ୍ରହଣଶୀଳତା ?

ଏତେ ପ୍ରଜ୍ଞା, ଏତେ ସ୍ୱାଭିମାନ ?

ମୁଁ ତାଙ୍କୁ ଦେଖି ସର୍ବଦା ମୁଗ୍ଧ ହୋଇଛି । ଚକିତ ହୋଇଛି । ତାଙ୍କର ଗରିମାମୟ ହେତୁବାଦୀ ଚିନ୍ତନର ତୁଳନା ନାହିଁ । ତାଙ୍କ ହେତୁବାଦୀ ଭାବଧାରା ମୋତେ ପ୍ରଭାବିତ କରିଛି । ଜଣେ ଲେଖକର ସର୍ବୋତ୍ତମ ପ୍ରଭାବକୁ ମୁଁ ଉପଲବ୍ଧି

କରିଛି । ସେ ଦୃଷ୍ଟିରୁ ତାଙ୍କ ଲେଖାର ଗୋଟେ ଧାଡି ବି ମୂଲ୍ୟବାନ ହୋଇ ଉଠିଛି ମୋ ପାଇଁ ।

ମୁଁ ତାଙ୍କ ଲେଖା ପଢ଼ିଲା ଦିନଠାରୁ ତାଙ୍କୁ ଦେଖିବା ପାଇଁ ମୋ ଭିତରେ ପ୍ରଚଣ୍ଡ ଉତ୍ସୁକତା ସୃଷ୍ଟି ହୋଇଥିଲା । ଇଚ୍ଛା ଶକ୍ତି ପ୍ରବଳ ଥିଲେ ଉପାୟ ସୃଷ୍ଟି ହୁଏ ବୋଧେ ।

ଅବଶେଷରେ ତାଙ୍କ ସହିତ ମୋର ଦେଖାହେଲା । ଭରର ଶ୍ରାବଣର ଗୋଟେ ମଧ୍ୟାହ୍ନରେ ଦୂର ପ୍ରାନ୍ତୀୟ ଗୋଟିଏ ପଲ୍ଲୀରେ ।

ସେ ଘଟଣା ଗୋଟେ ନାଟକୀୟ କାହାଣୀ ପରି ଲାଗେ ।

ସେ ଆଗେ ଆଗେ ଚାଲିଛନ୍ତି ତ ମୁଁ ପଛେ ପଛେ । ସାରା ସକାଳ ପହରୁ ଏମିତି ଲୁଚକାଳି ଖେଳ । ଶ୍ରାବଣ ମାସର ଅସରା ଅସରା ବର୍ଷା । ମଝିରେ ଟିକିଏ ଟିକିଏ ଖରା ।

ତଂପରିମୁଣ୍ଡାର ତାଙ୍କର ଜଣେ ପ୍ରିୟ ଛାତ୍ର ଶ୍ରୀ ଶଶିଭୂଷଣ ପାଣିଗ୍ରାହୀଙ୍କ ଠାରୁ ଖବର ପାଇଲି ଯେ ସେ ନିକଟସ୍ଥ ଗୋଡ଼ଭଗାକୁ ଆସିଛନ୍ତି ବୋଲି । ମୁଁ ତାଙ୍କୁ ଦେଖିବା ପାଇଁ ଏତେ ବ୍ୟାକୁଳ ହୋଇ ପଡ଼ିଲି ଯେ, ହଠାତ୍ ମୁଁ ଡ଼ିପାର୍ଟମେଣ୍ଟରୁ ଛୁଟି ନେଇ ମୋ ମୋଟର ସାଇକେଲ ଯୋଗେ ଗୋଡ଼ଭଗା ଗଲି ।

ଉପସ୍ଥିତ ବ୍ୟକ୍ତିଙ୍କ ସହିତ ସହଜରେ ବୋଧେ ସାକ୍ଷାତ୍ ହୁଏନି । କେତେବେଳେ ପୂର୍ବରୁ ସେ ସମ୍ବଲପୁରର ଅଇଁଠା ପାଲି ନିକଟସ୍ଥ କାଇଁଶିରି ଗ୍ରାମ ଅଭିମୁଖେ ବସରେ ଚାଲି ଯାଇଥିଲେ । ମୁଁ ଆଉ ବିଳମ୍ବ ନକରି ମୋଟର ସାଇକେଲ ଯୋଗେ ବର୍ଷାରେ ଭିଜିଭିଜି ପୁଣି କାଇଁଶିରି ବାହାରିଲି ।

ଅଇଁଠା ପାଲିରୁ କିଛିବାଟ ଗଲାପରେ ଦୁର୍ଗମ କାଦୁଅ ରାସ୍ତା ପଡ଼ିଲା । ପାଣିଭର୍ତ୍ତି ଶ୍ରାବଣ ମାସର ଧାନକିଆରୀ । ରାସ୍ତାପାଖ ଜଣକ ଘରେ ମୋଟର ବାଇକ୍‌ଟିକୁ ରଖିନେଇ ମୁଁ କାଦୁଅରେ ଚାଲି ଚାଲି ଶେଷରେ କାଇଁଶିରି ଗଲି ।

ମୋର ପ୍ରିୟତମ ଲେଖକଙ୍କ ସହିତ ସାକ୍ଷାତ୍ ହେବ- ଏହା ଥିଲା ସେଦିନ ମୋର ପ୍ରଚଣ୍ଡ ଅଭିଳାଷର ବିଷୟ ।

ତାଙ୍କର ପ୍ରବନ୍ଧ ସମାଲୋଚନାର ଯୁକ୍ତିସବୁ ମୋ ଯୁବପ୍ରାଣରେ ଗଭୀର ରେଖାପାତ କରିଥିଲା । ସବୁଠାରୁ ବେଶୀ ମୁଗ୍ଧ କରିଥିଲା ମୋତେ ତାଙ୍କର ଅତି ମାର୍ମିକ ରଚନାଶୈଳୀ ଓ ଏକାନ୍ତ ବୈଜ୍ଞାନିକ ହେତୁବାଦୀ ବିଚାର ଧାରା ।

ମୁଁ ତାଙ୍କର ଜଣେ ମୁଗ୍ଧ ପାଠକ । ପାଠକତା ବେଳେ ପ୍ରେମଠାରୁ ବି ପ୍ରଗାଢ଼ । ଲେଖା ପଢ଼ିବା ଭିତରେ ମଜିଯିବା, ବିହ୍ୱଳ ହେବା ଗୋଟେ ପ୍ରକାରର

ଅଲଗା ଆନନ୍ଦ । ଭାରି ସାତ୍ତ୍ୱିକ । ଗୋଟେ ଭଲ ଲେଖା ଏତେ ପୁଲକମୟ ପୃଥିବୀକୁ ନେଇଯାଏ ସତରେ ସେ ପାଠକୀୟ ଅନୁଭବକୁ କୌଣସି ତରାଜୁରେ ମାପି ହେବନି ।

ମୋର ସେଇ ପ୍ରିୟ ଲେଖକ ଜଣକ ଗାଳ୍ପିକ ନଥିଲେ କି ଔପନ୍ୟାସିକ ନଥିଲେ । ମାତ୍ର ତାଙ୍କ ବ୍ୟକ୍ତିନିଷ୍ଠ ନିବନ୍ଧ ସବୁ ମୋତେ ଆଶ୍ଚର୍ଯ୍ୟ ଜନକ ଭାବେ ଗଳ୍ପ ଉପନ୍ୟାସ ଠାରୁ ଅଧିକ ଆନନ୍ଦ ଦେଇଛି । ତାଙ୍କ ଲେଖା ପଢୁ ପଢୁ ମୁଁ ଏପରି ଭାବାବିଷ୍ଟ ହୋଇ ଯାଇଛି ଯେ ମୁଁ ତାଙ୍କ ବହିଛାଡ଼ି କୁଆଡକୁ ଆଉ ଯାଇ ପାରିନି । ସ୍ଥିର ହୋଇ ରହି ପାରିନି ।

ଗୋଟେ ସୁନ୍ଦର ଜୀବନ ବଞ୍ଚିବା ପାଇଁ ଏତେ ବଳଶାଳୀ ଯୁକ୍ତି ତାଙ୍କ ଲେଖାମାନଙ୍କରେ ଥାଏ ଯେ ତା'ର ମୋହ ତୁଟେଇ ହୁଏନି । ମଣିଷଟିଏ ତା ନିଜ ବାଟରେ ବଞ୍ଚିବା ପାଇଁ କେତେ ଗୁଡ଼ିଏ ଲଜିକ୍‌କୁ ହୁଏତ ଆପଣେଇ ନିଏ । ସେଇ ଲଜିକ୍‌ସବୁ ତା'କୁ ସନ୍ଦିଗ୍ଧ ହେବାକୁ ହୁଏତ ଦିଏ ନାହିଁ ।

ନିଜ ସ୍ୱାର୍ଥର ବଳୟ ଭିତରେ ବଞ୍ଚୁଥିବା ଜଣେ ମଣିଷ ଜୀବନରେ କେତେ ଅଧିକ ବିଶ୍ୱମୁଖୀ ହୋଇପାରେ ଏବଂ ହେବା ଉଚିତ୍ କିମ୍ବା ବ୍ରହ୍ମାଣ୍ଡ ଭୋଗର ମୂଳ ସର୍ତ୍ତ ସବୁ କ'ଣ ଏ ବିଷୟ ତାଙ୍କ ଲେଖାରେ ପ୍ରାୟ ସୂଚିତ ହୋଇଥାଏ ।

ଜଣେ ଲେଖକର ବଡ଼ ବୁନିଆଦି ହେଉଛି ତା'ର ବିଶ୍ୱଦୃଷ୍ଟି (world view) । ଗୋଟେ ଲେଖାର ସେହିପରି ସର୍ବୋତ୍ତମ ଗୁଣ ହେଉଛି ସାର୍ବଜନୀନତା ଓ ସାର୍ବକାଳୀନତାର ଆବେଦନ ।

ଉତ୍ତମ ଲେଖାଟିଏ ହାତ ଧରି ସବୁବେଳେ ଆଗକୁ ନେଇଯିବ । ଆଲୋକର ପଥ ଦେଖାଇବ । ଚେତନାର ବିକାଶ ଘଟାଇବ ।

ମୁଁ ତାଙ୍କ ଲେଖା ପଢ଼ି ପ୍ରାୟ ମୋ ଜୀବନର ବିଶ୍ୱାସ ସବୁକୁ ତିଆରି କରିଛି । ମୋ ନିଜ ପାଇଁ ଗୋଟେ ବାଟ ବିଛାଇଛି । ନାନା ପ୍ରତିବନ୍ଧକ ସତ୍ତ୍ୱେ ମୋ ମନକୁ ସୃଜନଶୀଳ କରି ରଖିଛି ।

ତାଙ୍କ ଲେଖା ସବୁ ପଢ଼ିବା ଦ୍ୱାରା ବୌଦ୍ଧିକ ଜୀବନ ପ୍ରତି ମୋର ଉନ୍ମୁଖତା ବଢ଼ିଛି । ମୁଁ ସଂସାରର ନିହାତି ଇତର କଥାରେ ଆଉ ମନ ଦେଇନି । ପୁସ୍ତକସବୁକୁ ଉତ୍ତମ ବଂଧୁ ବୋଲି ଜ୍ଞାନ କରିଛି । ଅତି ମାତ୍ରାରେ ସାଂସାରିକ ହେବାକୁ ଚାହିଁନି । ଖାଲି କଉଡି ଗଣାରେ ମନ ଦେଇନି । ସଂସାରର ଅସାର କଥା ଆଉ ମୋତେ କବଳିତ କରିପାରିନି । ମୋ ନିଜ ପାଇଁ ମୁଁ ଗୋଟେ ଏସ୍‌ଥେଟିକସ୍ ତିଆରି କରିପାରିଛି ।

ତାଙ୍କ ଲେଖା ସବୁ ସତରେ ଜୀବନରେ ମୋତେ ବହୁତ ପ୍ରଭାବିତ କରିଛି ।

ମୋ ଦୁଃସ୍ଥିତିରେ ମୋତେ ପ୍ରବୋଧନା ଦେଇଛି । ଗୋଟେ ଶୁଦ୍ଧ ବୌଦ୍ଧିକ ଜୀବନ ବଞ୍ଚିବା ପାଇଁ ନାନା ଭାବରେ ଅନୁପ୍ରେରିତ କରିଛି ।

ବିଦ୍ୟାର ପୃଥକ୍ ପୃଥକ୍ କୋଠରୀ ସବୁକୁ ସେ ତାଙ୍କ ଲେଖାରେ ଭାଙ୍ଗି ଦେଇଛନ୍ତି । ସବୁ ବିଦ୍ୟାର ଚେତନାଗତ ବିଷୟ ଗୋଟେ ଉଚ୍ଚତର ଶୀର୍ଷରେ ଯେପରି ମିଶି ଏକ ହୋଇଯାଇଛି । ଏତେ ଆନ୍ତର୍ବିଦ୍ୟାମୂଳକ ଏକମୁଖୀନତା ମୁଁ କ୍ୱଚିତ୍ ଲେଖକଙ୍କ ଲେଖାରୁ ପାଇଛି ।

ମନୁଷ୍ୟର ଜୀବନଧାରା ଓ ତା'ର ସୁଦୀର୍ଘ ସାମାଜିକ ବିବର୍ତ୍ତନ ଇତିହାସ ପର ପିଢ଼ୀର ମଣିଷକୁ ସଫଳ ଜୀବନ ବଞ୍ଚିବା ପାଇଁ ହୁଏତ ମାର୍ଗ ନିର୍ଦ୍ଦେଶ କରେ ।

ତାଙ୍କ ଲେଖା ଗୋଟେ ସୀମିତ ସମୟ, ଖଣ୍ଡିତ ଭୂଗୋଳ ଅବା ଗୋଟେ ସଂକୀର୍ଣ୍ଣ ବିଚାରର ଚିତ୍ର ନୁହେଁ । ବିଶାଳତା, ପରିପକ୍ୱତାର ଗୋଟେ ଆପେକ୍ଷିକ ଅଂଶ ।

ସେତେବେଳକୁ ବହୁଗ୍ରନ୍ଥ ତାଙ୍କର ଛପାହୋଇ ଲୋକଲୋଚନକୁ ଆସିଲାଣି । ସେ ସେତେବେଳକୁ ଜଣେ ବେଶ୍ ଜଣାଶୁଣା ପ୍ରତିଷ୍ଠାସମ୍ପନ୍ନ ଲେଖକ ହୋଇଗଲେଣି । ବିଦେଶ ଯାଇ ବହୁ ବିଶ୍ୱବିଦ୍ୟାଳୟରେ ପରିଦର୍ଶୀ ଅଧ୍ୟାପକ ଭାବେ ଭାଷଣ ଦେଇ ଆସିଲେଣି ।

ସେ ବି ପାଞ୍ଚ ପ୍ରକାରର ଗ୍ରନ୍ଥ ଲେଖିଛନ୍ତି । ମାତ୍ର ପ୍ରତିଟି ଗ୍ରନ୍ଥରେ ମୋଟାମୋଟି ଭାବେ ଗୋଟେ ଅନ୍ତର୍ମୁଖୀ ମଣିଷର ଜୀବନ ଦୃଷ୍ଟି ମିଶାମିଶି ହୋଇଥାଏ । ବିଶ୍ୱର ଜ୍ଞାନ ବିଜ୍ଞାନର ଯେଉଁ ଦିଗକୁ ସେ ଅବତାରଣା କରିଥାନ୍ତୁ ନା କାହିଁକି ସେଥିରେ ତାଙ୍କ ସଂବେଗ ଓ ସ୍ୱାଭିମାନ ପ୍ରକଟିତ ହୋଇଥାଏ ।

ଲେଖକୀୟ ସତ୍ତାର ଏହି ପ୍ରକଟନ ତାଙ୍କ ଲେଖାର ସବୁଠାରୁ ଉଜ୍ଜ୍ୱଳତର ଦିଗ । ଲେଖା ଭିତରେ ଲେଖକ ଯେତେ ଅଧିକ ମାତ୍ରାରେ ରହିବେ ଲେଖାର ପ୍ରଭାବ ସେତେ ବଢ଼ିବ । ପାଠକ ଲେଖକର ପ୍ରତିମାଟିକୁ ବରାବର ନିଜ ପାଖରେ ପାଆନ୍ତି ।

ସେତେବେଳକୁ ମୁଁ ତାଙ୍କ ଜୀବନ ବଞ୍ଚିବା ସଂପର୍କରେ ବେଶ୍ କିଛି କଥା ଜାଣି ସାରିଥିଲି ।

ମୋତେ ସେ ଜଣେ ପରିବ୍ରାଜକ ପରି ଲାଗୁଥିଲେ । ତାଙ୍କ ଜୀବନ ଢାଞ୍ଚା ପ୍ରତି ମୋର ଅହେତୁକ ଭଲ ପାଇବା ସୃଷ୍ଟି ହୋଇ ସାରିଥିଲା । ସେ ସାଂସାରିକ ଜୀବନ ବଞ୍ଚି ଥିଲେ ବି କିଛି ଅଧିକ ନିର୍ଜ୍ଜନତା ତାଙ୍କ ଜୀବନ ପରିଧି ଭିତରେ ଥିଲା । ବୌଦ୍ଧିକ ଜୀବନ ପ୍ରତି ପ୍ରାଣର ଉନ୍ମୁଖତା ବଢ଼ିଲେ ତା ସହିତ ବେଳେ ବେଳେ ଏକାକୀତ୍ୱ ବୋଧ ଓ ସନ୍ୟାସର ବାସନା ହୁଏତ ବଢ଼ିଥାଏ ।

ତାଙ୍କ ବ୍ୟକ୍ତିତ୍ୱ ଓ ତାଙ୍କର ଲେଖକ ଜୀବନ ମୋତେ ସେତେବେଳକୁ ବହୁ ଭାବରେ ଆକୃଷ୍ଟ କରିସାରିଥିଲା । ପ୍ରସ୍ତାବିତ ପଲ୍ଲୀ ବିଶ୍ୱବିଦ୍ୟାଳୟରେ ବିଦେଶୀ ଫେରନ୍ତା ଯୁବ ଶିକ୍ଷକ ଭାବେ ତାଙ୍କର ଯୋଗଦାନ ଓ ଜୀବନ ବିଦ୍ୟାଳୟର ଦର୍ଶନ ମୋତେ ଭାରି ଅଦ୍ଭୁତ ଲାଗୁଥିଲା । ଥରେ ଯାଇ ଚଂପଭିମୁଣ୍ଡାର ସାରା ପରିବେଶ, ଭାଙ୍ଗିପଡ଼ିଥିବା ସେ ଆବାସିକ ବିଦ୍ୟାଳୟର ପ୍ରତିଟି ପରିତ୍ୟକ୍ତ କୁଟୀରକୁ ଆଖିରେ ଦେଖି ଆସିଥିଲି । ସେଠାକାର ଲୋକମାନଙ୍କୁ ପଚାରି ବୁଝିଥିଲି ଯେ, ମୋର ପ୍ରିୟ ଲେଖକ କେଉଁଠି କିପରି ରହୁଥିଲେ । କେଉଁ ଜାଗାରେ ବସି କେତେବେଳେ ଲେଖୁଥିଲେ ।

ସେ ଛାତ୍ରଛାତ୍ରୀମାନଙ୍କୁ ପ୍ରତିଦିନର ସମ୍ବାଦ ପଢ଼ି ଶୁଣାଉ ଥିଲେ ତ ଜୀବନ ଗଢ଼ିବା ପାଇଁ ଉପଦେଶ ଦେଉଥିଲେ । ଆବାସିକ ବିଦ୍ୟାଳୟଟିର ପରିଚାଳନା ଦେଖୁଥିଲେ ତ ଗୋଡ଼ରେ କାଦୁଅ ଚକଟି, ଇଟାରେ ଶ୍ରେଣୀଗୃହ ଓ ଛାତ୍ରାବାସ ପାଇଁ ନୂଆ ନୂଆ ବଖରାମାନ ତିଆରି କରୁଥିଲେ ।

ତାଙ୍କୁ କିପରି ମୁଁ ଦେଖିବି ଆଉ ସେ ମୋତେ କିପରି ଗ୍ରହଣ କରିବେ ଏହି ଭାବନାରେ ସେଦିନ ଶ୍ରାବଣ ମାସର କାଇଁଶିରି ଗାଁର କର୍ଦ୍ଦମାକ୍ତ ରାସ୍ତା ପାରି କରିଥିଲି । ଚାରିକଡ଼େ ଅସୁମାରି ଧାନବିଲ । ଦୂରସ୍ଥ ବିଶ୍ୱବିଖ୍ୟାତ ହୀରାକୁଦ ଜଳଭଣ୍ଡାର, ଶୋଭାବନ୍ତ ବିଦ୍ୟାଳୟ ମୋର ମନ ହରଣ କରୁଥିଲା ।

ମୁଁ ବାଟସାରା ସବୁବେଳେ ତାଙ୍କ କଥା ହିଁ ଭାବୁଥିଲି । ତାଙ୍କ ହୃଦୟର ଭାବତରଙ୍ଗ ସବୁ ତାଙ୍କୁ ସର୍ବଦା କିପରି ଉଦ୍‌ବେଳିତ କରୁଥିଲା । ସେ କିପରି ବିଶ୍ୱ ପର୍ଯ୍ୟଟନରେ ଯାଇ ଦିନ କଟାଇଛନ୍ତି ସେ ସବୁ ବିଷୟ ମୋ ମନକୁ ଆସୁଥିଲା ।

ମୋର ପ୍ରିୟ ଲେଖକ ଜଣକ ରବୀନ୍ଦ୍ରନାଥଙ୍କ ସ୍ୱପ୍ନ ସଦନ ବିଶ୍ୱବିଖ୍ୟାତ ଶାନ୍ତିନିକେତନରେ କିପରି ଗବେଷକ ଭାବେ ଜୀବନ କଟାଇଥିଲେ ସେ କଥା ମୁଁ ନାନାମତେ ପଢ଼ିଥିଲି ।

ସେଇଠି ତାଙ୍କ ମନ ଓ ଚେତନା ପ୍ରସାରିତ ହୋଇ ଯାଇଥିଲା । ସେଇଠି ସେଇ ବିଶ୍ୱଭାରତୀରେ ତାଙ୍କ ଚେତନା ବଢ଼ିଥିଲା । ସଙ୍କଳ୍ପ ସୁନିର୍ଦ୍ଦିଷ୍ଟ ହୋଇଥିଲା । ନୃତତ୍ତ୍ୱ, ସମାଜତତ୍ତ୍ୱ, ଦର୍ଶନ, ମନୋବିଜ୍ଞାନ, ସାହିତ୍ୟ, ସଂସ୍କୃତି ସବୁ ବିଷୟରେ ତାଙ୍କର ପଢ଼ାପଢ଼ି ଆରମ୍ଭ ହୋଇ ଯାଇଥିଲା ।

ସେ ବହି ପଢ଼ିବାରେ ନିଜକୁ ହଜାଇ ଦେଇଥିଲେ । ବିଶ୍ୱ ଦୃଷ୍ଟି ତାଙ୍କର ଆହୁରି ତୀକ୍ଷ୍ଣ ଓ ମାର୍ମିକ ହୋଇଥିଲା । ଶାନ୍ତିନିକେତନ ତାଙ୍କ ପାଇଁ ମହାନ୍ ତୀର୍ଥ ହୋଇଗଲା । ତାଙ୍କ ସ୍ୱପ୍ନର ବଳୟ ଅଧିକ ପରିବ୍ୟାପ୍ତ ହେଲା । ପ୍ରାଣର

ସୃଜନଶୀଳତା ବଢ଼ିଲା । ବିଶ୍ୱଭାରତୀର ନାନା କାର୍ଯ୍ୟକ୍ରମରେ ସେ ଅଂଶଗ୍ରହଣ କଲେ ।

ଶାନ୍ତିନିକେତନରେ ମହାନ୍ ମହାନ୍ ଗ୍ରନ୍ଥସବୁ ତାଙ୍କୁ ଆଲୋକର ପଥ ଦେଖାଇଲା । ସେ ପଢ଼ିଲେ ପାସ୍କାଲ, ସ୍ପିନୋଜା, ଦେକାର୍ଟ ଓ ଆହୁରି ଅନେକଙ୍କୁ । ପ୍ରାଚୀନ ଭାରତୀୟ ସାହିତ୍ୟ ପଢ଼ିଲେ । ବହୁ ସନ୍ଥ କବିମାନଙ୍କୁ ପଢ଼ିଲେ । ମହିମା ଧର୍ମ ସଂପର୍କରେ ଚର୍ଚ୍ଚା କଲେ ।

ତରୁଣ ଚିତ୍ତରଞ୍ଜନଙ୍କ ଭିତରୁ ବହୁ ସମ୍ଭାବନାମୟ ଝଲକ ଉକୁଟି ଉଠିଲା । ତାଙ୍କ ଲେଖାର ଅଧିକ ତୀକ୍ଷଣତା ଓ ମାର୍ମିକତା ପ୍ରକଟିତ ହେଲା ।

ତାଙ୍କ ଲେଖକୀୟ ପ୍ରତିଷ୍ଠାକୁ ସମସ୍ତେ ଅନେଇ ରହିଲେ ।

ଯାହା ଜୀବନର ମୂଳ ଚେତନା ସହିତ ସମ୍ବନ୍ଧିତ ନୁହେଁ, ଯାହା ସମାଜଗଠନର ମନୋଭାବ ଠାରୁ ଦୂରବର୍ତ୍ତୀ ସେ ପ୍ରକାର ଏସଥେଟିକସ୍‌କୁ ସେ ହୃଦୟ ନେଇ ଗ୍ରହଣ କରିନାହାନ୍ତି ।

ମାର୍କସବାଦୀ ଚିନ୍ତନରେ ଯାହା ସାର, ଯାହା ପୁଣି ଅର୍ଥପୂର୍ଣ୍ଣ ଓ ବାସ୍ତବ ତା'କୁ ଅସ୍ତିତ୍ୱବାଦୀ ଭାବ ଚେତନାରୁ ସେ ଗ୍ରହଣ କରିଛନ୍ତି । ଯେତେବଡ଼ ଆକର୍ଷଣୀୟ ସ୍ଲୋଗାନ ହେଉ ପଛେ ସେ ପ୍ରଥମେ ତା'ର ମନ୍ଦ ସବୁକୁ ହିଁ ଦେଖିଛନ୍ତି । ବଡ଼ ବଡ଼ ଚିନ୍ତା ଓ ଦର୍ଶନ ସବୁକୁ ସେ ସେପାଇଁ ପ୍ରତ୍ୟାଖ୍ୟାନ କରିଛନ୍ତି । ବିଶ୍ୱର ଭାବ ପରିଧିରୁ ସେ ନିଜର ରୁଚି ନେଇ ବାଛିଛନ୍ତି ।

ସମାଜତାତ୍ତ୍ୱିକ ବିଚାର ଦଣ୍ଡ ବୋଧେ ତାଙ୍କ ଚେତନାର ଖୁଣ୍ଟ ହୋଇଛି । ସେହି ଖୁଣ୍ଟଟିକୁ ଧରି ସେ ଆଉ ସବୁ ବିଷୟକୁ ତଉଲିଛନ୍ତି । ଯେତେ ଆପାତତଃ ଦିବ୍ୟ ଲାଗୁ ପଛେ କୌଣସି ଶୂନ୍ୟଗର୍ଭ ଏକାନ୍ତ ଭାବମୟ ବିଷୟ ପ୍ରତି ସେ ଉଷ୍ମତା ପ୍ରକାଶ କରି ନାହାନ୍ତି ।

ଆଳଙ୍କାରିକତା ତଥା ରଚନାଗତ ଅନ୍ୟାନ୍ୟ ଆଟୋପସବୁକୁ ଯଥା ସଂଭବ ହୁଏତ ପରିହାର କରିଛନ୍ତି । ଯୁକ୍ତି ସମ୍ମତ ଭାବେ ସବୁ କଥାକୁ କହିବାପାଇଁ ସେ ଚେଷ୍ଟା କରିଛନ୍ତି । ତାଙ୍କ ବହିର ନାମ କରଣ ସବୁ ତାଙ୍କ ଯୁକ୍ତି ଓ ବିଶ୍ୱାସର ନିଦର୍ଶନ । ସେ ଥିଲେ ନିଜ ଦେଶରେ ବିଦେଶୀ । କୌଣସି ଭାବପ୍ରବଣତାର ବଶବର୍ତ୍ତୀ ହୋଇ ସେ ସ୍ୱଦେଶୀ ପ୍ରସଙ୍ଗ ଅବତାରଣା କରି ନାହାନ୍ତି ।

ସେଦିନ ମୁଁ ତାଙ୍କ ବିଷୟରେ ସବୁ କଥା ଭାବି ଭାବି ତାଙ୍କୁ ଦେଖା କରିବାକୁ ଯାଇଥିଲି । ମଧ୍ୟାହ୍ନ ଗଡ଼ି ଯାଇଥିଲା ।

କାଇଁଶିରି ଗାଁ ମୁଣ୍ଡରେ ପହଞ୍ଚିଲି । କେଉଁଠି କିଛି ଆସର ହେଉଛି କି ବୋଲି

ପଚାରିଲି । ଗାଁ ଲୋକମାନେ କେହି କିଛି କହି ପାରିଲେନି ।

ଶେଷକୁ ପଚାରି ପଚାରି ଯାହାଙ୍କ ଘରେ ପହଞ୍ଚିଲି ସେ ଆଗରୁ ମୋର ଅତି ପରିଚିତ ଥିଲେ । ଆମ ବିଶ୍ୱବିଦ୍ୟାଳୟର ବରିଷ୍ଠ ଅମଲା ଶ୍ରୀ ଗୁଣନିଧି ବଡ଼ାର । ତାଙ୍କର ଘରେ ସେ ଅବସ୍ଥାନ କରୁଥିଲେ । ଖଦଡ଼ ଧୋତି ଖଣ୍ଡେ ପିନ୍ଧି ସେ ଗୋଟେ ଖଟିଆରେ ଶୋଇଥିଲେ । ତାଙ୍କ ଆଖିରେ ପତଳା ନିଦ ଥିଲା ।

ତାଙ୍କୁ ଖବର ଦିଆଗଲା ଯେ ମୁଁ ତାଙ୍କୁ ସାକ୍ଷାତ୍ କରିବାକୁ ଚାହେଁ ।

ବିଶ୍ୱବିଦ୍ୟାଳୟରୁ ଜଣେ ଅଧ୍ୟାପକ ଆସିଛନ୍ତି ଶୁଣି ସେ ତାଙ୍କୁ ସାକ୍ଷାତ୍ କରିବା ପାଇଁ ମୋତେ ଅନୁମତି ଦେଲେ ।

ମୁଁ ଭିତରକୁ ଗଲି । ନମସ୍କାର ଜଣାଇଲି ।

ଆପଣଙ୍କୁ ଖାଲି ସାକ୍ଷାତ୍ କରିବାକୁ ଆସିଛି ବୋଲି କହିଲି । ସେ ସବୁ କଥା ଶୁଣିଲେ । ମୋତେ ପ୍ରଶଂସା ନ କରି ରହି ପାରିଲେ ନାହିଁ ।

ସେ ମୋର ଅତି ପ୍ରିୟ ଲେଖକ ବୋଲି ମୁଁ ତାଙ୍କୁ ଜଣାଇ ଦେଲି ।

ଏଣୁ ତେଣୁ ବହୁତ କଥା ଆଲୋଚନା କଲୁ । ତା'ପରେ ମୋ ପାଇଁ ଖାଇବାର ବନ୍ଦୋବସ୍ତ କରିବାପାଇଁ କହିଲେ ।

ତାଙ୍କ କଥାବାର୍ତ୍ତା ଅତ୍ୟନ୍ତ ପ୍ରୀତିପୂର୍ଣ୍ଣ ଓ ନରମ ଥିଲା । ସେଦିନର ତାଙ୍କର ଶ୍ରଦ୍ଧାଶୀଳତାକୁ ମୁଁ କେବେ ଭୁଲି ପାରିବିନି ।

ସେ ବୋଧେ ଉଣେଇଶ ଛଅସ୍ତରି ମସିହାର କଥା । ମୁଁ ସେହିବର୍ଷ ଗଙ୍ଗାଧର ମେହେର ମହାବିଦ୍ୟାଳୟ ଛାଡ଼ି ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଭାବେ ଯୋଗ ଦାନ କରିଥିଲି ।

ଏତେ ବର୍ଷ ଏହା ଭିତରେ ଚାଲି ଗଲାଣି ଅଥଚ ମୁଁ ସେ ପ୍ରୀତିପୂର୍ଣ୍ଣ ସାକ୍ଷାତ୍କାର ଘଟଣାଟିକୁ ଗୋଟି ଗୋଟି କରି ମନେ ରଖିଛି । ମୋ ପ୍ରାଣରେ ବେଶ୍ ପୁଲକ ସଞ୍ଚାର କରିଥିଲା ସେଦିନର ସେ ସୌଜନ୍ୟପୂର୍ଣ୍ଣ ସାକ୍ଷାତ୍କାର ।

ସେ ସାକ୍ଷାତ୍କାର ଆଦୌ ବ୍ୟବହାରିକ ନଥିଲା । ସେ ସାକ୍ଷାତ୍କାର ଥିଲା କେବଳ ମୋ ପ୍ରିୟ ଲେଖକଙ୍କୁ ଭେଟିବା ।

ବହୁଦିନ ତଳେ ତାଙ୍କ ଲେଖାର ଶୈଳୀ ସଂପର୍କରେ ମୁଁ ବି ତିନିଟି ଆଲୋଚନାମୂଳକ ଲେଖା ଲେଖିଥିଲି ।

ସେହି ଘଟଣାର ବହୁଦିନ ପରେ ମୁଁ ତାଙ୍କୁ ବହୁବାର ସଭା ସମିତିରେ ଶୁଣିଛି ଓ ଭେଟିଛି । ଥରେ ମନେ ଅଛି ଓଡ଼ିଆ ଗବେଷଣା ପରିଷଦ ତରଫରୁ କଟକରେ ଗବେଷଣା ପ୍ରବିଧି ଉପରେ ଏକ ସଂପାନ ଦେଇଥିଲେ ।

ଓଡ଼ିଶାର ବହୁ ପ୍ରତିଷ୍ଠିତ ବ୍ୟକ୍ତି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ବହୁ ପଦ୍ଧତି ସଂପର୍କରେ ବିଶଦଭାବେ ଚର୍ଚ୍ଚା ହୋଇଥିଲା । ଅପରାହ୍ଣରେ ଉଦ୍‌ଯାପନୀ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ମୁଖ୍ୟବକ୍ତା ଭାବେ ଯୋଗ ଦେଇ ସେ କହିଥିଲେ ଆକାଶଟା ଯଦି ଖାଲି ଆଖିକୁ ସ୍ୱଚ୍ଛ ଦିଶୁଛି ଆଉ ଗୋଟେ ନଳୀର ପ୍ରୟୋଜନ କ'ଣ ? ତାଙ୍କର ସେଦିନ ଏହି ଗୋଟିଏ ବାକ୍ୟରେ ପଦ୍ଧତି ତତ୍ତ୍ୱ ସଂପର୍କରେ ସାରା ଦିନର ଚର୍ଚ୍ଚା ପବନରେ ଉଡି ଯାଇଥିଲା ଯେମିତି । ସଭାସ୍ଥଳରେ ସମସ୍ତେ ତାଙ୍କ ମନ୍ତବ୍ୟରେ ହସି ପକାଇଥିଲେ ।

ସବୁ କଥାକୁ କାଟିଦେବା ତାଙ୍କର ଗୋଟେ ଅଭ୍ୟାସର ବିଷୟ । ଗୋଟେ ବଡ଼ ବ୍ୟବସ୍ଥାକୁ, ଗୋଟେ ପ୍ରଚଳିତ ପ୍ରଥାକୁ ପ୍ରତିଯୁକ୍ତି ଦେଇ ବିଚାର କରିବା ହେଉଛି ତାଙ୍କ ଶୈଳୀର ଏକ ବଡ଼ ଅଂଶ ।

ଆମ ପ୍ରଦେଶର ଏମିତି କେତେକ ବିଶିଷ୍ଟ ବ୍ୟକ୍ତି ଅଛନ୍ତି ଯେଉଁମାନେ ନିରର୍ଥକ ଭାବପ୍ରବଣତାରେ ଖାଲି ଭାସିଯାଆନ୍ତି । ଗୁଡ଼ାଏ ଜନଶ୍ରୁତି ଓ କିମ୍ବଦନ୍ତୀକୁ ଘୋଷିଥାନ୍ତି । ସବୁବେଳେ ସବୁ କଥାରେ ଗୁଡ଼ାଏ ଗର୍ଜନ କରି ସେ ସବୁକୁ ବଖାଣୁ ଥାଆନ୍ତି ।

ସେ କିନ୍ତୁ ଆଦୌ ସେମିତି ନୁହଁନ୍ତି । ଏମିତି ଧର୍ମ ନାମରେ, ଜାତି ନାମରେ ତୁଚ୍ଛା ଭାବପ୍ରବଣତା ପ୍ରଦର୍ଶନ କରିବା ସପକ୍ଷରେ ସେ ଆଦୌ ନୁହଁନ୍ତି । ଗୋଟିଏ ବାସ୍ତବ ତଥା ବୃହତ୍ତର ସାମାଜିକ ବିବର୍ତ୍ତନ ପ୍ରକ୍ରିୟାସିଦ୍ଧ ବିଚାରକୁ ଆଧାର କରି ସେ ଯେ କୌଣସି ପ୍ରସଙ୍ଗକୁ ବିଚାର କରନ୍ତି ।

ତାଙ୍କ ଶୈଳୀ, ତାଙ୍କ ଶବ୍ଦ ସଜ୍ଜା, ତାଙ୍କ ବାକ୍ୟଗଠନରୀତି, ତାଙ୍କର ଅନ୍ତର୍ମୁଖୀ ଦୃଷ୍ଟିଭଙ୍ଗୀ ସବୁବେଳେ ଅଲଗା ପ୍ରକାରର । ତାଙ୍କର ଯେ କୌଣସି ରଚନାକୁ ଦି'ଧାଡି ପଢ଼ିଲେ ତାହା ସହଜରେ ଜାଣିହେବ ।

ସେ ଗୋଟିଏ ଶୈଳୀ ପାଇଛନ୍ତି । ସେମିତି ଶୈଳୀରେ ଲେଖିବା ଓସ୍ତାଦି ତାଙ୍କର ରହିଛି ।

ମୋ ପ୍ରଦେଶର ପାଠକମାନେ ଅବଶ୍ୟ ଜାଣିପାରିଥିବେ ମୋର ସେ ଅତି ପ୍ରିୟ ଲେଖକ ଜଣକ କିଏ ବୋଲି । ତାଙ୍କ ନାମ ମୁଁ ଏଯାବତ୍ ଉଲ୍ଲେଖ କରିନାହିଁ । ସେଇ ମୋର ଅତିପ୍ରିୟ ଲେଖକ ହେଲେ ଓଡ଼ିଶାର ସୁନାମଧନ୍ୟ ଲେଖକ ଓ ଦାର୍ଶନିକ ଶ୍ରୀ ଚିତ୍ତରଂଜନ ଦାସ; ଯାହାଙ୍କ ଲେଖାସବୁକୁ ବର୍ଷ ବର୍ଷ ଧରି ମୁଁ ଅତ୍ୟନ୍ତ ଆଗ୍ରହର ସହିତ ପଢ଼ି ଆସିଛି ।

ସେ ତ ଚିତ୍ତରଂଜକ ଚିତ୍ତରଂଜନ । ସଂସାର କରିଛନ୍ତି ଓ ରାଜଧାନୀ

ଭୁବନେଶ୍ୱରରେ ଘର ଖଣ୍ଡେ ତାଙ୍କର ଅଛି ସତ, ହେଲେ ସେ ଏକ ପରିବ୍ରାଜକ; ସବୁ କଥାକୁ ଆହୁରି ପରିବ୍ୟାପ୍ତ ଭାବେ ଜାଣିବା ପାଇଁ ସେ ଅବିଶ୍ରାନ୍ତ ଭାବେ ଭ୍ରମଣ କରିଛନ୍ତି ।

ଜୀବନ ତମାମ ସେ ଲେଖି ଚାଲିଛନ୍ତି ଆଉ ଯାଯାବର ପରି ଖାଲି ବୁଲିଛନ୍ତି । କୌଣସି ବ୍ୟବସ୍ଥା କିମ୍ବା ସ୍ଲୋଗାନ ନିକଟରେ ସେ ଅଟକି ଯାଇ ନାହାନ୍ତି । କେଉଁ ସଂଘର ପତାକା ଟେକି ଧରି ନାହାନ୍ତି । କାହାର ଜିନ୍ଦାବାଦ କରି ନାହାନ୍ତି ।

ମିଥ୍ୟା ଭାକ୍ତିକତା ତାଙ୍କୁ ଟିକିଏ ବି ସ୍ପର୍ଶ କରିନି । ଶ୍ରୀଅରବିନ୍ଦଙ୍କ ଦର୍ଶନ ତାଙ୍କ ପାଇଁ ଏକା ସୌନ୍ଦର୍ଯ୍ୟ ଜିଜ୍ଞାସା ।

ତାଙ୍କୁ କେତେଜଣ ଇଣ୍ଟେଲେକ୍ଚୁଆଲ ବୋହେମେନିଆନ ବୋଲି କହନ୍ତି ।

ପ୍ରତ୍ୟେକ ଦୃଷ୍ଟିରୁ ସେ ଜଗତର ଅନେକ କଥାକୁ ବ୍ୟାଖ୍ୟା କରିଛନ୍ତି; କିନ୍ତୁ କାହାକୁ ଆବୋରି ବସି ନାହାନ୍ତି ।

ଓଡ଼ିଶାର ସମସ୍ତେ ଏପରି ଜଣେ ପରିବ୍ରାଜକଙ୍କୁ ଚିତ୍ତଭାଇ ବୋଲି ଡାକନ୍ତି, ଯାହାକୁ ବେଶୀ ପ୍ରେମ କି ବେଶୀ ଘୃଣା ଆଦୌ ଘାରି ଦେଇନି ।

ସେ ଅତି ବସ୍ତୁନିଷ୍ଠ ଭାବରେ ଯେପରି ଜଗତର ବିପୁଳ ବିବର୍ତ୍ତନକୁ ବର୍ଣ୍ଣନା କରିଛନ୍ତି ଅବଶ୍ୟ ବିଶ୍ୱଦୃଷ୍ଟି ନେଇ ।

ଆଞ୍ଚଳିକ ଦୃଷ୍ଟି ଭଙ୍ଗୀ ତାଙ୍କୁ କେବେବେଳେ ବି ସଂକୀର୍ଣ୍ଣ କରି ଦେଇନି । ଆମ ପ୍ରଦେଶର ଲେଖକ ହିସାବରେ ସେ ହିଁ ତାଙ୍କର ତୁଳନା ।

ଡକ୍ଟର ଆଦିକନ୍ଦ ସାହୁ
*ପ୍ରଫେସର ଓ ବିଭାଗୀୟ ମୁଖ୍ୟ*
*ସମ୍ବଲପୁର ବିଶ୍ୱବିଦ୍ୟାଳୟ, ଜ୍ୟୋତିବିହାର*

# କିଛି ସ୍ମୃତି - କିଛି ଅନୁଭୂତି

ସତରେ ଚିରନମସ୍ୟ ଚିତ୍ତଭାଇ, ଅତି ଆପଣାର ଚିତ୍ତଭାଇ କେଉଁ କିମିଆଁ ଜାଣିଛନ୍ତି କେଜାଣି ସଭିଏଁ ତାଙ୍କ ପାଖରେ ବାନ୍ଧି ହୋଇଯାଆନ୍ତି । ହୁଏତ ଭଗବାନ ତାଙ୍କ କଥା-ବାର୍ତ୍ତା, ବସା-ଉଠା, ଚାଲିଚଳଣ, ଜୀବନ ବିତେଇବା ପ୍ରଣାଳୀ ଭିତର ଦେଇ ଏକ ପ୍ରକାର ମୋହିନୀ ଶକ୍ତି ଭରି ଦେଇଛନ୍ତି । ନଚେତ୍ ସାରା ଓଡ଼ିଶା କାହିଁକି, ଓଡ଼ିଶା ବାହାରେ ମଧ୍ୟ ଆମ ଚିତ୍ତଭାଇ ସବୁରି ପ୍ରିୟ ଓ ଏପରି ଅଭୁଲା ବ୍ୟକ୍ତିତ୍ୱ ହୋଇ ନଥାନ୍ତେ । ବାହାରକୁ ଜଣେ ସାଧାରଣ ମଣିଷ ସିନା, କିନ୍ତୁ ତାଙ୍କ ଭିତରର

ଏକ ବିରାଟ ବ୍ୟକ୍ତିତ୍ୱଠାରେ ସମସ୍ତେ ମୁଣ୍ଡ ନୁଆଁନ୍ତି । ବାନ୍ଧି ହୋଇଯାଆନ୍ତି । ଏକାନ୍ତ ନିଜର ହୋଇ ଯାଆନ୍ତି । ଚିତ୍ତଭାଇଙ୍କ କଥାରେ, ଆମେ ସମସ୍ତେ ଗୋଟିଏ ସୂତାରେ ବନ୍ଧା ହୋଇଛୁ ବୋଲି ପରସ୍ପର ଏତେ ଶୀଘ୍ର ପାଖାପାଖି ହୋଇଯାଇଛୁ ।

୧୯୭୬ରେ ମୋର ପ୍ରିୟ ଛାତ୍ର ଖରିଦଚକ ସାଧନାପୀଠର ଶ୍ରଦ୍ଧେୟ ଶ୍ରୀମାନ୍ ଧ୍ରୁବର ଉତ୍ସାହ କ୍ରମେ ଦହମୁଣ୍ଡା ହାଇସ୍କୁଲରେ ପାଠଚକ୍ର ଆରମ୍ଭ ହେଲା । ମୁଁ ପ୍ରଧାନ ଶିକ୍ଷକ ଥିଲି । ଶ୍ରୀମା - ଶ୍ରୀଅରବିନ୍ଦଙ୍କ ଶିକ୍ଷାନୀତିରେ ଅନୁପ୍ରାଣିତ ହୋଇ ଏହାକୁ କାର୍ଯ୍ୟକାରୀ କରିବା ପାଇଁ ମନସ୍ଥ କଲି । ୧୯୭୮ରେ ଖରିଦଚକରେ ଶ୍ରୀଅରବିନ୍ଦଙ୍କ ଦେହାଂଶ ଏପ୍ରିଲ ୧୨ରେ ପ୍ରତିଷ୍ଠା ହେଲା । ସେହିବର୍ଷ ଆମ ସମସ୍ତଙ୍କ ଉଦ୍ୟମରେ ଅଗଷ୍ଟମାସରେ ସେଠାରେ ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ସ୍ଥାପିତ ହେଲା । ଏ ଭିତରେ ପୂଜ୍ୟ ପ୍ରପତ୍ତିଜୀ, ବାବାଜୀ ମହାରାଜ, ଚିତ୍ତଭାଇ ଓ ଅନ୍ୟମାନଙ୍କ ଘନିଷ୍ଠ ସଂପର୍କରେ ଆସିବାର ସୁଯୋଗ ପାଇଥିଲି । କେଜାଣି କାହିଁକି ଏ ତିନିଜଣଙ୍କ ମୋ ପ୍ରତି ଅହେତୁକ ସ୍ନେହ, ଅନୁକମ୍ପା, ସଦିଚ୍ଛା ଓ 'ମୋ ଦ୍ୱାରା କିଛି ହୋଇପାରିବାର ସମ୍ଭାବନା'' ଉପରେ ସେମାନଙ୍କର ଦୃଢ଼ ପ୍ରତ୍ୟୟ ହେତୁ ମୁଁ ସେମାନଙ୍କର ଅଧିକ ନିକଟତର ହେବାକୁ ଲାଗିଲି । ଚିତ୍ତଭାଇଙ୍କ ନିର୍ଦ୍ଦେଶ ଓ ପରାମର୍ଶ କ୍ରମେ ସକାଳଓଳି ଖରିଦଚକ ଶିକ୍ଷାକେନ୍ଦ୍ରର କୁନି କୁନି ପିଲାମାନଙ୍କୁ ଅବୈତନିକ ଶିକ୍ଷାଦାନ କଲି । ପୁଣି ଗୋପୀନାଥପୁର (ଭୋଗରାଇ) ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ସପ୍ତମଶ୍ରେଣୀ ପିଲାମାନଙ୍କୁ ବିଜ୍ଞାନ, ଗଣିତରେ କୋଚିଂ ଦେବା ସକାଶେ ଚିତ୍ତଭାଇଙ୍କ ଅନୁରୋଧ କ୍ରମେ ପ୍ରତି ଗୁରୁବାର ରାତିରେ ସେଠାରେ ରହି ପଢ଼ାଉଥିଲି । କ୍ରମେ ଅଧିକରୁ ଅଧିକ ଚିତ୍ତଭାଇଙ୍କ ବ୍ୟକ୍ତିତ୍ୱ ଓ ଗୁଣବତ୍ତା ପ୍ରତି ଆକୃଷ୍ଟ ହୋଇ ଶେଷରେ ତାଙ୍କ ସ୍ନେହ ଓ ପ୍ରେମରେ ପୂରା ପଡ଼ିଗଲି ।

୧୯୮୧ରେ ପ୍ରପତ୍ତିଜୀ ଓ ବାବାଜୀ ମହାରାଜଙ୍କ ଇଚ୍ଛାକ୍ରମେ ଦହମୁଣ୍ଡାରେ ଅନ୍ୟ ଏକ ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷା ଓ ଗବେଷଣା କେନ୍ଦ୍ର ସ୍ଥାପିତ ହେଲା । ମୁଁ ନିଜେ ଏହାର ତତ୍ତ୍ୱାବଧାରକ ରହିଲି । ଏହି ସମୟରୁ ପୂର୍ଣ୍ଣାଙ୍ଗ ଶିକ୍ଷା ସହିତ ଅଧିକରୁ ଅଧିକ ଜଡ଼ିତ ହୋଇଗଲି । ଏ କ୍ଷେତ୍ରରେ ମୋତେ ସବୁଠାରୁ ବେଶୀ ପ୍ରେରଣା, ଉତ୍ସାହ ଓ ସାହସ ଦେଲେ ଚିତ୍ତଭାଇ । ସେହିଦିନରୁ ମୋର ବ୍ୟକ୍ତିଗତ, ପାରିବାରିକ, ଆନୁଷ୍ଠାନିକ, ସାମାଜିକ ଜୀବନ ସହିତ ସେ ନିବିଡ଼ ଭାବରେ ଜଡ଼ିତ ହୋଇ ରହିଆସିଛନ୍ତି । ଯେତେବେଳେ ଏକ ଜଟିଳ ସମସ୍ୟାରେ ପଡ଼ିଥାଏ, କୌଣସି କୂଳ-କିନାରା ନ ପାଏ, ନିଜକୁ ବେସାହାରା ମନେହୁଏ ସେତେବେଳେ ସବୁକଥା ଚିତ୍ତଭାଇଙ୍କୁ ଜଣାଇ ଆସିଛି । ତାଙ୍କ ଚିଠି ପାଇଲେ ଆଶ୍ୱସ୍ତ ହୁଏ, ମନରେ ପ୍ରତ୍ୟୟ ଆସେ, ବିଶ୍ୱାସ

ବଢ଼େ, ମନରୁ ସଂକୀର୍ଣ୍ଣତା ଦୂରେଇ ଯାଏ, ହତାଶା ଯାଇ ଆଶାର ଝଲକ ଉଙ୍କିମାରେ ଓ ଜଣେ ପୁଣି ଆଗକୁ ଯିବାର ସାହସ ବାନ୍ଧେ । ଏଇଠି ତାଙ୍କ ଚିଠିର କିଛି ଅଂଶ ଉଦ୍ଧାର କରୁଛି । ୧୯୮୧ ମସିହା ଡିସେମ୍ବର ୧୨ ତାରିଖରେ ତାହା ଲିଖିତ ।

"ଏ ବର୍ଷ କେବଳ ପ୍ରତି ସ୍କୁଲର ସମ୍ପାଦକ ଓ ଅଧକ୍ଷମାନଙ୍କର ବୈଠକ ଡିସେମ୍ବର ୨୫ ଓ ୨୬ରେ ହେବ । ଆପଣ ଚିଠି ପାଇ ସାରିବେଣି । ତେଣୁ ନିଶ୍ଚୟ ଆସିବେ ଏବଂ ଆଲୋଚନାରେ ସକ୍ରିୟ ଅଂଶଗ୍ରହଣ କରିବେ । ଆମେ ପରସ୍ପରର ଦୁଃଖସୁଖକୁ ପରସ୍ପର ଆଗରେ ବ୍ୟକ୍ତ ନ କଲେ ପରସ୍ପରର ନିକଟବର୍ତ୍ତୀ ହୋଇପାରିବା କିପରି ଓ ଆମ ସମସ୍ତଙ୍କ ଲାଗି ଏକ ସୁସ୍ଥ ସମାଧାନ ମଧ୍ୟ ବାହାରି ପାରିବ କିପରି ? ତେଣୁ ନ ଆସିବାର ଚିନ୍ତା କରିବେ ନାହିଁ ।

**** **** ****

ସ୍କୁଲ ପୁଣି ଚାଲିଲା, ପ୍ରାକୃତିକ ବିପର୍ଯ୍ୟୟ ସତ୍ତ୍ୱେ ଆପଣମାନଙ୍କର ଦମ୍ଭ ଓ ବିଶ୍ୱାସ ଭାଙ୍ଗିଲା ନାହିଁ । ଅର୍ଥାତ୍ ଆପଣମାନେ ଆଉ ଗୋଟିଏ ପାହାଚ ଉପରକୁ ଉଠିଗଲେ । ଏହିପରି ଭାବରେ ବାତାବରଣ ହାରୁଥିବ ଓ ଆମେ ବିଜୟଲାଭ କରୁଥିବା ଅର୍ଥାତ୍ ନିଜର ବାତାବରଣକୁ ଆମେ ସ୍ୱୟଂ ତିଆରି କରି ନେଉଥିବା ।"

ମୁଁ ନବଜୀବନ ଶିକ୍ଷା ସଂସଦର ଦୀର୍ଘ ଦିନଧରି ସକ୍ରିୟ ସଭ୍ୟ ରହିବା ସମୟରେ ଚିତ୍ତଭାଇ ମଧ୍ୟ ସଂସଦର ସଭ୍ୟ ରହିଥିଲେ । ଏହି ସମୟ ମଧ୍ୟରେ ପ୍ରପତ୍ତିଜୀ ଓ ଚିତ୍ତଭାଇଙ୍କ ପାଇଁ ସିଲାବସ୍ କମିଟି, ପାଠ୍ୟପୁସ୍ତକ କମିଟି, ବିଜ୍ଞାନ ପୁସ୍ତକ କମିଟିରେ ରହି କାର୍ଯ୍ୟ କରିଥିଲି । ଦୀର୍ଘ ଏକମାସରୁ ବେଶୀ ଦିନ ମାତୃଭବନ, କଟକରେ ରହି ଚିତ୍ତଭାଇଙ୍କ ତତ୍ତ୍ୱାବଧାନରେ ସେ ନିଜେ ଓ ଆମେ କେତେଜଣ ସିଲାବସ୍ ତିଆରି କରିଥିଲୁ । ମୋ ଦାୟିତ୍ୱରେ ଗଣିତ ଓ ବିଜ୍ଞାନ ଥିଲା । ଏହି ସମୟରେ ଚିତ୍ତଭାଇଙ୍କ ସହିତ ଅଧିକ ମିଶିବାର, ଜାଣିବାର, ଶିଖିବାର, ନିଜକୁ ତିଆରି କରିବାର ସୁଯୋଗ ମିଳିଥିଲା । ସେ ଆବଶ୍ୟକ ସ୍ଥଳେ ପରାମର୍ଶ ଓ ଉତ୍ସାହ ଦେଉଥିଲେ । ସେ ହିଁ ମୋ ଭିତରେ କିଛି ଲେଖିବାର ମଂଜି ବୁଣିଥିଲେ ଓ ତାଙ୍କର ଉପଯୁକ୍ତ ତତ୍ତ୍ୱାବଧାନ, ଆନ୍ତରିକତା, ଉତ୍ସାହ ହେତୁ ସେ ମଂଜି ଚାରାଗଛରୁ ବଡ଼ ହୋଇ ଫଳ ଫଳୁଛି । ସେତେବେଳେ ନବଜ୍ୟୋତିରୁ ପୂର୍ଣ୍ଣାଙ୍ଗ ଶିକ୍ଷା ପତ୍ର ବାହାରୁଥାଏ । ଯେଉଁଥର ମୋର ଲେଖା ପ୍ରଥମେ ଏଥିରେ ପ୍ରକାଶ ପାଇଲା ସବୁଠାରୁ ଖୁସି ହୋଇଥିଲେ ଚିତ୍ତଭାଇ । ସେ ସବୁବେଳେ କହୁଥିଲେ ଭୁଲ ହେଉ, ଠିକ୍ ହେଉ ଲେଖନ୍ତୁ । ଦେଖିବେ, ଲେଖୁ ଲେଖୁ ସବୁ ଠିକ୍ ହୋଇଯିବ । ଆରୁହାବୃତ୍ତି ଶ୍ରମ ଶିବିରରେ ଚିତ୍ତଭାଇ ଖୁସି ହୋଇ କହିଥିଲେ- "ଦେଖିଲ ତ- ଲେଖା ବାହାରିଲା ।

ଆପଣ ନ ଡରି ଲେଖନ୍ତୁ ।'' ସେହି ଦିନଠୁ ମୋ ଲେଖା ଆଉ ବନ୍ଦ ହୋଇ ନାହିଁ । ପୂର୍ଣ୍ଣାଙ୍ଗ ଶିକ୍ଷାପତ୍ରରେ ପୂର୍ଣ୍ଣାଙ୍ଗ ଶିକ୍ଷା ସମ୍ବନ୍ଧୀୟ ଅଭିଜ୍ଞତାକୁ ଅନେକ ପ୍ରବନ୍ଧ ପ୍ରକାଶ ପାଇଥିଲା । ଏବେ ବି ମୋର ଲେଖାଲେଖି ଓ ଅନୁବାଦ ଅବ୍ୟାହତ ରହିଛି ।

ଟ୍ରଷ୍ଟରେ ସଭ୍ୟ ଥିବାବେଳେ ମୁଁ ଓ ମୋର ଅନ୍ୟ ଯୁବବନ୍ଧୁମାନେ ପ୍ରାୟ ଆଲୋଚନାରେ ଖୁବ୍ ବେଶୀ ଭାଗ ନେଉ ନଥିଲୁ । କାରଣ ଚିତ୍ତଭାଇ, ପ୍ରପତ୍ତି, ପ୍ରୀତି ଅପା, ପୂର୍ଣ୍ଣଭାଇନା, ପଞ୍ଚାନନଭାଇ ଇତ୍ୟାଦି ଅଭିଜ୍ଞ, ବିଜ୍ଞ ବ୍ୟକ୍ତିଙ୍କ ଆଗରେ କିଛି କହିବା ବା ଯୁକ୍ତି କରିବାର, ମତାମତ ଦେବାର ସେ ବେଳର ଆମ ଯୁବସୁଲଭ ସ୍ୱଭାବ ବାଧା ଦେଉଥିଲା । କିନ୍ତୁ ଚିତ୍ତଭାଇ ବାରମ୍ବାର ଆମ୍ଭମାନଙ୍କୁ ବିଶେଷତଃ ମୋତେ ଉତ୍ସାହିତ କରି, ସାହସ ଦେଇ ସେହି ସଙ୍କୋଚ ଭାବ, ଜଡ଼ତାକୁ ଦୂର କରାଇଥିଲେ । ମୁଁ ବୈଠକରେ ସକ୍ରିୟ ଭାଗ ନେବାରେ, ସ୍ପଷ୍ଟ ମତାମତ ଦେବାରେ ସକ୍ଷମ ହେଲି । ଅନେକ କଥା ଆମେ ଚିତ୍ତଭାଇଙ୍କ ସହିତ ପୂର୍ବରୁ ଆଲୋଚନା କରୁଥିଲୁ । ସାଧାରଣତଃ ଚିତ୍ତଭାଇ ବୈଠକରେ ଅଧିକ କଥା କହୁ ନଥିଲେ । ବିଶେଷ କରି ପୁରୁଣା ଚିନ୍ତାରୁ ଅଲଗା ରହି ତାଙ୍କର ସ୍ପଷ୍ଟ, ରୋକଠୋକ୍ ନିରପେକ୍ଷ ମତ ଓ ପରାମର୍ଶ ଦେଉଥିଲେ । ଏହି କାରଣରୁ ତାଙ୍କୁ ଭୁଲ୍ ବୁଝି ଅନେକ ଥର ବୈଠକରେ ମତାନ୍ତର ସୃଷ୍ଟି ହୋଇଛି । ଆମେ କିନ୍ତୁ ଚିତ୍ତଭାଇଙ୍କୁ ପୂର୍ଣ୍ଣ ସମର୍ଥନ ଜଣାଇ ଯୁକ୍ତି ବାଢୁଥିଲୁ ।

ସତ କହିବାକୁ ଗଲେ ସେ ହିଁ ମୋ ଜୀବନର ଗତିପଥ ବଦଳାଇଲେ । ତାଙ୍କ ବ୍ୟକ୍ତିତ୍ୱରେ ମୁଁ ଏତେ ପ୍ରଭାବିତ ହୋଇଥିଲି ଯେ ନିଜକୁ ଅନ୍ୟ ଏକ ଦୁନିଆର ମଣିଷ ଭାବେ ଗଢ଼ିବା ପାଇଁ ଅଦ୍ୟାବଧି ନିରନ୍ତର ଚେଷ୍ଟା ଅବ୍ୟାହତ ରଖିଛି । କୌଣସି କଥାରେ ଭାଙ୍ଗି ନ ପଡ଼ିବା, ହତାଶ ନ ହେବା, ଝୁଣ୍ଟି ପଡ଼ିଲେ ବି ପୁଣି ଆଗକୁ ମାଡ଼ି ଚାଲିବାର ଦମ୍ଭ ତାଙ୍କଠାରୁ ହିଁ ଶିଖିଲି । ପଟେଲ୍ ହଲ୍‌ରେ ହେଉଥିବା ବିଭିନ୍ନ ଶିକ୍ଷକ ସମ୍ମିଳନୀରେ ଚିତ୍ତଭାଇଙ୍କ ପ୍ରେରଣାରେ ହିଁ ଗଣିତ ଓ ବିଜ୍ଞାନ ଶିକ୍ଷା ଦେବାର ସୁଯୋଗ ପାଇଥିଲି ।

ବାବାଜୀ ମହାରାଜଙ୍କ ବାରମ୍ବାର ଉତ୍ସାହପୂର୍ଣ୍ଣ ଚିଠି, ପ୍ରପତ୍ତିଜୀଙ୍କ ଆନ୍ତରିକତା ଓ ଚିତ୍ତଭାଇଙ୍କ ପ୍ରେରଣା ହେତୁ କେ:ଜି:ରୁ ୨ୟ ଶ୍ରେଣୀ ପର୍ଯ୍ୟନ୍ତ ବହି ଲେଖିଲି । ଏଗୁଡ଼ିକ ମଧ୍ୟରୁ କେତେକ ଚିତ୍ତଭାଇ ବାରମ୍ବାର ଦେଖି ପରାମର୍ଶ ଦେଇଛନ୍ତି । କିଛି ବହି ଟ୍ରଷ୍ଟରେ ଦୀର୍ଘ ବର୍ଷ ଧରି ପଡ଼ିରହିଲା । ବହିଗୁଡ଼ିକ ଦୀର୍ଘ ୧୦ ବର୍ଷ ଧରି ଲେଖା ହୋଇ ରହିଥିଲେ ମଧ୍ୟ (ସମସ୍ତଙ୍କ ଜ୍ଞାତସାରରେ) କେଉଁ ଏକ ବିରାଟ ଜଟିଳ ଗଣ୍ଠି ଏମିତି ପଡ଼ିଗଲା ଯେ ଅନେକ ଚାହୁଁଥିଲେ ମଧ୍ୟ ବହିଗୁଡ଼ିକ ପ୍ରକାଶିତ ହୋଇପାରିଲା

ନାହିଁ । ପରେ ନିଜ ଉଦ୍ୟମରେ ୧୯୯୯ରୁ ବହିଗୁଡ଼ିକ ପ୍ରକାଶିତ ହୋଇଆସିଛି । ତେବେ ଏହା ପଶ୍ଚାତରେ ଚିତ୍ତଭାଇଙ୍କ ଅବଦାନ ସବୁଠାରୁ ବେଶୀ ।

ଦହମୁଣ୍ଡାରେ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ହେବାପରେ ଥରେ ମୋତେ ଶିବିରରେ କହିଲେ- ''ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ଖୋଲିଲେ, ଏଥର ଶନିସପ୍ତା ଲାଗିଲା ।'' ସତରେ ତାଙ୍କ କଥା ଶତ ପ୍ରତିଶତ ସତ ବୋଲି ଆଜି ଅଂଗେ ଅଂଗେ ଲିଭାଉଛି । ତଥାପି ତାରି ମଧ୍ୟରେ ଏକପ୍ରକାର ଶାନ୍ତି, ପ୍ରସନ୍ନତା ଓ ତୃପ୍ତି ମିଳୁଛି । ଅନେକ କିଛି ହରାଇ କିଛି ପାଇବାର ଅଫୁରନ୍ତ ଆନନ୍ଦ ମନ, ପ୍ରାଣ, ଶରୀରକୁ ଆବୋରି ରଖିଛି, ଆହୁରି ଆଗକୁ ଯିବାର ସାହସ ଦେଉଛି- ସେ ଶିକ୍ଷା ଚିତ୍ତଭାଇଙ୍କ ଜୀବନାଦର୍ଶରୁ ହିଁ ମିଳିଛି- ତାହା ଅମୂଲ୍ୟ ସମ୍ପଦ । ମୁଁ ତାଙ୍କଠାରେ ଚିରଋଣୀ, ଚିରକୃତଜ୍ଞ ହୋଇ ଜନ୍ମଜନ୍ମାନ୍ତର ରହିବି । ମୋର ଶତକୋଟି ପ୍ରଣାମ ଜଣାଉଛି- ଦିବ୍ୟଜନନୀ ଓଡ଼ିଶାର ଏହି ବରପୁତ୍ର, ବେଦବ୍ୟାସଙ୍କୁ ଶତାୟୁ କରନ୍ତୁ । ଆମ ସଭିଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହିଥାଆନ୍ତୁ ।

**ଜୟନାରାୟଣ ପାଣିଗ୍ରାହୀ**
*ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷା ଓ ଗବେଷଣା କେନ୍ଦ୍ର,*
*ଅରୋବିହାର, ଦହମୁଣ୍ଡା, ବାଲେଶ୍ୱର*

# ଭିନ୍ନ ଜଣେ ଶିକ୍ଷକ

ଭୁବନେଶ୍ୱର ଦୁଇନମ୍ବର ଇଉନିଟ୍ ସ୍ଥିତ ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ବିଦ୍ୟାଳୟ । ସେତେବେଳେ ସ୍କୁଲ ଏଇଠାରେ ଚାଲୁଥିଲା । ସ୍କୁଲରେ ପ୍ରିନ୍‌ସିପାଲ୍‌ଙ୍କ ରୁମ୍‌କୁ ଲାଗି 'ମା'ଙ୍କ ରୁମ୍ । କବାଟ ପ୍ରାୟ ସମୟରେ ବନ୍ଦ ରୁହେ । ଫାଲେ ଝରକା ଅବଶ୍ୟ ଖୋଲା ଥାଏ । କିନ୍ତୁ ମୋଟା କନାର ପରଦା ଫାଙ୍କ ଦେଇ ଚେଷ୍ଟା ନକଲେ ଭିତରକୁ ଅନାଇବା ସମ୍ଭବ ହୁଏନାହିଁ । ଭିତରେ ଅବଶ୍ୟ ମା ଓ ଶ୍ରୀଅରବିନ୍ଦଙ୍କର ବଡ଼ ଫଟୋ ବ୍ୟତୀତ ଅନ୍ୟ କିଛି ନଥିଲା । ସେ ସମୟରେ ମୁଁ ପ୍ରାୟ ପାଠଚକ୍ରମାନଙ୍କରେ ଯୋଗ ଦେଉଥିଲି । ସ୍କୁଲରେ ମଧ୍ୟ ପ୍ରତି ଗୁରୁବାର ସନ୍ଧ୍ୟାରେ ପାଠଚକ୍ର ହେଉଛି ବୋଲି ଶୁଣିଥିଲି । ତେଣୁ ଦିନେ ଗୁରୁବାର ସନ୍ଧ୍ୟାରେ ପାଠଚକ୍ରରେ ଯୋଗଦେବା ନିମନ୍ତେ ଏଇ ସ୍କୁଲ୍‌କୁ ମାଡି ଆସିଲି । ଦେଖିଲି 'ମା'ଙ୍କ ରୁମ୍ ରେ ପାଠଚକ୍ର ଚାଲିଛି । ରୁମ୍‌ର କବାଟ ଖୋଲା ଅଛି । ତେଣୁ ମୁଁ ବହୁତ ଖୁସୀ ହୋଇ କବାଟ ପାଖରେ ଆସି ବସିଗଲି । ଏଇଠାରେ ହିଁ ମୁଁ ପ୍ରଥମେ ଚିତ୍ତଭାଇଙ୍କୁ ଦେଖିଲି । ସେ ନିଜେ "The Synthesis of Yoga" ବହିର

ଲେଖାଗୁଡ଼ିକ ପଢୁଥାନ୍ତି । ଶ୍ରୀଅରବିନ୍ଦଙ୍କ ଇଂରାଜୀ ଲେଖା ପଢ଼ିବା ଓ ବୁଝିବା ଅନେକ କଷ୍ଟ ବୋଲି ଶୁଣିଥିଲି । କିନ୍ତୁ ଏଠାକୁ ଆସି ଦେଖିଲି ଚିତ୍ତଭାଇ ଅତି ସହଜରେ ଦୃଢ଼ତାର ସହ ଏହା ପଢିଯାଉଥାନ୍ତି । ଭଦ୍ରଲୋକଙ୍କ ଭଳି ସେ ଦିଶୁଥାନ୍ତି । ଇଂରାଜୀରେ ମଧ ତାଙ୍କର ଭଲ ଜ୍ଞାନ ଅଛି ବୋଲି ମୋର ସେଦିନ ଧାରଣା ହେଲା । ତାଙ୍କ ବିଷୟରେ ମୁଁ କିଛି ଜାଣିନଥିଲି । ଜାଣି ନଥିଲି ଯେ, କଟକ ବାଦାମବାଡି ବସ୍‌ଷ୍ଟାଣ୍ଡରୁ ହାଇକୋର୍ଟ ପାଖରେ 'ଦି ଇଉନିଭର୍ସ'କୁ ମୁଣ୍ଡଫଟା ଖରାରେ ରିକ୍‌ସାରେ ନ ଯାଇ ଚାଲି ଚାଲି ସେ ଯାଇପାରନ୍ତି । ଦେଖିଲେ କିଏ କଣ ଭାବିବ ତାକୁ ଖାତିର କରନ୍ତି ନାହିଁ, ବସ୍‌ଷ୍ଟାଣ୍ଡ ଓ ଷ୍ଟେସନ ମାନଙ୍କରେ ଇଏ ନିଜର ତଥାକଥିତ ଆତ୍ମ ସମ୍ମାନକୁ ଭ୍ରୁକ୍ଷେପ ନକରି ବେଡିଂ ଓ ସୁଟ୍‌କେଶ୍‌କୁ ନିଜେ ବୁହନ୍ତି । ସେ ଜେଲ୍ ଭିତରେ ଜୀବନ କଟାଇ ଅଧ୍ୟୟନ କରିଛନ୍ତି ଓ ସେହି ସମୟରେ କଇଥାନ୍‌ଙ୍କ ଭଳି ମହାନ୍ ବ୍ୟକ୍ତି ବିଶେଷଙ୍କର ସଂସ୍ପର୍ଶରେ ଆସିଛନ୍ତି । ଶିକ୍ଷା, ଶିକ୍ଷକ ଓ ଛାତ୍ରମାନଙ୍କୁ ନେଇ କ'ଣ ଯେ ସମ୍ଭାବନା ସବୁ ଥାଇପାରେ ତା'ର ଦୃଷ୍ଟାନ୍ତ ସେ ଚମରିମୁଣ୍ଡାରେ ଦେଇଛନ୍ତି । ବାବୁ ବୋଲି ମନେ ହେଉଥିଲେ ମଧ, ବାବୁ ହବାକୁ ସେ ପସନ୍ଦ କରନ୍ତି ନାହିଁ । ସେ ମଧ ବହୁବାର ରେଳଗାଡ଼ିର ତୃତୀୟ ଶ୍ରେଣୀ ଡବାରେ, ସାଧାରଣ ଲୋକମାନଙ୍କ ଭିଡ଼ ମଧରେ ଛିଡ଼ାହୋଇ ଯାତ୍ରା କରିଛନ୍ତି । ସେ ଯେ ବହି ଲେଖିଛନ୍ତି, ସେ କଥା ମୁଁ ବହିମେଳାରେ ତାଙ୍କର ବହି ଦେଖି ଜାଣିଲି । ତା'ପରେ ତାଙ୍କର ବହି କିଣି ପଢ଼ିଲି । ତାଙ୍କୁ ସ୍ୱଚକ୍ଷୁରେ ପାଠଚକ୍ରରେ ଦେଖିବା ଓ ଘରେ ଆସି ତାଙ୍କର ବହି ପଢ଼ିବାକୁ ମୁଁ ବଡ଼ ସୌଭାଗ୍ୟ ବୋଲି ମନେକରେ । ତାଙ୍କର ବହି ପଢ଼ିବା ସମୟରେ ସେ ହିଁ ଦିଶିଯାନ୍ତି । ଇଏ ଏକ ଅଦ୍‌ଭୁଦ ଅନୁଭୂତ । ଏଇ ଦଶ ବାର ବର୍ଷ ଭିତରେ ମୁଁ ତାଙ୍କର ଅନେକ ବହି ପଢ଼ିଲିଣି । ତଥାପି ମନେ ହୁଏ ତାଙ୍କ ବିଷୟରେ ଆଜି ମଧ ମୁଁ କିଛି ଜାଣିନାହିଁ । ତାଙ୍କର ଯେତେ ବହି ମୁଁ ପଢ଼ିଛି, ମନ ଭିତରେ ମୋର ସେତେ ବ୍ୟାକୁଳତା ସୃଷ୍ଟି ହୋଇଛି । ମନର ଅଭାବ ବଢ଼ି ବଢ଼ି ଚାଲିଛି । କଥାରେ ଅଛି । ଝିଅକୁ ଯେତେ ଦବ ସେତେ ଊଣା । ଠିକ୍ ସେମିତି ତାଙ୍କୁ ମୁଁ ଯେତିକି ଅଧିକରୁ ଅଧିକ ପଢୁଛି, ତା'ଠାରୁ ଅଧିକ ବାକି ରହିଯାଉଥିବା ପରି ପ୍ରତୀୟମାନ ହେଉଛି । ପାଠଚକ୍ରର ଆଲୋଚନା ମାଧ୍ୟମରେ ସେ ଯେଉଁ ଅଭୟ ଆମମାନଙ୍କୁ ଦେଉଛନ୍ତି, ପ୍ରତିଦାନରେ କେବଳ କୃତଜ୍ଞତା ଜଣାଇବା ବ୍ୟତୀତ ଆମେ ଆଉ କ'ଣ କରିପାରିବୁ ?

ପାଠଚକ୍ରରେ "The Synthesis of Yoga" ଓ "The Life Divine" ପଢ଼ାହୁଏ ଓ ଆଲୋଚନା ହେଉଥିଲା । ମୁଁ ଶୁଣିଥିଲି ଯେ ଏଇ ଦୁଇଟି ବହି ପଢ଼ିବା ଓ ବୁଝିବା ବହୁତ କଷ୍ଟ । 'ମୁଁ ବି ଦିନେ ଏଇ ବହି କିଣିବି ଓ ପଢ଼ିବି' ଏଇ ଧାରଣା ସେତେବେଳେ ମୋର ବିଲ୍‌କୁଲ୍ ନଥିଲା । କିନ୍ତୁ ଚିତ୍ତଭାଇଙ୍କୁ ଖୁବ୍ ଆତ୍ମବିଶ୍ୱାସର ସହିତ

ଏହି ବହି ପଢୁଥିବାର ଲକ୍ଷ୍ୟ କରି ଭାରି ଖୁସି ଲାଗିଲା । ପଢ଼ାପରେ ଆଲୋଚନା । ଆଲୋଚନାରେ ଅତି ସାଧାରଣ ଜୀବନର କଥା ସବୁ ପଡ଼େ । ତେଣୁ ତାହା ଶୁଣିବାକୁ ଓ ଆଲୋଚନାରେ ଭାଗନେବାକୁ ଆଗ୍ରହ ବଢ଼ିଲା । ଉଦାହରଣ ସ୍ୱରୂପ, ବହିରେ 'ଉଦାସୀନତା' ବୋଲି ଗୋଟେ ଶବ୍ଦ ପଡ଼ିଲା । ଉଦାସୀନତାର ଅର୍ଥ କ'ଣ ହୋଇପାରେ ? ସେ କଥା ବୁଝାଇବାକୁ ଯାଇ ଚିତ୍ତଭାଇ ସିଧାସଳଖ ଆମମାନଙ୍କ କଥା କହିଲେ ଆମେମାନେ କିପରି ରାତି ଦଶଟା ପର୍ଯ୍ୟନ୍ତ ରାସ୍ତାକଡ଼ରେ ଶଙ୍ଖ ଉପରେ ବସୁ, ଗୁଲିଖଟି କରୁ, ଗୋଡ଼କୁ ହଲାଉ ଓ ସିଗାରେଟ୍ ପିଉ ଇତ୍ୟାଦି ଇତ୍ୟାଦି । ଶ୍ରୀଅରବିନ୍ଦଙ୍କର ଲେଖାଗୁଡ଼ିକ ଭିତରେ ଯେ ଗୋଟାଏ ସମ୍ପୂର୍ଣ୍ଣ ଅଲଗା ବାଟ ରହିଛି ସେକଥା ଏଇ ଆଲୋଚନା ଚକ୍ରରେ ଧିରେ ଧିରେ ସ୍ପଷ୍ଟ ହେବାକୁ ଲାଗିଲା ।

ଚିତ୍ତଭାଇ ସମସ୍ତଙ୍କୁ ନେଇ ବାଟ ଚାଲନ୍ତି । ଆମମାନଙ୍କ ଭିତରେ ଥିବା ସକଳ ଦୁର୍ବଳତାକୁ ସେ ଗୁରୁତ୍ୱ ଦିଅନ୍ତି ନାହିଁ । ସମସ୍ତ ଦୁର୍ବଳତା ସତ୍ତ୍ୱେ ତଥାପି ଯେ ଆମେମାନେ ଜଣେ ଜଣେ ଯୋଗ୍ୟ ମଣିଷ, ତା'ର ପରିଚୟ ସେ ଆମମାନଙ୍କୁ ଦିଅନ୍ତି । ତାଙ୍କ ନିଜ ଭାଷାରେ : ସଜନା ଗଛ ଯଦି ଛୁଇଁ ଫଳାଇ ପାରୁଛି, ତା'ହେଲେ ତା' ଦେହରେ ସଁବାଳୁଆ ଅଛନ୍ତି ବୋଲି ତା'ର ଦୁଃଖ କରିବାର କୌଣସି କାରଣ ନାହିଁ । ପାଠଚକ୍ରକୁ ଯାଇ ଆମେମାନେ ତାଙ୍କଠାରୁ ଟିକେ ଛାଡ଼ିକି ବସୁ । ସେ କିନ୍ତୁ ଏସବୁ ଦୂରତ୍ୱକୁ ମାନନ୍ତି ନାହିଁ । ପାଖକୁ ଆସି ବସିବା ପାଇଁ କୁହନ୍ତି । ଏହିପରି ଭାବେ ସେ ସମସ୍ତଙ୍କୁ ନିଜର କରିନିଅନ୍ତି । ମୁଁ ମଧ ତାଙ୍କର ପରିସରଭୁକ୍ତ ହୋଇଗଲି । ଗୁରୁବାର ପାଠଚକ୍ର ସନ୍ଧ୍ୟା ଛ'ଟାରେ । ମୁଁ କିନ୍ତୁ ଘଣ୍ଟେ ଦେଢ଼ ଘଣ୍ଟା ଆଗରୁ ସ୍କୁଲ୍‌କୁ ଆସେ ଓ ତାଙ୍କ ଆସିବା ପଥକୁ ଅପେକ୍ଷା କରି ରହେ । ସେ ମଧ ପ୍ରାୟ ଘଣ୍ଟେ ଆଗରୁ ଆସନ୍ତି ଓ ମା'ଙ୍କ ରୁମ୍‌ରେ ବସି ରବୀନ୍ଦ୍ର ସଂଗୀତ ଗାଆନ୍ତି । ତାଙ୍କ ସହିତ ସ୍କୁଲ୍‌ର ରବିଭାଇ ଓ ମିଲିଅପା ଯୋଗ ଦିଅନ୍ତି । ମଝିରେ ମଝିରେ ସେମାନେ ସ୍କୁଲ୍‌ର ବିଭିନ୍ନ ବିଷୟରେ ଆଲୋଚନା କରନ୍ତି । ଏସବୁ ସମ୍ପୂର୍ଣ୍ଣ ନିଜସ୍ୱ ଆଲୋଚନା ପରି ମନେହୁଏ । ମୋତେ ଟିକେ ସଂକୋଚ ଲାଗୁଥିଲେ ମଧ ମୁଁ ତାଙ୍କ ପାଖରେ ଯାଇ ବସିରୁହେ । ରବୀନ୍ଦ୍ର ସଂଗୀତ ପ୍ରତି ମୋର ଟିକିଏ ବି ଆଗ୍ରହ ନଥାଏ । ବଙ୍ଗଳା ଭାଷା ମଧ ମୁଁ ବିଲ୍‌କୁଲ୍ ବୁଝିପାରୁନଥାଏ । ତଥାପି ମୁଁ ଚିତ୍ତଭାଇଙ୍କ ପାଖରେ ବସିରୁହେ । କାରଣ ତାଙ୍କୁ ଦେଖିଲେ ମଣିଷର ଜୀବନ ବଦଳି ଯିବ ବୋଲି ମନରେ ଗୋଟାଏ ପ୍ରତ୍ୟୟ ଆସିସାରିଥିଲା । ପୃଥିବୀରେ ଏପରି ମଣିଷ ଅଛନ୍ତି ଯେଉଁମାନଙ୍କୁ ଖାଲି ଦେଖିଲେ ହିଁ ମଣିଷର ଜୀବନ ବଦଳିଯିବ । ଏକଥା ଚିତ୍ତଭାଇ ନିଜେ କହିଛନ୍ତି । ସେ ଜଣେ ଗାୟକ କି ଗାୟିକାଙ୍କର ଉଦାହରଣ ଦେଇ ଏ କଥା କହିଥିଲେ । ତା' ପରଠୁ ଆଜି ପର୍ଯ୍ୟନ୍ତ ମୁଁ

ତାଙ୍କର ନାଁ ମନେ ପକେଇବାକୁ ଚେଷ୍ଟା କରୁଛି । କିନ୍ତୁ ଠିକ୍‌ରେ ମନେ ପଡୁନାହିଁ । ସେ ଲତା ମଙ୍ଗେସ୍‌କରଙ୍କର ସମସାମୟିକ । କିନ୍ତୁ ସେ ଟଙ୍କା ରୋଜଗାର କରିବା ପାଇଁ ଗାଆନ୍ତି ନାହିଁ, ଯାହା ହେଉ, ଚିତ୍ତଭାଇଙ୍କ କଥା ମୋତେ ଭାରି ସୁହାଏ ।

ଚିତ୍ତଭାଇଙ୍କୁ ମୁଁ ଭଲପାଏ । ସେ ରବୀନ୍ଦ୍ର ସଂଗୀତକୁ ଭଲ ପାଉଛନ୍ତି । ତେଣୁ ମୋର ମନ ରବୀନ୍ଦ୍ର ସଂଗୀତ ଆଡ଼କୁ ବଳାଇଲା । ତା'ଛଡ଼ା ସେ ଗାଉଥିବା ସମୟରେ ତାଙ୍କ ମୁହଁରେ ଅପୂର୍ବ ଭାବଧାରା ଫୁଟିଉଠେ । ତାହା ମଧ ମୋତେ ବହୁତ ଆକୃଷ୍ଟ କଲା । କିନ୍ତୁ ପାଞ୍ଚଲୋକଙ୍କ ସାଙ୍ଗରେ ବସି ସେମାନଙ୍କ କଣ୍ଠରେ ସ୍ୱର ମିଶାଇ ଗାଇବା ମୋ ଜୀବନରେ କେବେ ବି ଘଟି ନଥିଲା । ତେଣୁ ଶ୍ରମ ଶିବିରରେ ସମସ୍ତେ ଏତେ ଜୋର୍‌ରେ ଗାଉଥିଲେ ମଧ ମୁଁ କେବଳ ଗୀତଗୁଡ଼ିକୁ 'ଆସ ଗୀତ ଗାଇବା' ବହିରୁ ମନେ ମନେ ପଢୁଥିଲି । ପାଟି ଖୋଲିଲେ ମୋତେ କାଳେ କିଏ ଦେଖିଦେବ ଏହିପରି ଏକ ଲାଜମିଶା ଭୟ ମୋ ମଧରେ ନିଶ୍ଚୟ ଥିଲା । ହୃଦୟର ଘରେ କୌଣସି କବାଟ ଝରକା ନଥିଲା । କିନ୍ତୁ ଚିତ୍ତଭାଇ ଯେ କିପରି ଯୁଆଡ଼େ ଯାଇଛନ୍ତି ସିଆଡେ ଲୋକମାନଙ୍କ ସହିତ ମିଶିଯାଇଛନ୍ତି ଓ ନିସ୍ୱାର୍ଥପର ଭାବରେ ବନ୍ଧୁ କମାଇଛନ୍ତି ତାହା ଜାଣି ମୋତେ ପ୍ରେରଣା ମିଳିଲା । ମନରୁ ଭୟ ଆସ୍ତେ ଆସ୍ତେ ଦୂରେଇ ଗଲା । ମୁଁ ମଧ ସମସ୍ତଙ୍କ ମେଳରେ ବସି ବଡ଼ ପାଟିରେ ରବୀନ୍ଦ୍ର ସଂଗୀତ ଗାଇଲି । ଏପରିକି ବଂଗଳା ଭାଷା ମଧ ମୁଁ ଶିଖିଗଲି । ଚିତ୍ତଭାଇ ଓ ରବିଭାଇଙ୍କୁ ବଙ୍ଗଳା ଲିପିରେ 'ଗୀତ ବିତାନ' ଓ 'ଗୀତାଞ୍ଜଳି' ବହି ପଢ଼ିବାର ମୁଁ ଅନେକ ଥର ଦେଖିଛି । ସେତେବେଳଠୁ ମୋର ଗୀତାଞ୍ଜଳି ବହିପଢ଼ିବା ପାଇଁ ଇଚ୍ଛା ଥିଲା ଓ ଆଜି ମୁଁ ମଧ ଗୀତାଞ୍ଜଳି ବହି ପଢ଼ିପାରୁଛି । ରବୀନ୍ଦ୍ର ସଂଗୀତ୍ ଜୀବନର ସଂଗୀତ । ଏହା କଦାପି ଭାବପ୍ରବଣତା ନୁହେଁ । ଚିତ୍ତଭାଇ ଆମମାନଙ୍କୁ ଏର ବିଶ୍ୱାସ ଦେଇଛନ୍ତି । ଭାବପ୍ରବଣତା ହୋଇଥିଲେ ଶାନ୍ତିନିକେତନରୁ ପଢ଼ାସରିବା ପରଠାରୁ ଆଜି ପର୍ଯ୍ୟନ୍ତ ସେ ଏଥିରେ ରୁଚି ରଖିନଥାନ୍ତେ । ଦିନକର କଥା ମନେ ପଡୁଛି । ସେଦିନ ସନ୍ଧ୍ୟାରେ ଚିତ୍ତଭାଇ ଓ ରବିଭାଇ ରବୀନ୍ଦ୍ର ସଂଗୀତ ଗାଇ ଚାଲିଥାନ୍ତି । ଛ'ଟା ବାଜି ସାରିଥିଲା । ଛ'ଟା ବେଳକୁ ବହିପଢ଼ା ଆରମ୍ଭ ହେବାକଥା । କିନ୍ତୁ ସମସ୍ତେ ଚୁପ୍ ଚାପ୍ ବସିଥାନ୍ତି । ଗୀତ ବନ୍ଦ କରି ବହି ପଢ଼ା ଆରମ୍ଭ ହେବାକୁ କେହି ଚିତ୍ତଭାଇଙ୍କୁ କହିଲେ ନାହିଁ । ତେଣୁ ସମସ୍ତଙ୍କୁ ଲକ୍ଷ୍ୟ କରି ଚିତ୍ତଭାଇ ତାଙ୍କ ଆଡୁ କହିଲେ, 'ଆପଣମାନେ କ'ଣ ଏମିତି ସମସ୍ତେ ଚୁପ୍ ଚାପ୍ ହୋଇ ବସିଗଲେ ? ଆପଣମାନେ ନକହିଲେ ବହିପଢ଼ା ଆରମ୍ଭ ହେବନି । ଆମର କିଛି ନାହିଁ । କେଙ୍କାଙ୍କ ପରି ଆମେ ରାତିସାରା ଏମିତି ଗାଇ ଚାଲିଥିବୁ', ''ଏକଥା ଶୁଣି ମୋର ମନେ ହେଲା ଚିତ୍ତଭାଇ ସତେ ଅବା ତାଙ୍କ ନିଜକୁ ଶିକ୍ଷକ ରବୀନ୍ଦ୍ରନାଥ ଠାକୁର୍‌ଙ୍କୁ ଦେଇ ଦେଇଛନ୍ତି ।

ନିଜକୁ ଦେଇଦେବାର ଯେ କଣ ଅର୍ଥ ହୋଇପାରେ ସେକଥା ଦେଖିବାକୁ ମିଳିଲା ।

ପାଠଚକ୍ରର ଆଲୋଚନାରେ ଯିଏ ଥରେ ଚିତ୍ତଭାଇଙ୍କୁ ଭେଟିଛି ସିଏ ତାଙ୍କ ପାଖରେ ବନ୍ଦୀ ହୋଇଯାଇଛି । ତାଙ୍କ ଭିତରେ ସାହସ ଭରି ରହିଛି । ତେଣୁ ସିଏ ଅନ୍ୟମାନଙ୍କୁ ସାହସ ଦେଇପାରନ୍ତି । ସାହାସୀ ଲୋକଙ୍କ ସହିତ ସେ ସାଙ୍ଗ ହୁଅନ୍ତି । ତାଙ୍କର କର୍ମମୟ ଜୀବନରେ ସେ ପିଲାମାନଙ୍କୁ ହିଁ ପଢ଼ାଇ ଚାଲିଛନ୍ତି । ଆମେମାନେ ଭାବୁଥିଲୁ ଯେ କେବଳ ଶିକ୍ଷକ ପଢ଼ାଇବେ ଏବଂ ଛାତ୍ରମାନେ ଗ୍ରହଣ କରିବେ । କିନ୍ତୁ ଏଇ ଆଲୋଚନାର ପରିସରକୁ ଆସି ଜାଣିବାକୁ ପାଇଲି ଯେ ଶିକ୍ଷକ ମଧ ଛାତ୍ରମାନଙ୍କ ଠାରୁ ଗ୍ରହଣ କରିବ । ପିଲାମାନେ ବଡ଼ ଲୋକଙ୍କ ଠାରୁ ଅଧିକ ରଚନାତ୍ମକ । ବିଦେଶରେ ଏଇ ପିଲାମାନେ ଚିତ୍ତଭାଇଙ୍କୁ ସାଇକେଲ୍ ଚଢା ଶିଖାଇଛନ୍ତି । ବିଦେଶର ଭାଷା ମଧ ସେ ଏଇ ପିଲାମାନଙ୍କ ଠାରୁ ଶିଖିଛନ୍ତି । ଗାଁରେ ଯେତେବେଳେ ହାଇସ୍କୁଲ୍‌ରେ ପଢୁଥିଲେ ସେବେଠାରୁ ସେ ପିଲାମାନଙ୍କୁ ପଢ଼ାଇ ଆସୁଛନ୍ତି । ତେଣୁ କଥା ଉପରେ କଥା କହି ତାଙ୍କୁ କିଏ ଠକି ପାରନ୍ତି ନାହିଁ । ତାଙ୍କ ଆଗରେ ସମସ୍ତେ ଧରା ପଡ଼ିଯାଆନ୍ତି । ନିଜକୁ କେହି ଲୁଚାଇ ପାରନ୍ତି ନାହିଁ । ଆଲୋଚନା ଚକ୍ରରେ ତାଙ୍କୁ ଦେଖିବା ପରେ ଆମ କ୍ଷେତ୍ରରେ ମଧ ତାହା ହେଲା । ନିଜକୁ ଆଉ ଲୁଚାଇ ରଖିବାକୁ ଇଚ୍ଛା ହେଲାନାହିଁ । ଏଇପରି ଭାବେ ସେ ଆମକୁ ଅନେକ ହାଲୁକା କରିଦେଲେ । ଅନ୍ୟମାନଙ୍କ ସହିତ ଅଧିକରୁ ଅଧିକ ମିଶିଯିବା ପାଇଁ ସେ କୁହନ୍ତି । ଆମେମାନେ ଗମ୍ଭୀର ହୋଇଗଲେ ସେ ହାସ୍ୟ ପରିହାସ ମଧ କରନ୍ତି । ସେଇ ହାସ୍ୟ ପରିହାସ ମଧରେ ଶ୍ରୀଅରବିନ୍ଦଙ୍କ ଲେଖାର ଅର୍ଥ ବୁଝାଇ ଦିଅନ୍ତି । ସେ ମଧ କଥାଛଳରେ ବହୁ ସୁନ୍ଦର କାହାଣୀର ଅବତାରଣା କରିପାରନ୍ତି । ଏହିପରି ଭାବେ ସେ ବାଇବେଲ୍‌ରୁ 'Story of the Prodigal Son" ଓ "Story of the Adulterated Woman" କହିଛନ୍ତି । ଏହା ମୋର ସବୁଦିନ ପାଇଁ ମନେ ରହିବ । ପ୍ରଥମ ବିଶ୍ୱଯୁଦ୍ଧ ସମୟର ଏକ ପ୍ରେମକାହାଣୀ ଉପରେ ଆଧାରିତ ଋଷୀୟ ଚଳଚ୍ଚିତ୍ର, "The Cranes are Flying"ର ବିଷୟବସ୍ତୁକୁ ଚିତ୍ତଭାଇ ଯେ ଭଳି ଭାବେ ବର୍ଣ୍ଣନା କରନ୍ତି ତାହା ମୁଁ କେବେ ଭୁଲି ପାରିବିନି । ଏସବୁ ଶୁଣିଲା ପରେ ଶ୍ରୀଅରବିନ୍ଦଙ୍କ ମୂଳ ଇଂରାଜୀ ଲେଖା ପଢ଼ିବା ପାଇଁ ପ୍ରେରଣା ଶତଗୁଣ ବଢ଼ିଯାଏ । ଶିକ୍ଷକ ମଧ ଛାତ୍ରର ସପକ୍ଷରେ ରହିବ । ଶିକ୍ଷାରେ ଏହିପରି ଏକ ଧାରା ଅଛି ବୋଲି ଆମେମାନେ କେବେ ଭୁଲ୍‌ରେ ବି କଳ୍ପନା କରିନଥିଲୁ । ପଇସା ଚୋରି କରୁଥିବା ପିଲାଟିକୁ ମଧ ଶିକ୍ଷକ ନୀଲ୍ ଭଲ ପାଉଥିଲେ । ତେଣୁ ଶେଷରେ ନୀଲ୍ ଦିନେ ପଇସା ଚୋରି କଲେ । ଏକଥା ଶୁଣି ଆମେମାନେ ସମସ୍ତେ ଅବାକ୍ ହୋଇଯାଉ । ଚିତ୍ତଭାଇ ଏଇସବୁ ନୂତନତ୍ୱର କଥା କହି ଆମ୍ଭମାନଙ୍କୁ

ତାଙ୍କ ପାଖରେ ବାନ୍ଧି ରଖିଛନ୍ତି । ଥରକର କଥା ମନେ ପଡୁଛି । ଚିତ୍ତଭାଇ ହାସ୍ୟ ଥଟ୍ଟା ମଜା କରିବାରେ ଧୁରନ୍ଧର । ସେ ବାରମ୍ବାର ଆମକୁ ଚେତେଇ ଦେଇ କୁହନ୍ତି, ବାବୁରେ ଗମ୍ଭୀର ହୋଇ ଘରେ ବସିରୁହ ନାହିଁ । ଜୀବନରେ ହାସ୍ୟ ଶିଖ । ହାସ୍ୟ କଲେ ହିଁ ଶ୍ରୀଅରବିନ୍ଦଙ୍କ ଲେଖାଗୁଡ଼ିକ ସହଜ ହୋଇଯିବ । ଆଲୋଚନା ଚକ୍ରରେ କେହି ଗମ୍ଭୀର ହୋଇ ବସିଥିଲେ ଚିତ୍ତଭାଇଙ୍କର ନଜର ତାରି ଉପରେ ପଡ଼େ । ତାକୁ ସେ ପିନ୍ ମାରିଦିଅନ୍ତି । ହସିବାକୁ ଉସ୍କାଇ ଦିଅନ୍ତି । ସମସ୍ତଙ୍କ ଭିତରେ ମିଶିଯାଇ ପାଟି ଖୋଲିବାକୁ ମଜବୁର କରିଦିଅନ୍ତି । ସେଦିନ ଏମିତି ଏକ ହାସ୍ୟ କରିବାକୁ ଯାଇ ଚିତ୍ତଭାଇ ନିଜେ ନିଜକୁ ଏକ କରଣଲୋକ ବୋଲି କହୁଥାନ୍ତି । ମୁଁ ଆଉ ସମ୍ଭାଳି ପାରିଲି ନାହିଁ । ତାଙ୍କ ସାଙ୍ଗେ ସାଙ୍ଗେ କହିଲି ଯେ କରଣମାନେ ଘରେ ପେଜ ପିଇ ବାହାରେ କ୍ଷୀର ପିଇଛନ୍ତି ବୋଲି କୁହନ୍ତି । ଏକଥା ମୁଁ ଲୋକମାନଙ୍କଠାରୁ ଶୁଣିଛି ବୋଲି ସୂଚାଇଲି । ଏକଥା କହି ମୋତେ ଟିକେ ଉଶ୍ୱାସ ଲାଗିଲା । ଏ କଥାର ଆଉ କିଛି ଉତ୍ତର ଚିତ୍ତଭାଇ ଦେଇପାରିଲେ ନାହିଁ ବୋଲି ଭାବି ମୁଁ ମନେ ମନେ ଏକଦମ୍ ଖୁସୀ ହୋଇଗଲି । ହୁଏତ ସେ ମୋ ଉପରେ ରାଗିଯାଇଥାନ୍ତେ । ସମସ୍ତଙ୍କ ଆଗରେ ମୋତେ ସେଠାରୁ ବାହାର କରି ଦେଇଥାନ୍ତେ । ସେଥିପାଇଁ ମୋର ଚିନ୍ତା ନଥିଲା । କାରଣ ଚିତ୍ତଭାଇଙ୍କ ସାଙ୍ଗରେ ମିଶିବା ପରଠାରୁ ମୋର ଲାଜ ସରମ ଆଉ ନଥିଲା । ସେ ଯଦି ମୋତେ ପାଠଚକ୍ରକୁ ଆସିବାକୁ ଶକ୍ତ ଭାବେ ମନା କରିଥାନ୍ତେ, ତାହାଲେ ମଧ ମୁଁ ନିଶ୍ଚୟ କୁକୁରଙ୍କ ଭଳି ପାଠଚକ୍ରକୁ ଆସିଥାନ୍ତି । କାରଣ ମୁଁ ଚିତ୍ତଭାଇଙ୍କୁ ଭଲପାଏ । କିନ୍ତୁ ସେମିତି କିଛି ହେଲାନାହିଁ । ମୋ କଥା ଶୁଣି ସେ ହସିଲେ । ତାଙ୍କୁ ଆହୁରି ମଜାଲାଗିଲା । ସେ ପୁଣି ଥଟ୍ଟା କରି କହିଲେ, 'ପ୍ରଦୀପ, ତମେ ଯାହା ଶୁଣିଛ ବିଲ୍‌କୁଲ୍ ଠିକ୍ ଶୁଣିଛ । କେବଳ କରଣ ଲୋକମାନେ ହିଁ ତାହା କରିପାରନ୍ତି । ଆଉ ଅନ୍ୟମାନେ ତାହା କରିପାରନ୍ତି ନାହିଁ । କାରଣ କରଣଲୋକମାନେ ପେଜ ପିଇବି ମଧ କ୍ଷୀର ପିଇଲା ଭଳି ଅନୁଭବ କରନ୍ତି, ଆଉ ଅନ୍ୟମାନେ କ୍ଷୀର ପିଇବି ମଧ ପେଜ ପିଇଛନ୍ତି ବୋଲି ଭାବନ୍ତି ।' ଏକଥା ଶୁଣି ଆମେ ସମସ୍ତେ ହସୁଥିଲୁ ।

ନିଜ ପାଇଁ ସେ କାହାଠାରୁ କିଛି ଆଶା କରନ୍ତି ନାହିଁ । ତେଣୁ ସେ ସମସ୍ତଙ୍କୁ ଭୟଶୂନ୍ୟ ଭାବେ ତୀକ୍ଷ୍ଣ କଥା କହିପାରନ୍ତି । ଥରେ ଚିତ୍ତଭାଇ ଓ ଆମେ କେତେଜଣ ଚରମାରୁ ଜାମୁଝାଡି ଯିବାକୁ ବସ୍‌ରେ ଚଢ଼ିଲୁ  ବସ୍ ଭିଡ଼ ଥିଲା । ଆମେ ସମସ୍ତେ ଛିଡ଼ା ହୋଇଥିଲୁ । ବସ୍ ଭିଡ଼ ହେଉଛି ବୋଲି ମୁଁ କହିଲି । ଭିଡ଼ ବସ୍‌କୁ ଭିଡ଼ ବୋଲି କହିବା କ'ଣ ଭୁଲ୍ ? କିନ୍ତୁ ଚିତ୍ତଭାଇଙ୍କୁ ଠକିବା ସହଜ ନୁହେଁ । ମତେ ଯେ କଷ୍ଟ ଲାଗିବାରୁ ମୁଁ ଏକଥା କହିଲି ସେ ଏକଥା ବୁଝିଗଲେ । ଥଟ୍ଟା କଲା ଭଙ୍ଗୀରେ ସେ ବି ଗୋଟାଏ ବାକ୍ୟ

କହିଥିଲେ, ''ତମେ ଏମିତି ବାବୁଙ୍କ ଭଳି କ'ଣ କଥା କହୁଛ ?'' ଏଇ ବାକ୍ୟଟି ୯୪ ମସିହାରୁ ମୋ ହୃଦୟରେ ସ୍ପନ୍ଦିତ ହେଉଛି । ବସ୍ ଭିତରେ କେତେ ଲୋକ ଯାଉଛନ୍ତି । ସେମାନଙ୍କ ସହ ନିଜକୁ ଟିକେ ମିଶାଇ ପାରିଥିଲେ କଷ୍ଟ ଲାଗି ନଥାନ୍ତା । ଆଉ ଥରକର କଥା । ଧର୍ମଗଡ଼ର ଏକ ଶୀତ ସକାଳ । ଲୁଗା ଓ ଗଂଜି ଖଣ୍ଡେ ପିନ୍ଧି ଚିତ୍ତଭାଇ ବାସନ ମାଜୁଥାନ୍ତି । ସେତେବେଳେ ମୁଁ ସାର୍ଟ ଓ ପ୍ୟାଣ୍ଟ ପିନ୍ଧିଥିଲି । ବାସନ ମାଜିବାପାଇଁ ହାତ ବଢ଼ାଇଲି । ଚିତ୍ତଭାଇ କିନ୍ତୁ ବାରଣ କଲେ । ପ୍ୟାଣ୍ଟସାର୍ଟ ଓଦା ହୋଇଯିବ ବୋଲି କହିଲେ । ଏକଜିଦିଆଙ୍କ ପରି ମୁଁ ମାନିଲି ନାହିଁ । ତେଣୁ ସେ ପୁଣି କହିଲେ, 'ପ୍ୟାଣ୍ଟସାର୍ଟ ପିନ୍ଧି ବାସନ ମାଜୁଛ ବୋଲି କାହିଁକି ଦେଖେଇହେବ ?' ତଥାପି ମୁଁ ବାସନ ମାଜିଲି । ତାଙ୍କର ଏପରି କଥା ହାଡ଼କୁ ଭେଦିଯାଏ, ତେଣୁ ତାଙ୍କ ସହ ଯୁକ୍ତି କରି ତାଙ୍କୁ ହରାଇବାକୁ ଇଚ୍ଛା ହୁଏ । କିନ୍ତୁ ତାହା ପ୍ରାୟ ସମ୍ଭବ ହୁଏନାହିଁ । ଆମେ ଆମ ନିଜକୁ ଯେତିକି ଜାଣୁ, ସେ ଆମକୁ ତା'ଠାରୁ ଅଧିକ ଜାଣନ୍ତି । ଆମେ ତାଙ୍କେ ତାଙ୍କେ ଘରେ ସେ ପତରେ ପତରେ ଯାଆନ୍ତି । ଏଇଭଳି ହେଉଛନ୍ତି ଆମର ଅତି ପ୍ରିୟ ଚିତ୍ତଭାଇ । ଆମମାନଙ୍କ ସମ୍ପର୍କର କେଉଁଠି ହେଲେ ବି ବାବୁ ହବାର ଲକ୍ଷ୍ୟ ନାହିଁ । ଦେଖେଇହବା ମଧ ନାହିଁ । ଅଛି ଆନ୍ତରିକତା । ବିଦେଶର ସ୍କୁଲମାନଙ୍କରେ ମଧ ଚିତ୍ତଭାଇ ଆନ୍ତରିକ ଭାବେ ମାଟି କାମ କରିଛନ୍ତି । କିଆରି କରିଛନ୍ତି । ଘାସ ଉପାଡିଛନ୍ତି ।

ଚିତ୍ତଭାଇ ଯେଉଁ ଦେଶକୁ ଯାଇଛନ୍ତି, ସେ ଦେଶର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସହ ଆମର ପରିଚୟ କରାଇ ଦିଅନ୍ତି । ଗାଜା ଷ୍ଟ୍ରିପ୍ ଓ ଇସ୍ରାଏଲ୍‌ର ଏକ ସ୍ପଷ୍ଟ ଚିତ୍ର ସେ ଆମ ମାନସପଟରେ ଆଙ୍କି ଦେଇଛନ୍ତି । ପଞ୍ଚମ ଶ୍ରେଣୀରେ କ୍ରୀତଦାସ ପ୍ରଥା ଉପରେ ଛୋଟ ବିଷୟଟିଏ ଥିଲା । 'ଆମେରିକାରୁ ଆସିଲି' ବହିରୁ କ୍ରୀତଦାସ ପ୍ରଥାର ବିସ୍ତୃତ ବିବରଣୀ ମିଳିଲା । ଲେଖକ ହେବା ପାଇଁ କିମ୍ବା ପୁରସ୍କାର ପାଇବାକୁ ଚିତ୍ତଭାଇ ଲେଖନ୍ତି ନାହିଁ । ଶିକ୍ଷାକ୍ଷେତ୍ରରେ ସେ ରହିଛନ୍ତି । ତାଙ୍କର ଲେଖା ପଢ଼ିବାପାଇଁ ଆମର ଆଗ୍ରହ ତାଙ୍କୁ ଲେଖିବା ପାଇଁ ପ୍ରେରଣା ଦିଏ । ଚମତ୍କିମୁଣ୍ଡାର ଗୋଟିଏ ଶ୍ରେଣୀର ଛାତ୍ରଛାତ୍ରୀଙ୍କ ପାଇଁ ସେ ରାଜକୁମାର ବହିର ଅନୁବାଦ କରିଥିଲେ । ଶାରଳା ପୁରସ୍କାର ପାଇଥିଲେ ମଧ ଚିତ୍ତଭାଇ ଆମମାନଙ୍କ ଠାରୁ କୌଣସି ଦୂରତ୍ୱ ରକ୍ଷା କରନ୍ତି ନାହିଁ । ଚାହିଁଲେ ତାଙ୍କ ପାଖରେ ଯାଇ ବସିହୁଏ । ସେ ମଧ ସମସ୍ତଙ୍କୁ ସମାନ ବ୍ୟବହାର କରନ୍ତି । ପାଞ୍ଚଜଣଙ୍କୁ ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତି ଓ ଆଉ ପାଞ୍ଚଜଣଙ୍କୁ ମାମୁଲି ବ୍ୟକ୍ତି ଭାବି କଥାବାର୍ତ୍ତା କରନ୍ତି ନାହିଁ । ବରଂ ନିଜକୁ ବେଳେ ବେଳେ ଜଣେ ମାମୁଲି ବ୍ୟକ୍ତି ବୋଲି ଭାବୁଥିଲା ବେଳେ ସେ ଆମକୁ ଜଣେ ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତି ହିସାବରେ ବ୍ୟବହାର କରିଥାନ୍ତି । ସେ ଯେ ଅନେକ ବହି ଲେଖିଛନ୍ତି ତାହା ସତ କିନ୍ତୁ 'ଜୀବନ ବିଦ୍ୟାଳୟ' ବା

'ଜଙ୍ଗଲ ଚିଠି' ଇତ୍ୟାଦି ବହି ପଢ଼ିଲେ, ତାଙ୍କୁ ସବା ଆଗ ଜଣେ ଶିକ୍ଷକ ରୂପେ ଗ୍ରହଣ କରିବାକୁ ଇଚ୍ଛା ହୁଏ ।

'ମିତ୍ରସ୍ୟ ଚକ୍ଷୁସା'ର ପ୍ରଥମ ଖଣ୍ଡ ପଢ଼ିଲି । କଇଥାନ୍ ଓ କ୍ରିଷ୍ଟେନ୍ କଲଲ୍ ହୃଦୟରେ ରହିଗଲେ । କଇଥାନ୍ ଚିତ୍ତଭାଇଙ୍କୁ ବହୁତ ଭଲ ପାଉଥିଲେ । ଚିତ୍ତଭାଇ ମଧ୍ୟ ତାଙ୍କ ସହ ଘନିଷ୍ଠତା ସ୍ଥାପନ କରିପାରିଥିଲେ । ଯୀଶୁଖ୍ରୀଷ୍ଟଙ୍କୁ ଯେଉଁ କାଠରେ କ୍ରୁସବିଦ୍ଧ କରାଯାଇଥିଲା ତାକୁ ନିଜେ ଯୀଶୁ ଟାଣି ଟାଣି କାଲଭାରୀ ପାହାଡ଼ ଉପରକୁ ନେଇଯାଇଥିଲେ । ବାଟରେ ହାଲିଆ ହୋଇ ଯୀଶୁ ପଡ଼ିଗଲେ । ଭଗବାନ କଣ ତାଙ୍କୁ ଛାଡ଼ି ଚାଲିଗଲେ ବୋଲି ତାଙ୍କର ମନରେ ଅବିଶ୍ୱାସ ସୃଷ୍ଟି ହେଲା । ଅବିଶ୍ୱାସ ପରେ ବିଶ୍ୱାସ ଆସିଲା । ସେ ପୁଣି ଉଠି ସେଇ କାଠକୁ ଉଠାଣିଆ ରାସ୍ତାରେ ଟାଣି ଟାଣି ନେଇଥିଲେ । ଯେଉଁ ରାଜା ଡେଭିଡ୍ ଯୀଶୁଙ୍କୁ ଦଣ୍ଡ ଦେଉଥିଲେ, ଯୀଶୁ ସେଇ ରାଜାଙ୍କ ପାଇଁ ପ୍ରାର୍ଥନା କରିଥିଲେ । ଚିତ୍ତଭାଇ ଜେଲ୍‌ରେ ଅଛନ୍ତି । କଇଥାନ୍‌ଙ୍କୁ ଦେଶରୁ ବାହାର କରିଦିଆଯାଉଛି । ଶେଷଥରକ ପାଇଁ କଇଥାନ୍ ଜେଲ୍‌କୁ ଆସିଛନ୍ତି ଚିତ୍ତଭାଇଙ୍କୁ ଦେଖିବାକୁ । ଏହି ବିଦାୟକାଳୀନ ଦୃଶ୍ୟକଥା ଭାବି ମୋ ମନ ଦୁଃଖରେ ଭରିଯାଏ । ଫେରିଆସିବେ ବୋଲି ଆଶ୍ୱାସନା ଦେଇ କଇଥାନ୍ ନିଜ ହାତରେ ଚିତ୍ତଭାଇଙ୍କ ଖାତାରେ ଲେଖିଥିଲେ, 'The way to love is the way to cross" ଅନ୍ୟକୁ ଭଲ ପାଇବାକୁ ହେଲେ ଅନ୍ୟ ପାଇଁ କଷ୍ଟ ସହିବାକୁ ପଡ଼ିବ ବୋଲି ମୁଁ ଏହାର ଅର୍ଥ ବୁଝିଲି । ତଥାପି ଚିତ୍ତଭାଇଙ୍କ ପାଟିରୁ ଏଇକଥା ଶୁଣିବାକୁ ଭାରି ଇଚ୍ଛା ହେଲା । ଚିତ୍ତଭାଇଙ୍କୁ ଏହାର ଅର୍ଥ ପଚାରିଲି । ଯୀଶୁଖ୍ରୀଷ୍ଟଙ୍କ ଭଳି ନିଜକୁ ମଣିଷ ସମାଜ ପାଇଁ ଦେଇଦେବାକୁ ସେ କହିଲେ । କଇଥାନ୍‌ଙ୍କ ନାଁ କାହିଁକି କେଉଁଠାରେ ନାହିଁ ବୋଲି ମଧ୍ୟ ପଚାରିଲି । ''କିଛି କୁଆଡ଼େ ଯାଇନି, ସବୁକିଛି ଅଛି, ନେତୃତ୍ୱ ବଦଳିଗଲେ କଇଥାନ୍ ସାମ୍‌ନାକୁ ଆସିବେ'' ବୋଲି ସେ କହିଲେ । 'ମିତ୍ରସ୍ୟ ଚକ୍ଷୁସା' ରେ ସେ ଯେତିକି ପୃଷ୍ଠା କ୍ରୀଷ୍ଟେନ୍ କଲ୍‌ଲ୍‌ଙ୍କ ବିଷୟରେ ଲେଖିଛନ୍ତି ତାକୁ ମୁଁ ଅଣନିଶ୍ୱାସୀ ହୋଇ ପଢ଼ିଗଲି । ବିଦେଶକୁ ତ କେତେ ଯାଉଛନ୍ତି । କେତେ ପୁଣି ଆସୁଛନ୍ତି । ବିଦେଶର ସଫଳତା ପଛରେ ଏପରି ଜଣେ ଜଣେ ଲୋକଙ୍କର ହାତ ଅଛି ବୋଲି କେତେଜଣ ବୁଝନ୍ତି ? କେତେଜଣ ସେମାନଙ୍କର ବାର୍ତ୍ତା ଏ ଦେଶକୁ ବୋହି ଆଣନ୍ତି ? ଚିତ୍ତଭାଇ ବିଦେଶ ଯାଇ ମଧ୍ୟ ଆମମାନଙ୍କୁ ଭୁଲି ଯାଆନ୍ତି ନାହିଁ । ଆମମାନଙ୍କ ପାଇଁ ଖାଦ୍ୟ ସଂଗ୍ରହରେ ଲାଗି ପଡ଼ନ୍ତି । ଆମ ହୃଦୟର ଗୋଟେ ଫାଳ ଝରକାକୁ ସେ କଲ୍‌ଲ୍‌ଙ୍କ ଆଡ଼କୁ ଖୋଲି ଦେଇଛନ୍ତି । ରାସ୍ତା କଡ଼ର ବୁଦାକୁ ଦେଖିଲେ ମୋର କଲ୍‌ଲ୍‌ଙ୍କ କଥା ମନେ ପଡ଼ିଯାଏ । କୋପେନ୍ ହେଗେନ୍‌ର ଏକ ସଭାକୁ ଲକ୍ଷ୍ୟ ରଖି କଲଲ୍ ୧୦୦ ମାଇଲ୍ ଚାଲିକି

ଆସିଲେ । କୋପେନ୍ ହେଗେନ୍‌ରେ ପହଞ୍ଚିବା ପରେ ତାଙ୍କ କଠୋଉର ଶବ୍ଦକୁ ଶୁଣି ସହରୀ ପିଲାମାନେ ତାଙ୍କୁ ପରିହାସ କଲେ । ହନ୍ତସନ୍ତ କଲେ । କଲ୍‌ଲ୍ ତାଙ୍କ ସହିତ ଝଗଡ଼ା କରି ସେଇଠି ରହିଗଲେ ନାହିଁ । ଲକ୍ଷ୍ୟ ତାଙ୍କର ଆଗରେ । ଏମିତି ଏକ ରାସ୍ତା କଡ଼ର ବୁଦା ମୂଳେ ସେ ତାଙ୍କର କଠୋଉକୁ ଲୁଚାଇ ଦେଇ ଖାଲି ପାଦରେ ସଭାକୁ ଗଲେ । ଚିତ୍ତଭାଇଙ୍କ କଥା ମନେ ପଡ଼େ, 'କଟକ ଆସି ଆମେ ବାଦାମବାଡ଼ି ବରମଣ୍ଡପରେ ରହିଯିବା ନାହିଁ । ହାଇକୋର୍ଟ ପର୍ଯ୍ୟନ୍ତ ଯିବା ।' କ୍ରୀଷ୍ଟେନ୍ କଲ୍‌ଲ୍‌ଙ୍କ ବିଷୟ ଆମ ସମସ୍ତଙ୍କୁ ଅନେକ ସାହସ ଦିଏ ।

''ଶିଳାତୀର୍ଥ'' କୁ ପଢ଼ିଲେ ନଦୀରେ ଭାସି ଯାଉଥିବା ମଣିଷ କୂଳ ପାଇଯାଏ । ଆମେମାନେ ମଧ୍ୟ କେତେକ ତାହା ପାଇଲୁ । ବହିଟିକୁ ପାଇ ମନେ ହୁଏ ନିଜ ପାଇଁ ନୁହେଁ, ଚିତ୍ତଭାଇ ଆମମାନଙ୍କ ପାଇଁ ହିମାଳୟ ଯାଇଥିଲେ । କେଉଁଠାକୁ କାହା ଘରକୁ ଗଲେ ସେ ବଡ଼ଲୋକୀ ଦେଖେଇ ହୁଅନ୍ତି ନାହିଁ । ସମସ୍ତଙ୍କ ସଙ୍ଗେ ମିଶିଯାନ୍ତି । ହିମାଳୟର ଛାତ୍ର ସଦନ ଘରେ ମଧ୍ୟ ସେ ଶାଗ ଭଜା ଲଗେଇ ଭାତ ଖାଇଛନ୍ତି । ତାଙ୍କ ଘରପାଇଁ ପାହାଡ଼ି ଜାଗାରେ ତଳୁ ପାଣି ବୋହିକରି ଆଣିଛନ୍ତି । ଅତି ସାଧାରଣ ଲୋକ ଚିତ୍ତଭାଇ । ହିମାଳୟକୁ ଆସିଥିବା ଯାତ୍ରୀଙ୍କ ଭିତରେ ମିଶିଯାଇ ସେ ବି ତୀର୍ଥଯାତ୍ରୀଟିଏ ହୋଇଯାଉଛନ୍ତି । ରକ୍ତ ମାଂସର ମଣିଷ ସେ । ଆରତୀର ଘଣ୍ଟା ଧ୍ୱନି ଶୁଣି ଭକ୍ତିରେ ଗଦ୍ ଗଦ୍ ହୋଇଯାଇଛନ୍ତି । ସାରା ହିମାଳୟକୁ ପାଦରେ ପାରି ହୋଇଛନ୍ତି । ତଥାପି ଫେରିଆସିଲା ପରେ ହିମାଳୟରେ ଥିବା ବାହାରର ସେଇ ଭଗବାନ ଛାତି ଭିତରେ ଥିବା ଭଗବାନଙ୍କ ଆଗରେ କେତେ ଯେ ଅଜ୍ଞ ସେକଥା ଅବଶ୍ୟ କହିପକାନ୍ତି । 'ଏ କୌନ୍ ଚିତ୍ରକାର ହେ..' ଗୀତଟିକୁ ଶୁଣି, କବି ଚିତ୍ରକାରଙ୍କୁ ଖୋଜୁଛନ୍ତି ବୋଲି ଭାବୁଥିଲି । ଏହାକୁ ଏକ ପ୍ରଶ୍ନବାଚୀ ହିସାବରେ ଶୁଣୁଥିଲି । ଆଲୋଚନାଚକ୍ରରେ ଚିତ୍ତଭାଇଙ୍କ ଠାରୁ ଏଇ ଗୀତର ଦୃଷ୍ଟାନ୍ତ ଶୁଣି ବୁଝିଲି ଯେ ଏହା କେବଳ ଏକ ପ୍ରଶ୍ନବାଚୀ ନୁହେଁ । କବି ହିମାଳୟକୁ ଦେଖି ଏତେ ପୂରି ଉଠୁଛନ୍ତି ଯେ, ତାଙ୍କୁ ଭଗବାନଙ୍କୁ ପାଇଲା ପରି ଲାଗୁଚି । ତେଣୁ ସେ ବିସ୍ମୟ ହୋଇ ତୁମେ ଚିତ୍ରକାର କିଏ ବୋଲି କହୁଛନ୍ତି । ଚିତ୍ତଭାଇଙ୍କର ଆଉ ଏକ ପ୍ରିୟ ଗୀତ ହେଉଛି 'ସଜନୀରେ ଝୁଟ୍ ମତ୍ ବୋଲ...' ଚିତ୍ତଭାଇଙ୍କ ଠାରୁ ଆଣି ଏହାକୁ ଆମେ ମଧ୍ୟ ଆମର ପ୍ରିୟ ଗୀତ କରିନୁ । ମୁଁ ଏହାର ଚଳଚ୍ଚିତ୍ର ଗୁଡ଼ିକୁ ମଧ୍ୟ ଖୋଜିଲୋଡ଼ି ଦେଖି ଦେଇଛି । ଆମର ଶୂନ୍ୟ ଜୀବନରେ ଯେତିକି ଅଂଶ ପୂରିଛି ତାହା ନିଶ୍ଚିତ ଭାବେ ଚିତ୍ତଭାଇଙ୍କର । ଚିତ୍ତଭାଇ ସାଇକୋଲୋଜି ପଢ଼ିଥିବାରୁ ଆମ ମନରେ ଅଭାବ ଭାବ ଆସିବାକୁ ଦିଅନ୍ତି ନାହିଁ । Inferiority Complexକୁ ଆମ ଭିତରେ ପଶିବାକୁ ସୁଯୋଗ ଦିଅନ୍ତି ନାହିଁ । ବହି

ପ୍ରତି ସେ ଆମର ଆଗ୍ରହ ବଢ଼ାଉଛନ୍ତି । ଶବ୍ଦକୋଷ ପ୍ରତି ଶ୍ରଦ୍ଧା ସୃଷ୍ଟି କରିଛନ୍ତି । କେତେକଣ ପୁରସ୍କାର ସେ ଏ ଭିତରେ ପାଇଗଲେଣି । ତଥାପି ସେ ଜଣେ VIP ହେଇଯାଇ ନାହାନ୍ତି । ଆମଠାରୁ ଦୂରେଇ ଯାଇନାହାନ୍ତି । ଜଣେ ଶିକ୍ଷକ ହୋଇ ଆମମାନଙ୍କ ଭିତରେ ରହିଛନ୍ତି ।

"ଜୀବନ ବିଦ୍ୟାଳୟ" ପଢ଼ି ଆମେମାନେ ବିଦ୍ୟାଳୟ ରୂପେ ଜୀବନକୁ ପାଇଲୁ । ଚମ୍ପତିମୁଣ୍ଡାର ଜୀବନ ବିଦ୍ୟାଳୟରେ ହିଁ ଚିତ୍ତଭାଇଙ୍କର ଅସଲ ଓ ସର୍ବଶ୍ରେଷ୍ଠ ପରିଚୟ ମିଳେ । ତାଙ୍କର ଏଇ ଚାରି ବର୍ଷର ସମୟ ଆମକୁ ତାଙ୍କର ଅନ୍ୟ ସମୟ ଅପେକ୍ଷା ସବୁଠାରୁ ବେଶୀ ଭଲ ଲାଗେ । ଗୋଟିଏ ଶବ୍ଦରେ ତାଙ୍କୁ କହିବାକୁ ଗଲେ, ଆମେ ତାଙ୍କୁ ଜଣେ ଶିକ୍ଷକ ହିଁ କହିବା । ଲୋକେ କୁହନ୍ତି, ପିଲାଙ୍କ ମନରେ ଡର ନ ରହିଲେ ସେମାନେ କି ପାଠ ପଢ଼ିବେ ? କି ମଣିଷ ହେବେ ? ଚମ୍ପତିମୁଣ୍ଡାରେ ଶିକ୍ଷକ ଓ ଛାତ୍ର, କାହାର କାହା ପ୍ରତି ଡର ନଥିଲା । ସେମାନେ ସମସ୍ତେ ମଣିଷ ହୋଇ ବାହାରିଛନ୍ତି । ମଞ୍ଚରେ ଗାଇବା, ନାଚିବା ଓ ବଜେଇବା ଲୋକଙ୍କର ଆତ୍ମା ଯେପରି ଗୋଟେ, ଚମ୍ପତିମୁଣ୍ଡାରେ ଛାତ୍ର ଓ ଶିକ୍ଷକ ମାନଙ୍କର ଆତ୍ମା ସେହିପରି ଗୋଟେ ହୋଇ ରହିଥିଲା । ଶେଷବର୍ଷର ପିଲାମାନେ ପଢ଼ିଥିବା ସିଲାବସ୍‌ରେ ପରୀକ୍ଷା ଦେବାପାଇଁ ଅନୁମତି ମିଳିଲା ନାହିଁ । ପିଲାଙ୍କ ତରଫରୁ ଚିତ୍ତଭାଇ ସେଦିନ ଅଧରାତି ପର୍ଯ୍ୟନ୍ତ ଅନୁଗୁଳ ସର୍କିଟ୍ ହାଉସ୍‌ରେ ଲଢ଼ିଲେ । ପରେ ସେହି ସରକାରୀ ବାବୁମାନଙ୍କ ସହ ଚିତ୍ତଭାଇ ଆଉ ଝଗଡ଼ା କରିନାହାନ୍ତି କି ତାଙ୍କ ଭଳି ହୋଇଯାଇ ନାହାନ୍ତି । ସେଦିନ ରାତିରେ ସେ କେତେ ହତାଶ ହୋଇ ଅନୁଗୁଳରୁ ଚମ୍ପତିମୁଣ୍ଡାକୁ ଫେରିଆସି ନଥିବେ ? ଏତେ ବ୍ୟଥିତ ହୃଦୟରେ ସେ କିପରି ଅନ୍ଧାର ରାତିରେ ସାଇକେଲ ଚଳାଇଥିବେ ? ତାଙ୍କ ହୃଦୟରେ କେତେ ଶୂନ୍ୟସ୍ଥାନ ସୃଷ୍ଟି ହୋଇ ନଥିବ ? ଆଜି ସେ ଯେତେ ଉତ୍ସାହିତ ଦେଖାଯାଉଥିଲେ ମଧ ସେଦିନର ଶୂନ୍ୟସ୍ଥାନ ଆଜି ମଧ ତାଙ୍କ ହୃଦୟରେ ନିଶ୍ଚୟ ଥିବ । ଜୀବନ ବିଦ୍ୟାଳୟରେ ପଢ଼ିବା ପରେ ତାଙ୍କୁ ଦେଖି ମୋର ଏଇକଥା ମନେ ପଡ଼େ । ମନରେ ବହୁତ ଦୁଃଖ ହୁଏ । ଏଭଳି ଜଣେ ସାହାସୀ ଲୋକଙ୍କୁ ମୁଁ ହୁଏତ କେତେ ମୂର୍ଖତାପୂର୍ଣ୍ଣ ବ୍ୟବହାର ଦେଇଥିବି ଭାବି ମନ ଗୁଣି ହୁଏ । ଚିତ୍ତଭାଇଙ୍କର ଏହି ଚାରିବର୍ଷର ସମୟ ଆମମାନଙ୍କ ପାଇଁ ଆନ୍ତରିକତାର ଏକ ଉଦାହରଣ । ଉତ୍ସର୍ଗୀକୃତ ଶିକ୍ଷକ ଜୀବନର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

ପ୍ରଦୀପ କୁମାର ସାହୁ
*ନୂଆପାଟଣା, ଭାୟା : ଟିଗିରିଆ, କଟକ*

# ମନୀଷୀ ଚିତ୍ତଭାଇ

ଅଧ୍ୟାପକ ଶ୍ରୀ ଚିତ୍ତରଂଜନ ଦାସ ଭାରତବର୍ଷର ଜଣେ ଅନନ୍ୟ ବ୍ୟକ୍ତିତ୍ୱ । ମହାନ୍ ଲେଖକ, ବାଗ୍ମୀ, ସମାଜ ସଂସ୍କାରକ, ପ୍ରାବନ୍ଧିକ, ସମାଲୋଚକ, ଶିକ୍ଷାବିତ୍, ବହୁଭାଷାବିତ୍, ମହାତ୍ମାଗାନ୍ଧୀ, ରବୀନ୍ଦ୍ରନାଥ, ଶ୍ରୀଅରବିନ୍ଦଙ୍କ ଶିକ୍ଷାଦର୍ଶନର ବିଶିଷ୍ଟ ଗବେଷକ ଓ ପ୍ରସାରକ, ଓଡ଼ିଶାରେ ପୂର୍ଣ୍ଣାଙ୍ଗ ଶିକ୍ଷା ଆନ୍ଦୋଳନର ଜଣେ ପ୍ରମୁଖ କର୍ଣ୍ଣଧାର ରୂପେ ଚିତ୍ତଭାଇ ପ୍ରକୃତରେ ଜଣେ ଅନମନୀୟ ବୀର । ତାଙ୍କର ଯୁଦ୍ଧ କିନ୍ତୁ ଅସିର ନୁହେଁ, ମସୀର । ନବଚେତନାରେ ବୁଦ୍ଧିମନ୍ତ ଚିତ୍ତରଂଜନ ସାଧାରଣଙ୍କ ଭଳି ଯେନ ତେନ ପ୍ରକାରେ ଜୀବନଯାପନ କରିବାକୁ ସୁଖ ପାଇ ନାହାନ୍ତି । ତାଙ୍କର ଗତି ଝଂଜା ମଧ୍ୟରେ, ଜୀବନ ତାଙ୍କର ତପ୍ତ ବାଲୁକାର ମରୁଭୂମି, ଶଯ୍ୟା ତାଙ୍କର ଭୀଷ୍ମଙ୍କର ଶରଶଯ୍ୟା । ମଣିଷର ସାଧାରଣ ସୁଖ ତାଙ୍କୁ କେବେ କେଉଁଠି ତୃପ୍ତି ଦେଇନି । ସେ କର୍ମଯୋଗୀ, ବିରାମହୀନ ଅଗ୍ରଗତିରେ ବିଶ୍ୱାସୀ । ତାଙ୍କର ଜୀବନର ସମସ୍ତ ଚେଷ୍ଟା ନିରର୍ଥକ, ଲକ୍ଷ୍ୟହୀନ ନୁହେଁ । ଲକ୍ଷ୍ମଣଙ୍କ ଭଳି ସେ ବୀତନିଦ୍ର, ସଦା ଜାଗ୍ରତ । ପ୍ରାଚୀନ ଯୁଗର ଋଷିମାନଙ୍କ ଭଳି ଚେତନାର ଗୋଟିଏ ଶିଖରରୁ ଅନ୍ୟ ଏକ ଉନ୍ନତ ଶିଖରକୁ ତାଙ୍କର ଅଭିଯାନର ଅନ୍ତ ନାହିଁ । କାହାର ସମାଲୋଚନାକୁ ଭ୍ରୂକ୍ଷେପ ନ କରି ଛଳନା, କ୍ଷୁଦ୍ରତା, ବ୍ୟଭିଚାର, ଭାକ୍ତିକ ମିଥ୍ୟା, ଶଠତା ବିରୁଦ୍ଧରେ ସେ ଉଦ୍ଧତ ତର୍ଜନୀ, ଅଜ୍ଞାନରୁ ଜ୍ଞାନ, ଜ୍ଞାନରୁ ଅଧିକ ଜ୍ଞାନ ଦିଗରେ ସତ୍ୟ ଅନୁସନ୍ଧାନୀ ତାଙ୍କର ମନ ଏବେ ବି ବାର୍ଦ୍ଧକ୍ୟକୁ ପ୍ରତ୍ୟାଖ୍ୟାନ କରି ଚିର ତରୁଣ ଯୋଦ୍ଧା ଭଳି ଅଭିଯାନ ନିରତ । ଚେତନାର ଯୁଦ୍ଧରେ ସେ ଏକ ଅନମନୀୟ ମହାବୀର । ଶ୍ରୀଅରବିନ୍ଦଙ୍କ 'ସାବିତ୍ରୀ' ଭାଷାରେ ତାଙ୍କ ପାଇଁ-

A battle is joined between the true and false
A pilgrim sets out for the divine Light"

ସେ ଏଇ ଯୁଦ୍ଧର ମହା ସାରଥୀ । ଦିବ୍ୟ ଜୀବନ ପଥର ଚିର ଅଭିଯାତ୍ରୀ । ସତ୍ୟପାଇଁ ଯୁଦ୍ଧ ଚାଲିଛି ତାଙ୍କ ଅନ୍ତରରେ ଓ କର୍ମ ଜୀବନରେ, ସଂସାର ମଧ୍ୟରେ ଅଜ୍ଞାନ ଓ ମିଥ୍ୟା ବିରୁଦ୍ଧରେ ସେ ସୃଷ୍ଟି କରିଛନ୍ତି ଦୁଇ ଶତାଧିକ ପୁସ୍ତକ ପୁସ୍ତିକା, ଯାହା ବଜ୍ରତୁଲ୍ୟ ପଶୁଧର୍ମୀ ଜଡ଼ବାଦୀ ମଣିଷର ଛାତି ଥରାଇ ଦିଏ, ଦୃଷ୍ଟି ବଦଳାଇ ଦିଏ । ଓଡ଼ିଶାରେ ଶ୍ରୀଅରବିନ୍ଦ ସାହିତ୍ୟ-ଦର୍ଶନକୁ ଲୋକପ୍ରିୟ କରିବାରେ ଯେଉଁ କେତେଜଣ ସ୍ମରଣୀୟ ସାହିତ୍ୟିକଙ୍କର ଉଲ୍ଲେଖନୀୟ ଅବଦାନକୁ ଆମେ ସବୁ ଶ୍ରୀମା-ଶ୍ରୀଅରବିନ୍ଦପ୍ରେମୀ କୃତଜ୍ଞତାର ସହ ସର୍ବଦା ସ୍ୱୀକାର କରୁ ସେମାନଙ୍କ

ମଧ୍ୟରେ ମନୀଷୀ ଚିତ୍ତରଂଜନ ଦାସ ବୋଧେ ଶ୍ରେଷ୍ଠ ।

ସେ ମୋର ଜ୍ୟେଷ୍ଠ ଭ୍ରାତା ତୁଲ୍ୟ ଅନ୍ତରଂଗ, ବନ୍ଧୁ ଓ ସମାଲୋଚକ, ପ୍ରଶଂସକ ମଧ୍ୟ । ତାଙ୍କ ସହ ପାଠଚକ୍ର ଆନ୍ଦୋଳନରେ ଓ ପୂର୍ଣ୍ଣାଙ୍ଗ ଶିକ୍ଷା ଆନ୍ଦୋଳନରେ ୧୯୬୪-୬୫ରୁ ମୁଁ ବିଭିନ୍ନ ଭାବେ ସକ୍ରିୟ ରୂପେ ସଂପୃକ୍ତ । ଆମ ଭଳି ଭାକ୍ତିକ ଧାରାରେ ଅନୁଗାମୀଙ୍କ ପାଇଁ ତାଙ୍କର ବିରକ୍ତି ନାହିଁ, କିନ୍ତୁ ଆମ କାର୍ଯ୍ୟଧାରାରେ ସେ ଏତେ ବିଶ୍ୱାସୀ ସଂଭବତ ନୁହଁନ୍ତି । ଆମ ଭିତରେ ସିଏ କେଉଁଠି କି ପ୍ରାଚୀନତା ବା ଧାର୍ମିକତାର ଗନ୍ଧ ପାଆନ୍ତି ବୋଧେ । ମାତ୍ର ଆମେ ସାଂପ୍ରଦାୟିକତାର ଊର୍ଦ୍ଧ୍ୱରେ, ବିଶ୍ୱ ମାନବିକତା ଓ ଏକତ୍ୱ ଦିଗରେ ଏକାନ୍ତ ଅନୁରକ୍ତ, ଏ ସଂପର୍କରେ ସେ ନିଶ୍ଚିତ ବୋଲି ମନେହୁଏ ନାହିଁ । ଆମର ସାଧନାର ଭିତ୍ତି ଯଦି ଭକ୍ତି, ତାଙ୍କର ବୋଧହୁଏ ସାଧନାର ଭିତ୍ତି ଜ୍ଞାନ । ଆମେ କିନ୍ତୁ ଜ୍ଞାନ, ଭକ୍ତି, କର୍ମ ଯୋଗର ସମନ୍ୱୟ ପାଉ ଶ୍ରୀଅରବିନ୍ଦଙ୍କ ପୂର୍ଣ୍ଣାଙ୍ଗ ଦର୍ଶନ ଓ ପୂର୍ଣ୍ଣଯୋଗରେ । ଏଣୁ ବାହାରକୁ ଯଦି କିଛି ଅମେଳ ପରିଲକ୍ଷିତ ହୁଏ, ତାହାର ପ୍ରକୃତ ସ୍ୱରୂପ ଅନ୍ୟ କିଛି ।

ଚିତ୍ତଭାଇ ଆମ ଭଳି ଶ୍ରୀମାଙ୍କ ସନ୍ତାନ, ସନ୍ତାନ କାହିଁକି ପ୍ରିୟ ସନ୍ତାନ । ଶ୍ରୀମା-ଶ୍ରୀଅରବିନ୍ଦଙ୍କ ଦିବ୍ୟ ଜୀବନ- ପୂର୍ଣ୍ଣଯୋଗ- ପୂର୍ଣ୍ଣାଙ୍ଗ ଶିକ୍ଷା-ପାଠଚକ୍ର ଆନ୍ଦୋଳନକୁ ତାଙ୍କର ଅବଦାନ ଅକଳ୍ପନୀୟ ।

ଓଡ଼ିଶାରେ ଜନ୍ମ ନ ହୋଇଥିଲେ ଚିତ୍ତଭାଇ ସମ୍ଭବତଃ 'ନୋବେଲ ପ୍ରାଇଜ୍' ପାଇ ପାରିଥାନ୍ତେ । ତାଙ୍କ ଭଳି ଏପରି ପ୍ରତିଭାଧର, ନିରଳସ କର୍ମୀ, ବହୁ ଶାସ୍ତ୍ରବିତ୍, ବହୁ ପୁସ୍ତକ ପ୍ରଣେତା ଏହି ଶତାବ୍ଦୀରେ ଓଡ଼ିଶାରେ କାହିଁକି ଭାରତ ବର୍ଷରେ ବିରଳ । ସମ୍ଭବତଃ ତାଙ୍କ ଜନ୍ମ ଦଶାରେ ଏ ଜାତି ଏହା ବୁଝି ନ ପାରେ, ତାଙ୍କର ଜୀବନର ଅବସାନ ପରେ ବି ସେ ଆପଣାର ବହୁମୁଖୀ ପ୍ରତିଭା ହେତୁ ଯୁଗ ଯୁଗ ଧରି ଅମର ରହିବେ ।

ପୂର୍ଣ୍ଣଚନ୍ଦ୍ର ମହାପାତ୍ର
*ଭକ୍ତନିବାସ, ପୁରୀ*

# ଭାଇ ହେବ ତ ଏମିତି

"ମନ୍ଦିର ସମାନ ଗ୍ରାମ ଚାଟଶାଳୀ ସବୁ ସ୍ମୃତି ପରେ ଟେକିଚି ମଥା,
ପଢ଼ିଥିଲି ଯହିଁ ପ୍ରଥମ ଅକ୍ଷର, ଶିଖିଥିଲି ଯହିଁ ପ୍ରଥମ କଥା ।"

ସବୁଜ ଯୁଗର ଯଶସ୍ୱୀ କବି କାଳିନ୍ଦୀଚରଣଙ୍କର ଏଇ କବିତା ପଦକ ଯେଉଁ

ଗୁରୁଜୀମାନେ ରୋଇ ଦେଇଥିଲେ ଆମ ଭଳି ଅବୋଧ, ଅଜ୍ଞାନ, ବାଳକବାଳିକା ମାନଙ୍କ କଅଁଳ, ଛନ ଛନ ସତସତିଆ ବୁକୁର ଭୂଇଁ ଉପରେ, ସେମାନଙ୍କ ମଧ୍ୟରୁ କିଏ କୁଆଡ଼େ ସମୟ ସୁଅର ଭଉଁରୀ ଭିତରେ ହଜିଗଲେ ମଧ ଏବେ ବି କେଇଜଣ ଶତାୟୁ ସୀମାକୁ ଛୁଇଁବାକୁ ମଥାରେ ପଗଡ଼ି ଭିଡ଼ି, ତରୁଣର ତେଜଧରି ସିଧାସଳଖ ଧାଇଁଛନ୍ତି ଠୋ ଠୋ ହସ ବୁଣି ବୁଣିକା ଆମରି ଆଗରେ । ସତରେ ସେଇମାନେ ଆଜି ଆମ ପାଇଁ ଏକାନ୍ତ ପୂଜନୀୟ, ବରଣୀୟ, ମାନନୀୟ, ପ୍ରାତଃ ସ୍ମରଣୀୟ ସିଦ୍ଧ ପୁରୁଷ । ସେମାନଙ୍କ ମଧ୍ୟରୁ ଜଣେ ପରମ ପୂଜ୍ୟ ଗୁରୁଜୀ ଭକ୍ତଚରଣ ମହାନ୍ତି ହେଲେ ସେଦିନ ସକାଳେ ଅଷ୍ଟମ ଶ୍ରେଣୀର ଅନାମଧେୟ ଆଜ୍ଞାବହ ବୀରକିଶୋରକୁ ବଡ଼ ପାଟିରେ ବୁଝେଇ ଦେଇଥିଲେ ''ଭାଇ ହବ ତ ଏଇମିତିକା । କାଳିନ୍ଦୀଚରଣଙ୍କ ''ମାଟିର ମଣିଷ'' ର ଉପନ୍ୟାସ ଖଣ୍ଡକ ପଢ଼ାଇ ପଢ଼ାଇ । କିଏ କାଳିନ୍ଦୀଚରଣ, ଉପନ୍ୟାସ କ'ଣ, କାହିଁକି ପଢୁଛୁ ଏ ପାଠ- ଏସବୁ କଥା କିଛି ଠଉରେଇବାର ବେଳ ହେଇଥିଲା କି ନାହିଁ, କେବଳ ଗୁରୁଜୀଙ୍କ ବଳିଷ୍ଠ, ବାଘୁଆ ଚେକାମୁହଁକୁ ଡରିମରି ଆବାକାବା ହେଇ ଅନାଇ ପିଇଯିବାକୁ ବାଧ ହେଇଥିଲୁ ବରଜୁ ଛକଡ଼ି, ହରି ମିଶ୍ରଙ୍କର କାହାଣୀକୁ ।

''ଭାଇ ହବ ତ ଏଇମିତିକା'' କଥା ପଦକ ସେଇ ବଅସର ଅଭୁଲା ସ୍ମୃତି ହୋଇରହିଗଲା ପଛକୁ ପଛ ସେଥିରେ କିଛି ଜୁଆ ପଡ଼ିଲା ବୋଲି । ସେଇ ସାଲର ଖରାଛୁଟିରେ ଗାଁ ଇସ୍କୁଲ ପଡ଼ିଆକୁ ଆସିଲେ ଦଳେ ମରଦ, ମାଇପି ମଣିଷ । ସମସ୍ତଙ୍କର ଧଳା ମୋଟା ଧୋତି ଶାଢ଼ୀ, ସବୁ ମୁଣ୍ଡରେ ଧଳାଟୋପି, ଧଳା ଗାମୁଛା, ଧଳା ଶାଢ଼ୀର ପଣତ କାନି, କାନ୍ଧରେ ଧଳା ମୁଣି ଆଉ ଅରଟ ଫିତା । ଛାଉଣି ପଡ଼ିଲା, ସଭା ବସିଲା, ସବୁ ମୁହଁରୁ ଶୁଭିଲା ସେଇ ଭାଇ, ଭଉଣୀ ଡାକ, କିଏ ଏମାନେ କାହିଁକି ଚାଲିଛନ୍ତି ଗାଁରୁ ଗାଁ, ବରୀରାମଚନ୍ଦ୍ରପୁର ବାଲିଆ ହରିପୁର, ଗୋଳକୁଣ୍ଡ, ମେଣ୍ଢାବଂଧ ଡିହ, ରାଆପଡା, କୋଳପୁର । ପୁଣି ଏଇଠୁ କାଲି ସକାଳକୁ ମୁଣ୍ଡମାଳ, ପାଟପୁର, ସାଲେପୁର, ନେଉଳପୁରରୁ ହରିଦାସପୁର ରେଲଷ୍ଟେସନ । କ'ଣ ଏମାନଙ୍କର କାମ ସବୁ ଜଣାପଡ଼ିଗଲା ସେଇ ସଂଜ ସଂଜୁଆ ସଭାର ଆଲୋଚନାରୁ । ରାତିକୁ ଭାତଡାଲମା ପତର ପାଖରେ ଆମ ପରିକା ଇସ୍କୁଲ ପିଲାଙ୍କୁ କେଇପଦ ମହୁଲିଆ ମିଠା ସ୍ନେହାଶିଷ ମଧରେ ଭାଇ ଭାବ ଖେଳାଇ ଦେବାର ଆନ୍ତରିକ ଆବେଦନ ।

ମନ ଚଢ଼େଇଟି ଡେଣା ଝାଡ଼ିଲା । ପହିଲି ଆଷାଢ଼ ବାସି ଇସ୍କୁଲ ଫିଟିଲା । ପାଦ ଉଠିଲା ସେଇ ଆଡ଼କୁ । ସେଇ ପୁଣ୍ୟଭୂଇଁ ଯାଜପୁର ବାଟରେ ପୁଣି ଭେଟ

ସେଇ ପଦଯାତ୍ରୀଙ୍କୁ । କେତେଥର କେତେ ସଭା ଯାଜପୁର ହାଇସ୍କୁଲ, ବିରଜା ହାଇସ୍କୁଲ, ଯାଉଁଳି ବଂଧରୁ ଗୋଖନା କଲେଜ ପଡ଼ିଆ ସବୁ ସଭାକୁ କିଶୋର ମନ ଆଗଭର । ସବୁଠାରେ ଇସ୍କୁଲ କଲେଜ ପିଲାଙ୍କୁ ଅଧିକ ସ୍ନେହ ସରାଗଭରା ସମ୍ବୋଧନ ।ସେଇଠୁ ମିଳିଗଲା ସ୍ୱରାଜ ସଂଗ୍ରାମର ସୂତ୍ରଧରମାନଙ୍କ ପରିଚୟ ଗୁରୁଜୀମାନଙ୍କ ମାଧମରେ । କିଏ ଗୋପବାବୁ, ନବବାବୁ, କିଏ ରମାଦେବୀ ମାଳତୀ ଦେବୀ, କିଏ ଶରତବାବୁ ଚୁନି ଅପା, ବୁଲୁ ଭାଇ ଆଉ ଗୁରୁଜୀ ଶତ୍ରୁଘ୍ନନାଥ ଚିତ୍ତରଂଜନ ଦାସ- ସମସ୍ତେ ନିଜ ନିଜର ଆସନ ଅଧିକାର କରିନେଲେ କିଶୋର, ତରୁଣ, କଅଁଳ ବଅସର କଉତୁକିଆ ଛାତ୍ରଛାତ୍ରୀଙ୍କ ମୁକୁଳା ହୃଦୟ ମଧରେ । ସବୁଠାରୁ ଭାରି ବଡ଼କଥାଟାଏ ହେଲା ଭାଇ ପଣିଆର ପ୍ରସାର । ପୂଜ୍ୟ ଗୁରୁଜୀ ମଣ୍ଡଳୀ ଅଚ୍ୟୁତାନନ୍ଦ, ପୂର୍ଣ୍ଣାନନ୍ଦ, ନାରାୟଣ ଚନ୍ଦ୍ର, ନିମାଇଁ ବଲ୍ଲଭଙ୍କ ପ୍ରେରଣାରେ ପାଣ-ପଠାଣ-ବ୍ରାହ୍ମଣମାନଙ୍କର ପଂକ୍ତି ଭୋଜନର ପାରୁଶ ପଡ଼ିଲା ଦଶାଶ୍ୱମେଧ ଘାଟରୁ ସଦାବର୍ତ୍ତ ମଠ ସବୁଠାରେ । ବୈତରଣୀର ବେଳାଭୂମି, ବାରୁଣୀ ପଡ଼ିଆର ବାଲି କଣା, ବିରଜା ମଣ୍ଡଳର ସମନ୍ୱୟ ଭାବ, ସବୁ ରୂପାୟିତ ହୋଇଛି ଯେଉଁ ଯଜ୍ଞପୁର ଅଥବା ଯାଜପୁରର ପାଣି ପବନରେ ସେଇଠି ଉଦାର ମାନବିକତାର ମିଳନ ଭାବ ଅଧିକରୁ ଅଧିକ ପ୍ରସାରିତ ହେବା ସଙ୍ଗେ ସଙ୍ଗେ ଦୃଢ଼ୀଭୂତ ହୋଇଗଲା ସମଗ୍ର ମୁଲକରେ ।

ସମୟ ଚକ ଘୂରି ଆସିଲା । ସେଦିନର ତରୁଣ ଛାତ୍ର ରୂପାନ୍ତରିତ ହେଲା ଧଳା ଧୋତି, ଧଳା ଜାମା ଆଉ ଧଳା ଫୁଲ ଖଡ଼ିକୁ ଆଶ୍ରା କରି ଆଉ ଗୋଟାଏ ବେଶରେ । ଆଗରେ ଛାଇଶୀତଳ ଅନୁଗୁଳ ଅଂଚଳ । ବାଜି ରାଉତ ଛାତ୍ରାବାସ, ମୌଳିକ ତାଲିମ ମହାବିଦ୍ୟାଳୟ । ଆଉ କିଛିବାଟ ଆଗକୁ ରସାଳ, ବଉଳ, ତମାଳ, ନାରିକେଳ, ଚମ୍ପା, ନାଗେଶ୍ୱରର ଭୂଇଁ ଚମତି ମୁଣ୍ଡା, ଜୀବନ ବିଦ୍ୟାଳୟର ପ୍ରୟୋଗ ଶାଳା । ପରମପୂଜ୍ୟ ଅଧକ୍ଷ ମହୋଦୟ ଶତ୍ରୁଘ୍ନ ନାଥଙ୍କର ମହାବିଦ୍ୟାଳୟର ଗୁରୁଛାତ୍ରମାନଙ୍କୁ ପ୍ରଥମ ଉଦ୍‌ବୋଧନ ବାଜିରାଉତ ଛାତ୍ରାବାସ ପରିସରରେ । ଆଗାମୀ କାଲି ସକାଳୁ ସବୁ ଛାତ୍ର, ସବୁ ଗୁରୁଜୀ, ଛାତ୍ରାବାସର ଅନ୍ତେବାସୀ ଏବଂ ନବ-ମାଳତୀ ସବୁ କର୍ମୀଙ୍କର ଆରମ୍ଭ ହେବ ପ୍ରଥମ ପଦଯାତ୍ରା ଚମତି ମୁଣ୍ଡାକୁ । ଜୀବନ ବିଦ୍ୟାଳୟ ବିଂଧାଣୀ- କାରିଗର କର୍ମୀ-କୃଷକ-ଶିକ୍ଷକ-ସେବକ ତରଳ- ସରଳ-ଚଟୁଳ- ଚଂଚଳ ଚିତ୍ତଭାଇଙ୍କ କର୍ମ ଭୂଇଁକୁ । ସେତେବେଳକୁ 'ଭାଇ'ଡାକଟା ଭାରି ମିଠା ମିଠା ଲାଗୁଥିଲା । ଆମ ମହାବିଦ୍ୟାଳୟ ଅଗଣାରେ ବେଳେ ବେଳେ ଆମ ସ୍ନେହ ବତ୍ସଳ ଅଧକ୍ଷ ମହୋଦୟଙ୍କ ରସାଳ ଆହ୍ୱାନ

କାଳୀଭାଇ, ବଳୀଭାଇ, ବିଷ୍ଣୁଭାଇ, ଶରଭାଇ,ଇତ୍ୟାଦି ।

ଆମ ନାଥ ମହୋଦୟ ଆଜିର ଶିକ୍ଷାଜଗତରେ ମହାନ୍ ଗୁରୁଜୀ । ଏହା କେବଳ ଆମ ବିଚାରରେ ନୁହେଁ, ସର୍ବାନ୍ତଃକରଣରେ ସଦାସ୍ୱୀକୃତ ସେଇ ପୂଜ୍ୟ ଗୁରୁଜୀଙ୍କ ମୁହଁରୁ 'ଚିତ୍ତଭାଇ' ସମ୍ବୋଧନ ଶୁଣିବା ଏବଂ ଆମପରି ଗୁରୁଛାତ୍ରଙ୍କୁ ଅଧକ୍ଷ ନିଜେ ଭାଇ ବୋଲି ସସ୍ନେହ ସମ୍ବୋଧନ କରିବାରେ ଆମମାନଙ୍କ ଅନ୍ତରରେ ଅନାବିଳ ଆନନ୍ଦର ଉଦ୍‌ବେଳନ ଘଟିଥିଲା ସେହି ସମୟରେ । ପୁଣି ଜୀବନ ବିଦ୍ୟାଳୟର ଛାଇଛାଇଆ ଅଗଣାରେ ତାଙ୍କର ମୁହଁରେ ''ଚିତ୍ତଭାଇଙ୍କ ପ୍ରୟୋଗ ପୀଠରେ ମୋ କୁନି କୁନି ଗୁରୁଭାଇଙ୍କ ମେଳ'' କଥା ଆମ ହୃଦୟର କ୍ଷୁଦ୍ର ସରସୀରେ ବିଶାଳ, ଉଦାର ମାନବିକତାର ଉର୍ମି ସୃଷ୍ଟି କଲା ସେଇ ଶୁଭ ମୁହୂର୍ତ୍ତରେ । ନିଜକୁ ନିଜେ ବୁଝାଇପାରିଲୁ ନାହିଁ କି ବିଶ୍ୱାସ କଲୁ ନାହିଁ କ'ଣ ଏଇ ପରିସର ଆଉ ପରିବେଶ । କେଉଁ ଏକ ପ୍ରାଚୀନ ଗୁରୁକୁଳରେ ଆମ ଆରୁଣୀ ଉପମନ୍ୟୁଙ୍କ ପ୍ରବେଶ, ଏଇ ତେବେ ପିଲାକାଳରେ ପୂଜ୍ୟ ଚିତ୍ତରଂଜନ ଦାସ ଆଉ ଆଜିର ଗୁରୁକୁଳାଚାର୍ଯ୍ୟ ଚିତ୍ତଭାଇ । ଅଣ୍ଟାରେ ଚାରିହାତୀ ଗେରୁଆ ଗାମୁଛା, ମୁଣ୍ଡରେ ଆଉଖଣ୍ଡେ ଗାମୁଛା ଠେକା, କାଂଧରେ କୋଦାଳ ଓଠରେ ମୃଦୁ ମୃଦୁ ମିଠା ହସ ଆଉ ହାତରେ ଗୁରୁକୁଳକୁ ପ୍ରବେଶ ପାଇଁ ସ୍ୱାଗତ ସଙ୍କେତ ।

କେଇଟା ଦଣ୍ଡ ଭିତରେ ଭାବ ଦିଆନିଆ, ଚିହ୍ନା ଜଣା, ଘେନାଘେନି ଆଉ ଆଶ୍ରମ ପରିକ୍ରମା ସରିଗଲା । ସରିଗଲା ଚୁଡ଼ା, ଗୁଡ଼ ଚକଟାର ଜଳଯୋଗାଣ ପର୍ବ, ଅଧକ୍ଷ ମହୋଦୟ ଆରମ୍ଭ କଲେ କର୍ମଶାଳାର ଉଦ୍‌ଘାଟନୀ ଉଦ୍‌ବୋଧନ । 'ଜୀବନ ଧର୍ମୀ ଶିକ୍ଷାର ଜୀବନବ୍ୟାପୀ ପ୍ରୟୋଗ' । ଏଥର ପାଟି ଖୋଲିଲେ କର୍ମଶାଳାର ପ୍ରଥମ ପରିକଳ୍ପନାକାର, ପ୍ରଥମ କାରିଗର (କର୍ମକର୍ତ୍ତା ନୁହେଁ କାରଣ ନିଜକୁ କୌଣସି କ୍ଷେତ୍ରରେ ଆଉ ଅନ୍ୟମାନଙ୍କଠାରୁ ଅଲଗା ମନେ କରି ଉଚ୍ଚଆସନ ମଣ୍ଡନ କରିବାକୁ କୁଣ୍ଠିତ ସିଏ), କର୍ମଠ ବଳିଷ୍ଠ, ଚେତନାଶୀଳ ଚିତ୍ତଭାଇ । ଚାଲିଲା ଭାଇଙ୍କ ଭାବଗର୍ଭକ, ବକ୍ତବ୍ୟ । ତାଙ୍କ ଉଜ୍ଜ୍ୱଳ ମୁଖମଣ୍ଡଳର ଜ୍ୟୋତି, ଚଂଚଳ, ଛଳଛଳ ଦୁଇ ଆଖି ଓ ଓଠର ଶିହରଣ, ଦୁଇ ବାହୁର ବିସ୍ତାରଣ, ଦୁଇପାଦର ଦୁର୍ବାର ଅଗ୍ରଗତି । ଗାଂଧୀ ମଣିଷର ପ୍ରୟୋଗାତ୍ମକ ବୁନିୟାଦୀ ଶିକ୍ଷା କ'ଣ, କିପରି ଏହା କାର୍ଯ୍ୟକାରୀ ହୋଇପାରିବ ଆମ ସମାଜରେ, କେଉଁ ପ୍ରକାର କର୍ମୀରେ ରୂପାନ୍ତରିତ ହେବେ ଆମ ତଥାକଥିତ ବହିଘୋଷା, ଛାଇମୂଳିଆ, ଧଳା ଧୋତି ପଂଜାବୀ ପିନ୍ଧା ଦେଶୀ ମାଷ୍ଟର, ଅଧ୍ୟାପକମାନେ, କ'ଣ କଲେ 'ସା ବିଦ୍ୟା ଯା ବିମୁକ୍ତୟେ' ବୈଦିକ ବାଣୀରେ ଉଦ୍‌ବେଳିତ ହେବେ ଆମ ଶିକ୍ଷକମଣ୍ଡଳୀ, ଆଉ ଆପଣା ଆପଣାର

ଅନୁଷ୍ଠାନରେ ବିଦ୍ୟାର୍ଥୀ, ବିଦ୍ୟାର୍ଥିନୀମାନଙ୍କର ହାତ ହୃଦୟ, ମସ୍ତିଷ୍କ ଇତ୍ୟାଦିର ସମ୍ମିଳିତ ବିକାଶକୁ ତ୍ୱରାନ୍ୱିତ କରାଯାଇ ପାରିବ ତଥା ଜୀବନଧର୍ମୀ, ଆନନ୍ଦଦାୟୀ ଶିକ୍ଷାକୁ ପ୍ରସାରିତ କରାଯାଇପାରିବ; କଥା ଓ କାମର କୌଶଳ ଓ କରଣୀରେ କିପରି ସବୁ ସମ୍ଭବ ହୋଇପାରିବ- ଚାଲିଲା ଆଳାପ, ଆଲୋଚନା, ଭାବର ଆଦାନପ୍ରଦାନ ।

ମୌଳିକ ଶିକ୍ଷାରେ ପ୍ରଶିକ୍ଷଣ ନେଇ ଆଗାମୀ କାଲିର ନାଗରିକ ନାଗରିକାମାନଙ୍କୁ ସମାଜ ଓ ସଂସାରର ଜୀବନ ସଂଗ୍ରାମ ପାଇଁ ପ୍ରସ୍ତୁତ କରାଇବାର ପ୍ରେରଣା ନେବାକୁ ଆମେ ଯେଉଁ ଅଜ୍ଞ, ଅକ୍ଷମ, ଅନଭିଜ୍ଞ, ଅଣ ତାଲିମପ୍ରାପ୍ତ ତରୁଣ ସ୍ନାତକମଣ୍ଡଳୀ ଏ କ୍ଷେତ୍ରକୁ ଆସିଥିଲୁ ସେମାନଙ୍କ ସମ୍ମୁଖରେ ମୌଳିକ ତାଲିମ ମହାବିଦ୍ୟାଳୟ ଯେତେ ଯେତେ ପ୍ରଣାଳୀ ଓ କାର୍ଯ୍ୟଧାରା ଉପସ୍ଥାପନ କରାଗଲା, ସେସବୁର ସଫଳ ଓ ଯଥାର୍ଥ ପ୍ରୟୋଗ ପରିଚାଳିତ ହେଲା ଆମ ହାତ ଓ ହୃଦୟର ସମ୍ମିଶ୍ରଣରେ ସମ୍ୟକ ଭାବରେ ଏହି ଜୀବନ ବିଦ୍ୟାଳୟର ଯଶସ୍ୱୀ ବିଂଧାଣିଙ୍କ ଆଦର୍ଶ ଆନ୍ତରିକ ସହଯୋଗରେ । ଏହି ଖଣ୍ଡିତ ଜୀବନ ପୂର୍ଣତା ଆଡ଼କୁ ପ୍ରଭାବିତ ହୋଇପାରିଲା ପୂର୍ଣ୍ଣ ଅନ୍ତର୍ବୋଧର ଅଭିମନ୍ତ୍ରରେ ଆମମାନଙ୍କୁ ଅଭିମନ୍ତ୍ରିତ କରିଦିଆଯାଇପାରିଲା ବୋଲି । ପିତୃପ୍ରତିମ ଗୁରୁଜୀ ନାଥ ମହୋଦୟ ଆଉ ଭାଇ-ବଂଧୁ-ସାଥୀ ସବୁକିଛିର ପରିପୂର୍ଣ୍ଣ ପ୍ରକାଶ ସ୍ନେହଶୀଳ ଚିତ୍ଶକ୍ତିସମ୍ପନ୍ନ ଚିତ୍ତଭାଇଙ୍କର ଚମତ୍କାର ନିବିଡ଼ କର୍ମକୁଶଳତା ଦ୍ୱାରା ସତ କହିବାକୁ ଗଲେ ବାରବର୍ଷରେ ଧୋବଧାଉଳିଆ ଶିକ୍ଷକତା ପରେ ନିଜକୁ ସବୁ ଜଣାଥିବା ଏଇ ତରୁଣ ଶିକ୍ଷକ ଓ ଲେଖକ ଆଜି ମର୍ମେ ମର୍ମେ ଅନୁତପ୍ତ ହେଲା ତା'ର ତୁଚ୍ଛ ମୂର୍ଖତା ପାଇଁ । ଆଉ ସେଇଠୁ ପାଇଲା ଗୋଟିଏ ନବଜନ୍ମ, ନୂଆକରି ନିଜକୁ ସମର୍ପିତ କରି ଦେବାକୁ ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ଏବଂ ସେମାନଙ୍କୁ ସଂପୂର୍ଣ୍ଣ ଆପଣାର କରି ଗ୍ରହଣ କରିନେବାକୁ ଗୁରୁ ଶିଷ୍ୟର ମିଳିତ ପରିବାର ଭାବରେ । ସେଦିନର ପ୍ରୟୋଗରେ କୌଣସି ଛଳନା ନଥିଲା, କିଛି ଅଧିକ ସ୍ୱାର୍ଥସର୍ବସ୍ୱ ଅର୍ଥ ଆହରଣର ଲାଳସା ନଥିଲା । ସେତେବେଳେ ମନରେ ଦୃଢ଼ ବିଶ୍ୱାସ ଆସିଲା ଯେ ଆଗାମୀ କାଲିର ଭାରତ ନିଶ୍ଚିତ ଭାବରେ ଗୋଟିଏ ସୁଖୀ, ସ୍ୱାବଲମ୍ବୀ, ସମ୍ବେଦନଶୀଳ ସମାଜରେ ପରିବର୍ତ୍ତିତ ହୋଇପାରିବ ଏଇ ଶିକ୍ଷକମଣ୍ଡଳୀ ଓ ଶିକ୍ଷାର୍ଥୀମାନଙ୍କ ସଂସ୍କାରମୂଳକ ନୂଆ ପାଠ ଓ ନୂଆ କାମର ପ୍ରୟୋଗ ମାଧ୍ୟମରେ ।

ମାତ୍ର ହାୟ ! ସେସବୁ କ୍ଷେତ୍ରରୁ ଉତୁରି ଆସିଥିବା କେତେଜଣ ସାରା ଜୀବନର ସେଇ ନ୍ୟାସବ୍ରତକୁ ଧାରଣ କରି ସର୍ବହିତେରତ ରହିବାକୁ ପ୍ରାଣ ମୂର୍ଚ୍ଛା

ଉଦ୍ୟମ ଜାରି ରଖିବା ବେଳକୁ ଆଜି ଅନୁଭବକୁ ଆସିଲାଣି ପୁଣି ସେହି ସୁବିଧା ଭୋଗୀ, ସୁଖୀ ସାଆନ୍ତିଆ ଶିକ୍ଷା ପ୍ରଣାଳୀର କୁତ୍ସିତ ପରିଣତି । ସେଦିନର ସେହି ଜାଜ୍ୱଲ୍ୟମାନ, ତେଜିୟାନ୍ ଗୁରୁଜୀମଣ୍ଡଳୀ ଆଜି ମଧ୍ୟ ସେମାନଙ୍କର ଉଜ୍ଜ୍ୱଳ ଦୀପଶିଖାକୁ ଜଳାଇ ରଖିଥିବା ବେଳେ ବିଚିତ୍ର ରାଜନୈତିକ ନେତୃତ୍ୱ ଏବଂ ପରାଶ୍ରିତ ପ୍ରଶାସନ ସମଗ୍ର ସମାଜକୁ ଅର୍ଥ ଆହରଣର ଅନୈତିକ ମାର୍ଗକୁ ପ୍ରଧାବିତ କରି ନେବାର ସବୁ କଳୁଷିତ ପନ୍ଥା ପ୍ରୟୋଗ କରି ସାରିଲାଣି ।

କର୍ମ ଓ ଧର୍ମର ଅପୂର୍ବ ସମନ୍ୱୟପୀଠ ଅନୁଗୋଳ ତଥା ଚମ୍ପଢିମୁଣ୍ଡାର ପାଣି ପବନରୁ ସବୁ ଶାଶ୍ୱତ ସଂସ୍କାରର ବାର୍ତ୍ତା ଧରି ଆପଣାର ନିଜ କର୍ମ/ ଧର୍ମ (ଶିକ୍ଷାନୁଷ୍ଠାନ)ର ପ୍ରୟୋଗ ପୀଠକୁ ବାହୁଡ଼ି ଆସିବା ପରେ ଏବେ ମହାନଦୀ/ ବ୍ରାହ୍ମଣୀର ବୁକୁରେ ବହିଗଲାଣି ଅର୍ଦ୍ଧଶତାବ୍ଦୀର ଜଳଧାରା । ତେବେ ବି ସେଇ ଭାଇ ପଣିଆ, ସେଇ ଭାବ ଦିଆନିଆ, ସେଇ ସ୍ନେହଶ୍ରଦ୍ଧାର ବଣାକୁଣା ବାଟରେ ଆଜି ବି ଆମ୍ଭମାନଙ୍କୁ ସବା ଆଗର ସାଥୀହୋଇ ସତେ ଯେପରି ଚଳାଇ ନେଉଛନ୍ତି ପିତୃତୁଲ୍ୟ ଗୁରୁଜୀମାନେ ଏବଂ ଅତି ଅନ୍ତରଂଗ ଭାଇଟିଏ ଆମ ଚିତ୍ତଭାଇ ମହୋଦୟ । ବନ ବିଦ୍ୟାଳୟ, ଶାନ୍ତି ନିକେତନ ଅଥବା ସେବାଗ୍ରାମ ଠାରୁ ବରୀ-ରାମଚନ୍ଦ୍ରପୁର, ଅନୁଗୋଳ, ଚମ୍ପଢିମୁଣ୍ଡା ପର୍ଯ୍ୟନ୍ତ ଯେଉଁ ଜୀବନଧର୍ମୀ ନୂଆ ଶିକ୍ଷାର ପ୍ରୟୋଗ ମାଧ୍ୟମରେ ଆଉ ଗୋଟିଏ ଭେଦଭାବହୀନ, ସମବଣ୍ଟନର ନୂଆସଂସାରର ପରିକଳ୍ପନା କରାଯାଇଥିଲା, ତାହା ଆଜି ବି ସଫଳ ହୋଇନାହିଁ ସତ, ହେଲେ ଭାରତୀୟ ଉଦାର ଭାଇଭାବର ମିଳାଗୁଳା ସ୍ୱାବଲମ୍ବନଶୀଳ ସର୍ବୋଦୟ ଗ୍ରାମ ସ୍ୱରାଜ ପଥରେ ଚିତ୍ତଭାଇ ଇତ୍ୟାଦିଙ୍କ ଅଗ୍ରଣୀଭୂମିକା ଠିକ୍ ସେଦିନ ଭଳି ଚିର ଜାଗ୍ରତ ହୋଇରହିଛି ଏବଂ ସେହି ପଥର ପଥିକମାନଙ୍କୁ ପରିଚାଳିତ ହେବାରେ ସାହଚର୍ଯ୍ୟ ଓ ସାନ୍ନିଧ୍ୟଦେବାରେ ଆଗୁସାର ହୋଇ ରହିପାରିଛି ।

ସେଇ ପଥର ପଥିକ ଏଇ ଅକିଞ୍ଚନ ଲେଖକଟିର ଶିକ୍ଷକତା ସାଙ୍ଗକୁ ଆଉ ଗୋଟାଏ ଖୋଇ ହେଲା ଆପଣାର ଭାବଧାରାକୁ ଆଉପାଂଚ ପଚିଶି ପଡ଼ିଶା ଭାଇଙ୍କୁ ପରଶି ଦେଇ ପାଖକୁ ଆଣିବାର ଆଗ୍ରହ । ସେଇଥିପାଇଁ ଗଲା ୧୯୫୧ ଗାଂଧୀଜୟନ୍ତୀଠିଥିରୁ ସେବା-ସାହିତ୍ୟ-ସଂସ୍କୃତିର ସାରଥି ଭାବରେ ''ଗାଁ ଭୂଇଁ'' ନାଆଁରେ ଖଣ୍ଡେ କୁନି ପତ୍ରିକା କାଢ଼ି ବାଣ୍ଟି ବାଣ୍ଟିକା ଚାଲିଛି ଭାଇ ତାରାର ତାରା ଗଛ ରୋଇ ଦେଇ ଦେଇ ଆମ ବହୁଧା ବିଭକ୍ତି ଗାଁ ଗୋହିରିର ଗୁଳା କଡ଼େ କଡ଼େ ଆମର ପରମ ସୌଭାଗ୍ୟକୁ ''ଗାଁ ଭୂଇଁ''ର ପଚାଶ ବର୍ଷର ଜନମ ତିଥିରେ ଆମେ ଜୀବନ ଅପରାହ୍ନରେ ପୁଣି ପାଇଗଲୁ ଆମ ଗୁରୁଜୀମାନଙ୍କ ସହ ପରମ ପ୍ରିୟ

ଚିତ୍ତଭାଇ, ବୁଲୁଭାଇଙ୍କୁ ଗାଁ ମୁଣ୍ଡ ଦରମୂଳର ବାଲି ଧୂଳି ଖେଳଘର ଅଗଣାରେ । ବହୁଦିନର ଓ ବହୁଦୂରର ଭାଇ ପଣିଆର ସମ୍ପର୍କ ଏଥର ଏଇଠି ନିକଟ ହୋଇଗଲା । ନିବିଡ ହୋଇଗଲା, ନିବିଡ଼ ଗଣ୍ଠି ପଡ଼ିଗଲା ସତକୁ ସତ ।

''ଗାଁ ଭୂଇଁ ତୋର ଜନମ ଜାତକ ଜଗତ ହିତେ,
ମନକଥା ସଦା କହି ଯା', ଗାଇଯା କାହାଣୀ ଗୀତେ ।''

ବରତାଳରେ ସକାଳର ଯେଉଁ ଚୋରା ମଳୟ ତାର ସାହାନାଇ ଶୁଣାଇବାକୁ ସଜିଲି ହେଉଥିଲା, ସେଇଥିରେ ମିଶିଗଲା,

'ମାଘ ମକର ମେଳାର ଆସର,
ଆସ ମିଶିବା ମୋ ସାଥୀ ଦୋସର,
ଯେତେ ଅଭିମାନ ରାଗ ରୋଷ ଦୋଷ,
ଏଥର ତ ହବ ପାଶୋର ।'

ଗୁରୁଜୀମାନଙ୍କ ଆଶୀର୍ବଚନ ସାଙ୍ଗକୁ ଚେତନଶୀଳ ଚିତ୍ତଭାଇ ଏବଂ ବିଚାରଶୀଳ ବୁଲୁଭାଇଙ୍କ ଅମଳିନ, ମଧୁମୟ ଭାଇ ଭାବର ଭାଷାଲହରୀ ଏଇ ସଂଗୀତକୁ ଅଧିକ ରସାଣିତ କରି ଅନୁପ୍ରାଣିତ କରିଦେଇଗଲା ଏଇ ମିଠିକା ଭାଇ ପଣିଆକୁ ଚିର ପ୍ରସାରିତ କରି ବୁଣି ଦେଇଯିବାକୁ !!!

ଶ୍ରୀ ବୀରକିଶୋର

*ଗ୍ରାମ: ଭୂଇଁସେବାଘର, ଡା କୋଟପୁର, ଜି: ଯାଜପୁର*

# ଅପୂର୍ବ ପ୍ରଣେତା

ନିଖିଳ ଉତ୍କଳ ଶ୍ରୀଅରବିନ୍ଦ ପାଠଚକ୍ର ସମ୍ମିଳନୀ ମାତୃଭବନଠାରେ ଆଦରର ଭାଗ୍ୟଧରଭାଇ ହାତକୁ ବଢ଼ାଇ ଦେଲେ 'ପରାର୍ଥ ପଥିକ'ର ପ୍ରଥମ ଭାଗ ଏବଂ ଅନୁରୋଧ କଲେ ଚିତ୍ତଭାଇଙ୍କ ସମ୍ବନ୍ଧରେ କିଛି ଅନୁଭୂତି ପ୍ରକାଶ କରିବା ଲାଗି । କୌଣସି ପ୍ରକାର ଅନୁରୋଧକୁ କାର୍ଯ୍ୟକାରୀ କରିବାର ଯେଉଁ ମାନସିକ ପ୍ରସ୍ତୁତି ଆବଶ୍ୟକ ତାକୁ ନେଇ କ୍ଷେତ୍ରମୋହନ ସେବାସଦନ, ରାଣୀହାଟର ସେହି ନୀରବ ସ୍ତବ୍ଧ ପ୍ରକୋଷ୍ଠଟିରେ କାଗଜ କଲମ ଧରି ବସିବା ବେଳକୁ ଭାବରାଜ୍ୟରେ ଉଭା ହେଲେ ସ୍ୱୟଂ ଚିତ୍ତଭାଇ ତାଙ୍କ କୃତ ସାରସ୍ୱତ ସମ୍ଭାର, ଦିଗନ୍ତ ବିସ୍ତାରୀ ସାହିତ୍ୟ-ସିନ୍ଧୁର ସେହି ବିଶାଳ ବେଳାଭୂମିରେ । ବେଶୀ ଡେଙ୍ଗା ନୁହଁ, ବେଶୀ ବାଙ୍ଗରା ନୁହଁ, ଗୌର ବର୍ଣ୍ଣ, ପତଳା, ସାଦାପୋଷାକଧାରୀ ସବୁ ହସିଲା ଅଛ ମୁହଁ

ନୂଆଇଁ ଦେଇଥିବା ସେହି ଅତ୍ୟନ୍ତ ସାଧା ମଣିଷ ଜଣକ । କିଛି ନ ଜାଣିଲା ପରି ସେହି ସାଧା ମଣିଷ ଜଣକ ଚୁପ୍ ଚାପ୍ ଛିଡ଼ା ହୋଇଥିଲା ବେଳେ ତାଙ୍କୁ ଘେରି ରହିଥିବା ଏକ ବିଶାଳ ଉତ୍ତୁଙ୍ଗ ପ୍ରତିଭାର ମହାନ ଶିଖର ଆକାଶଚୁମ୍ବି ବିଦ୍ୟମାନ ହୋଇଥିବାର ଦେଖାଗଲା । ତାଙ୍କର ପ୍ରତିଭା ସତେ ଅବା ଏକ ବିଶାଳ ମହେନ୍ଦ୍ର ଗିରି ! ପ୍ରସଙ୍ଗତଃ ମନେ ପଡ଼େ ଚିର ସବୁଜ, ଶାନ୍ତ, ନିର୍ବିକାର ନିଶ୍ଚଳ ମହିମାମୟ ମହେନ୍ଦ୍ର ଗିରିକୁ ଦେଖି କବି ଶେଖର ଚିନ୍ତାମଣି ମହାନ୍ତି ଭାସି ଉଠିଥିଲେ ଭାଷାରେ,

ମେଲାଣି ନେଉଛି ଏବେ ମହେନ୍ଦ୍ର ତୋଠାରୁ
କି ମାୟା ଯେ ଲଗାଇଛୁ ବଳେ ନାହିଁ ମନ
ତେଜିବାକୁ, ଟାଣେ ତୋର ପବିତ୍ର ସାନ୍ନିଧ,
ଦେହ ମଧେ ମନ ଯଦି ପାରୁଥାନ୍ତା ମିଶି
ପ୍ରଣାମ କରୁଛି ଛୁଇଁକରି ତୋ ଚରଣ
ନିତି ଆସି ପୂଜୁଥାନ୍ତି ପାଦପଦ୍ମ ତୋର
ସଂଗ୍ରହି ତୋ ଦେହୁ ମୁଁ ଯେ ଫୁଲ ଫଳ ଦଳ ।''

ମହେନ୍ଦ୍ର ଗିରି ପରି ଅତ୍ୟୁଚ୍ଚ ତାଙ୍କର ସାହିତ୍ୟିକ ବିଭବ । ଅନେକ କୃତିର ଅଧିକାରୀ ପ୍ରବନ୍ଧ ସାହିତ୍ୟ ବିଭାଗରେ ମହାମହିମ ଇନ୍ଦ୍ର ସିଏ । ତାଙ୍କର ଅଛି ସୃଜନଶୀଳ ମନୋବୈଜ୍ଞାନିକ ବ୍ୟକ୍ତିତ୍ୱ ଓ ଏକ ଅନ୍ତର୍ଭେଦୀ ମହାନ୍ ଦୃଷ୍ଟି । ସେହି ମହାନ ବ୍ୟକ୍ତିତ୍ୱର ସେ ପ୍ରକାଶମାନ ଶକ୍ତି, ଲେଖକ, ଦ୍ରଷ୍ଟା ଓ ସ୍ରଷ୍ଟା । ଅନନ୍ୟ ତାଙ୍କର ସେହି ବ୍ୟକ୍ତିତ୍ୱର ଛଟା, ଅମଳିନ ଆଭା । ସେତିକିରେ ଅଟକିଗଲା ସେଦିନ ମୋର ତାଙ୍କ ସମ୍ବନ୍ଧରେ କିଛି ଅନୁଭୂତି ପ୍ରକାଶ କରିବା । କାରଣ ସେ ହେଲେ ମହେନ୍ଦ୍ର ଆଉ ମୁଁ ହେଲି ମହେନ୍ଦ୍ର ତନୟା- କ୍ଷୀଣ ଏକ ଧାରା ।

ଏପ୍ରିଲ୍‌ରୁ ଆସି ନଭେମ୍ବର ହେଲା । ଏବେ ଭାଗ୍ୟଧର ଭାଇ ଶ୍ରୀଅରବିନ୍ଦ ଶ୍ରୀକ୍ଷେତ୍ର ଆସି ହାତକୁ ବଢ଼ାଇ ଦେଲେ 'ପରାର୍ଥ ପଥିକ'ର ଦ୍ୱିତୀୟ ଖଣ୍ଡ, ଏବଂ ସେହି ହସିଲା ଆଖିର ଅନୁରୋଧ, ''କାହିଁ ?'' ଅକୁହା ଭାଷା ବୁଝି ହୁଏ । ପୁନଶ୍ଚ ଶ୍ରୀମା ଶ୍ରୀଅରବିନ୍ଦଙ୍କ ଶ୍ରୀଚରଣ ତଳେ ଚିତ୍ତଭାଇଙ୍କ ସମ୍ବନ୍ଧେ ଲେଖି ବସିଲା ବେଳକୁ ମନକୁ ଆସିଲା, ଶ୍ରୀଅରବିନ୍ଦ ଶ୍ରୀମାଙ୍କ ବିଶାଳ ରଚନାର ଯେ ଅନୁବାଦକାରୀ, ସେହି ମହାଶକ୍ତିମୟ ଶବ୍ଦାବଳୀ ଯାହାଙ୍କ ଚେତନାକୁ ସ୍ପର୍ଶ କରିଛି, ଯାହାଙ୍କ ଅତିମାନସ ଚିନ୍ତନ ତାଙ୍କ ସ୍ନାୟୁକୋଷ ସବୁକୁ ପ୍ଲାବିତ କରିଥିବ, ତାଙ୍କ ସମ୍ବନ୍ଧରେ କ'ଣ ଲେଖିହେବ ? ଇଂରାଜୀ ସାହିତ୍ୟରେ ଯାହାଙ୍କୁ Author ବୋଲି କୁହାଯାଏ, ଓଡ଼ିଆରେ ସେ ପ୍ରଣେତା, ସେ ଲେଖକ, ସେ ସାରସ୍ୱତ ସାଧନାର ଯୋଜନା

ସଂଯୋଜନା କାରୀ, ଚିନ୍ତା ଓ ଚେତନାର ରୂପକାର । ସେ ନିଜେ ଚିନ୍ତାକରନ୍ତି, କାର୍ଯ୍ୟ କରନ୍ତି, ଲେଖନ୍ତି, ପ୍ରଣିଧାନ କରନ୍ତି, ପ୍ରଣୟନ ମଧ କରନ୍ତି । ସେ ଶବ୍ଦ ଶିଳ୍ପୀ, ତାଙ୍କ ଶିଳ୍ପକଳା, ତାଙ୍କ ସାହିତ୍ୟ ଅନନ୍ୟ ଚିନ୍ତା ଚେତନାର ସୁବିସ୍ତୃତ ସେ ପରିସୀମା । ଲେଖକ, କବି, ବା ଶିଳ୍ପୀ ଏମାନେ ସମସ୍ତେ ସ୍ରଷ୍ଟା । ସୃଷ୍ଟି ହିଁ ତାଙ୍କର କାର୍ଯ୍ୟ, ତାଙ୍କର ରହସ୍ୟ । ସ୍ରଷ୍ଟା ଏବଂ ସୃଷ୍ଟି ଏକ ଏବଂ ଅଭିନ୍ନ । ସ୍ରଷ୍ଟାଙ୍କୁ ଦ୍ରଷ୍ଟା ବୋଲି ମଧ କୁହାଯାଏ । ସୁତରାଂ ଦ୍ରଷ୍ଟା ଓ ସ୍ରଷ୍ଟା ମଧ ଏକ ଏବଂ ଅଭିନ୍ନ । ଆମର ଦର୍ଶନ ସାହିତ୍ୟ ପରିପ୍ରେକ୍ଷୀରେ ପରମ ପୁରୁଷ ସଂକଳ୍ପ କରନ୍ତି ସୃଷ୍ଟି ରଚନା ଲାଗି । ତାଙ୍କର ସେହି ସଂକଳ୍ପ ଶକ୍ତି ପରା ପ୍ରକୃତି ରୂପେ ପ୍ରକାଶିତ ହୁଅନ୍ତି । ପରମ ପୁରୁଷ ପୁରୁଷୋତ୍ତମ ସଂକଳ୍ପ କରନ୍ତି ଏବଂ ପରାପ୍ରକୃତି ଦିବ୍ୟଜନନୀ ତାଙ୍କ ସଂକଳ୍ପକୁ ରୂପ ଦିଅନ୍ତି ଓ ପ୍ରକାଶ କରନ୍ତି । ପରାପ୍ରକୃତି ପରମେଶ୍ୱରଙ୍କ ସଂକଳ୍ପ ଅନୁସାରେ କାର୍ଯ୍ୟ କରନ୍ତି ସତ, କିନ୍ତୁ ସେ ଇଚ୍ଛାମୟୀ, ସ୍ୱାଧୀନ ଭାବରେ କ୍ରିୟା କରିବା ତାଙ୍କର ବିଧାନ । ତେଣୁ ଏପରି ବୁଝିବାକୁ ହେବ ଯେ ଯିଏ ସଂକଳ୍ପ କରନ୍ତି ସେହିଁ କାର୍ଯ୍ୟ କରନ୍ତି । ଉଭୟଙ୍କର ସଂପର୍କ ଅଭିନ୍ନ । ସେ ବିଭକ୍ତ ପରି ଜଣାଯାଉଥିଲେ ମଧ ଅବିଭକ୍ତ । ସେ ପରମ ପୁରୁଷ ଏବଂ ପରାପ୍ରକୃତି । ଅର୍ଦ୍ଧାଙ୍ଗ ଈଶ୍ୱର, ଅର୍ଦ୍ଧାଙ୍ଗ ପାର୍ବତୀ ପରି ଏକ ଏବଂ ଅଭିନ୍ନ, He and She are one । ବର୍ତ୍ତମାନ ଚିତ୍ତଭାଇଙ୍କ କୃତି ଦୃଷ୍ଟିରୁ ତାଙ୍କର କଳ୍ପନା ଓ କାର୍ଯ୍ୟଧାରା ଏକ ଏବଂ ଅଭିନ୍ନ । ତାଙ୍କର ସାହିତ୍ୟ ଓ ତାଙ୍କର ଜୀବନ ମଧରେ ଫାଙ୍କ ନାହିଁ । ତାହାହିଁ ତାଙ୍କର ବ୍ୟକ୍ତିତ୍ୱ । ସେହିଁ ତାଙ୍କ ଚିନ୍ତାର ନାୟକ, ତାଙ୍କ କୃତିର ପ୍ରଣେତା, ତାଙ୍କ କଳାର ଶିଳ୍ପୀ, ତାଙ୍କ ପଥର ପଥିକ, ତାଙ୍କ ପ୍ରେମର ପ୍ରେମିକ, ତାଙ୍କ ଯାତ୍ରାର ଯାତ୍ରୀ, ତାଙ୍କ ସ୍ରୋତର ତରଙ୍ଗ, ତାଙ୍କ ଆକାଶର ଆନନ୍ତ୍ୟ । ଚିତ୍ତଭାଇଙ୍କର ଅନ୍ତର୍ଗତ ଭାବନା ଓ ତାର ବାହ୍ୟ ପ୍ରକାଶଧାରାରେ ରହିଛି ସାମ୍ୟ । ତାହାହିଁ ତାଙ୍କର ବିଶେଷତ୍ୱ । ତାଙ୍କ ଜୀବନ ଓ ସାହିତ୍ୟସାଧନା ଅଙ୍ଗାଙ୍ଗୀ ଜଡ଼ିତ । ଗୋଟିଏ ସ୍ୱାଧୀନ ମୁକ୍ତ ସମାଜ ଓ ମାନବିକତାର ମହା ଉନ୍ମେଷ ତାଙ୍କର ସାଧନାର ଅନନ୍ୟତା ।

ଆମେ ପିଲାଟି ଦିନରୁ ପଢ଼ି ଆସିଛନ୍ତି, "ସତ କହିବାକୁ କିଆଁ ଡରିବି । ସତ କହି ପଛେ ମଲେ ମରିବି ।" ଆମେ ପଢ଼ି ଆସିଛନ୍ତି । ପରୀକ୍ଷା ଦେଇଛନ୍ତି, ପାସ୍ କରିଛନ୍ତି, କିନ୍ତୁ ସତ କଥା କେବେ କହନ୍ତି ନାହିଁ । ବରଂ ମିଛ କହିଲା ବେଳକୁ କହନ୍ତି, "ଆଖି ଛୁଉଁଛି । ମୋ ବାର୍ଷିକ ବିଦ୍ୟାରାଣ, ମୁଁ ସତ କହୁଛି ।" ନିପଟ ମିଛ କହିଲା ଲୋକ ସତ ନାଁରେ ଛାତି ଛୁଉଁଛି ବୋଲି କହିଦିଏ । ମିଛ କହୁଥିଲେ ମୋ ମୂର୍ଦ୍ଧନା ଫାଟିଯିବ ବୋଲି କହେ, କିନ୍ତୁ ମିଛହିଁ କହୁଥାଏ, କେବେ ମଧ ତା'ର ମୂର୍ଦ୍ଧନା

ଫାଟିଯାଏ ନାହିଁ । ଆମ୍ଭେମାନେ ସମସ୍ତେ ଦୁଇ ପାଖ ଧରି ଚାଲୁଥାଉ, ସତ ନାମରେ ମିଛ କହୁ, ଏବଂ ମିଛ ନାମରେ ସତ ମଧ୍ୟ କହୁ । ଚିତ୍ତଭାଇ କିନ୍ତୁ ଦୁଇ ଆଡ଼େ ନ ହୋଇ ଗୋଟିଏ ଆଡ଼େ ଥାଆନ୍ତି । ତାଙ୍କ ଆଦର୍ଶର ସେ ନିଜେ ପୂଜାରୀ । ସମାଜ ଜୀବନରେ ସେ ଜଣେ ପ୍ରୟୋଗବିତ୍ କାରିଗର । (ପ୍ରତ୍ୟେକ ମନସ୍ତତ୍ତ୍ୱବିତ୍ ଜଣେ ଜଣେ ପ୍ରୟୋଗବିତ୍ କାରିଗର । ସେମାନେ ନୂଆ ଛାଞ୍ଚ ତିଆରି କରନ୍ତି, ମୂର୍ତ୍ତି ଗଢ଼ନ୍ତି ଓ ଜୀବନ୍ୟାସ ମଧ୍ୟ ଦିଅନ୍ତି ।) ଶ୍ରୀମାଙ୍କ 'ଆଦର୍ଶ ଶିଶୁ'ର ପ୍ରଥମ ବାକ୍ୟଟି ସଦାକାଳେ ସେ ପାଳନ କରନ୍ତି । ମା କହୁଥିଲେ, ''ପିଲାମାନେ ସବୁ ସମୟରେ ମନେ ରଖିବେ, ସଂପୂର୍ଣ୍ଣ ଅକପଟ ହେବା ଉଚିତ୍ । ସତ୍ୟର ବିଜୟ ଶେଷରେ ନିଶ୍ଚିତ । ସିଦ୍ଧି ନିମନ୍ତେ ଯଦି ଦୃଢ଼ ସଂକଳ୍ପ ଥିବ, ତେବେ ଅବିରାମ ପ୍ରଗତି ହୋଇ ଚାଲିବ ।'' କପଟ, ଛଳନା, ମିଥ୍ୟାଚାର, ଯାହା ନୁହଁ ତାହା ଦେଖାଇହେବା ଗୁଣ ସବୁକୁ ସେ ସଂପୂର୍ଣ୍ଣ ଅପସନ୍ଦ କରନ୍ତି । ଗୋଳିଆ ମିଶା କଥାକୁ ସେ ଭଲ ପାଆନ୍ତି ନାହିଁ । ମଣିଷ ପରି ମଣିଷ ହେବାକୁ ସେ ଶିକ୍ଷା ଦିଅନ୍ତି । ଏକମାତ୍ର ମନୁଷ୍ୟ ହିଁ ଦିବ୍ୟ ଜୀବନର ଅଧିକାରୀ ହୋଇପାରିବ । ତେଣୁ ମଣିଷର ମୁକ୍ତ ବିକାଶ ଉପରେ ସେ ଗୁରୁତ୍ୱ ଦିଅନ୍ତି ।

ପ୍ରତିଭାକୁ ନବ ନବ ଉନ୍ମେଷ ମାଳିନୀ ପ୍ରଜ୍ଞା ବୋଲି କୁହାଯାଏ । ଏହି ଉକ୍ତିଟି ଚିତ୍ତଭାଇଙ୍କ ସାହିତ୍ୟ ପ୍ରତି ଏକାନ୍ତ ପ୍ରଯୁଜ୍ୟ । କେତେବେଳେ ତାହା ମର୍ମଭେଦୀ ତୀକ୍ଷ୍ଣଧାର ଅସି ସଦୃଶ ତ କେତେବେଳେ ତାହା ଅନନ୍ତ ଆକାଶ ପରି ଉଚ୍ଚ ଏବଂ ବିସ୍ତୃତ । ତାଙ୍କର ସାହିତ୍ୟର ନିର୍ଯ୍ୟାସ ଅନେକ ସମୟରେ କଳକଲ୍ଲୋଳିନୀ ଖରସ୍ରୋତାଟିଏ ପରି ଅଗ୍ରଧାବିତ, ତ ପୁଣି କେବେ ନିର୍ଜନ ନିସ୍ତବ୍ଧ ସବୁଜ ବନଭୂମି ପରି ଭାବ ଗମ୍ଭୀର । ସାହିତ୍ୟରସସମନ୍ୱିତ ତାଙ୍କ ଶବ୍ଦ ଯୋଜନା ଓ ସଭାରେ ବକ୍ତୃତା ଦେଉଥିବା ବେଳେ ତାଙ୍କର ଅଭିବ୍ୟକ୍ତି ମଧ୍ୟ ବେଳେ ବେଳେ ଅତ୍ୟନ୍ତ ମାଧୁର୍ଯ୍ୟପୂର୍ଣ୍ଣ ଓ ପରକ୍ଷଣରେ ଦାର୍ଶନିକ ରହସ୍ୟରେ ଭରପୂର । ଯେଉଁମାନେ ଶ୍ରୀଅରବିନ୍ଦଙ୍କ ଓଡ଼ିଆ ଭାଷାର *ଦିବ୍ୟଜୀବନ, ଯୋଗସମନ୍ୱୟ, ମାନବ ଯୁଗଚକ୍ର* ଆଦି ଗ୍ରନ୍ଥ ପାଠ କରିଛନ୍ତି ଏବଂ ଇଂରାଜୀର ମୂଳ ରଚନା ମଧ୍ୟ ପଢ଼ିଛନ୍ତି, ସେମାନେ ନିଶ୍ଚୟ ଅନୁଭବ କରି ପାରିବେ ଯେ ଶ୍ରୀଅରବିନ୍ଦଙ୍କ ଲେଖାର ମର୍ମକୁ ସ୍ପର୍ଶ କରିପାରୁଥିବା ବ୍ୟକ୍ତି ଜଣକ କିପରି ହୋଇଥିବେ ।

ତାଙ୍କ ବ୍ୟକ୍ତିତ୍ୱର ଅନ୍ୟାନ୍ୟ ଦିଗ ସବୁକୁ ନିରେଖି ବସିଲେ ସର୍ବପ୍ରଥମେ ଆମେ ଜଣେ ବିଶିଷ୍ଟ ବାଗ୍ମୀ ରୂପେ ତାଙ୍କର ପରିଚୟ ପାଉ । ତାଙ୍କ ମୁହଁର ଭାଷା ବା ବକ୍ତୃତା ଶୁଣିବାକୁ ବେଳେ ବେଳେ ଶହ ଶହ କିଲୋମିଟର ଯାତ୍ରା କରିଥାଉଁ ।

ସମ୍ମିଳନୀ ପରିପ୍ରେକ୍ଷୀରେ ଶୁଣାଯାଏ ପ୍ରପତ୍ତି ଓ ଚିତ୍ତଭାଇ ଆସିଛନ୍ତି । ପ୍ରାୟ ମୋର ନିଜସ୍ୱ ଦର୍ଶନ ଅଭିଳାଷ ମଧ୍ୟରେ ଦୁଇଜଣ ପ୍ରପତ୍ତି ଏବଂ ଚିତ୍ତଭାଇ ଏକା ସାଙ୍ଗରେ ଥାଆନ୍ତି । ବେତନଟୀରେ ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ପ୍ରତିଷ୍ଠା ହେଲାପରେ ଅନେକ ଥର ସେ ଯାଇଛନ୍ତି । ସେହିଠାରେ ତାଙ୍କ ନିକଟ ସଂପର୍କରେ ଆସିବା, ସାନ୍ନିଧ୍ୟ ଲାଭ କରିବା ବା ସାଥୀ ହୋଇ ବୁଲିବାର ସୁଯୋଗ ପାଇଛି । ଦିନେ ପଚାରିଲି, ''ଚିତ୍ତଭାଇ ! ଆପଣ ସଭାରେ କହିଲା ବେଳେ ଶ୍ରୀଅରବିନ୍ଦଙ୍କ *ଦିବ୍ୟଜୀବନ ଓ ଯୋଗ ସମନ୍ୱୟ* ଗ୍ରନ୍ଥରାଜିର ପୃଷ୍ଠା ପରେ ପୃଷ୍ଠା ଅବିକଳ ବହି ପଢ଼ିଲା ପରି କହି ଯାଉଛନ୍ତି । ଏହା କିପରି ସମ୍ଭବ ହୋଇପାରୁଛି ?'' ସେ କହିଲେ, ''ସେହି ବହି ସବୁ ଅନୁବାଦ କରିଗଲା ବେଳେ ତାହା ଭିତରେ ଯେପରି ଲେଖିହୋଇ ଯାଏ ଏବଂ କହିଲାବେଳେ ମନେ ପଡ଼ିଗଲେ ସେହି ଧାଡ଼ିସବୁ ବାହାରି ଆସେ ।'' ତାହେଲେ ବୁଝିବାକୁ ହେବ ଯେ ତାଙ୍କ ଭିତରେ ରହିଛି ଶ୍ରୀମା ଶ୍ରୀଅରବିନ୍ଦଙ୍କ ସାହିତ୍ୟର ଭଣ୍ଡାର । ପ୍ରାୟ ଅନେକ ସମୟରେ ଦେଖାଯାଏ ପ୍ରପତ୍ତିଙ୍କ ଉପସ୍ଥିତିରେ ଚିତ୍ତଭାଇ ଶ୍ରୀଅରବିନ୍ଦଙ୍କ ମୂଳରଚନାବଳୀର ଏକାପ୍ରକାର ଅବତାରଣା କରନ୍ତି ।

ସେତେବେଳେ ତାଙ୍କ ସହିତ ବୁଲିବାରେ ଏକ ଅହେତୁକୀ ଆକର୍ଷଣ ଥାଏ । ତାହା ତାଙ୍କ ବ୍ୟକ୍ତିତ୍ୱର ଚୁମ୍ବକୀୟ ଶକ୍ତି ଯାହାଦ୍ୱାରା କଥାରେ କଥାରେ, ଭାବର ଆଦାନ-ପ୍ରଦାନରେ, ଆଦର୍ଶର ଆଲୋକରେ ସେ ଆମକୁ ବାନ୍ଧି ଦିଅନ୍ତି । ଥରେ ବାଲେଶ୍ୱର ଶ୍ରୀଅରବିନ୍ଦ ସ୍ମୃତି ମନ୍ଦିର ଗଳାବାଟରେ କହିଲେ, ''ଜୀବନରେ ସତ୍ୟକୁ ଅନୁସରଣ ନ କଲେ କ'ଣ ପାଇଁ ଚିତ୍ତଭାଇ ଚିତ୍ତଭାଇ ବୋଲି ନେସି ହୋଇଯାଉଛ ?'' ଶ୍ରମ୍ ଶିବିରମାନଙ୍କରେ ସେ ନିଜେ ଶ୍ରମଦାନ କରୁଥାନ୍ତି, ମାଟି ଉଠାନ୍ତି, ଇଟା ହାତକୁ ଦିଅନ୍ତି, ଧାନ କାଟନ୍ତି, ମଳି ଲୁଗା ନିଜ ହାତରେ ଧୁଅନ୍ତି, ଘର ଝାଡୁ କରନ୍ତି, ଆଲୋଚନା ବେଳେ ଗ୍ରନ୍ଥର ଆଲୋଚନା କରନ୍ତି, ଛିଡ଼ା ହୋଇ ସଭାରେ ଭାଷଣ ଦିଅନ୍ତି, ହସିଲା କଥାରେ ହସାନ୍ତି, ରାଗିଲା କଥାରେ ରଗାନ୍ତି । ଏପରି ଗୋଟିଏ ନୂତନ ବ୍ୟକ୍ତିତ୍ୱକୁ ନିରୀକ୍ଷଣ ଓ ନିର୍ଦ୍ଦେଶ କରୁଥାନ୍ତି ଯିଏ ଏକ ଉପଯୁକ୍ତ ଆଧାର ହେବା ଆବଶ୍ୟକ । ଶ୍ରୀଅରବିନ୍ଦ 'ଦୁର୍ଗାସ୍ତୋତ୍ର'ରେ ଯେପରି ଉଲ୍ଲେଖ କରିଛନ୍ତି: ''ସ୍ୱାର୍ଥ, ଭୟ, କ୍ଷୁଦ୍ରାଶୟତାରେ ମ୍ରିୟମାଣ ଭାରତ । ହେ ମାତଃ, ଆମ୍ଭମାନଙ୍କୁ ମହତ୍‌କର, ମହତ୍ ପ୍ରୟାସୀ କର, ଉଦାରଚେତା କର, ସତ୍ୟସଂକଳ୍ପ କର, ଆଉ ଅଳ୍ପାଶୀ, ନିଶ୍ଚେଷ୍ଟ, ଅଳସ, ଭୟଭୀତ ଯେପରି ନ ହେଉ ।'' ଏହିପରି ଏକ ଆନ୍ତର ବ୍ୟକ୍ତିତ୍ୱକୁ ଚିତ୍ତଭାଇ ଆମ୍ଭମାନଙ୍କ ଭିତରେ ଫୁଟେଇ ଦେବାକୁ ଚାହୁଁଥିଲେ । ଶ୍ରୀମା ତାଙ୍କ ସନ୍ତାନ ମାନଙ୍କୁ ଠିକ୍ ଅବିକଳ ବିକଶିତ ହେବାକୁ

ଚାହୁଁଥିଲେ । ଚିତ୍ତଭାଇ ମାତୃଭବନର ଗୋଟିଏ ଶ୍ରେଣୀରେ ଗୋଟିଏ ଘଣ୍ଟା କେବଳ 'ଦୁର୍ଗାସ୍ତୋତ୍ର' ବୁଝାଇ ଚାଲିଲେ । ଆମେ ଅନେକ ସମୟରେ 'ଦୁର୍ଗାସ୍ତୋତ୍ର'କୁ ଅର୍ଥ ନ ବୁଝି ଶୁଆ ପରି ଘୋଷି ଦିଅନ୍ତି ଏବଂ କାଉ ପରି କହି ଚାଲନ୍ତି । ଅର୍ଥ ବୁଝି ବାକ୍ୟକୁ କଣ୍ଠରେ ଉଚ୍ଚାରଣ ସହିତ ଭାବରେ ସଚେତନ ଥିଲେ ମନ୍ତ୍ରଶକ୍ତି କ୍ରିୟା କରେ । ଚିତ୍ତଭାଇ ଆବେଗ, ଭାବପ୍ରବଣତା ଓ ଉଦ୍ଦୀପନା ବ୍ୟତିରେକ ପ୍ରତ୍ୟେକ ଶାସ୍ତ୍ରର ଅର୍ଥ, ଭାବ, ଶକ୍ତି ଓ ଜୀବନ ଉପରେ ତା'ର କ୍ରିୟା ଉପରେ ଅଧିକ ଗୁରୁତ୍ୱ ଦେଉଥାନ୍ତି ।

ପିଲାଙ୍କ ସହିତ ପିଲା, ବୟସ୍କଙ୍କ ସହିତ ବୟସ୍କ ତାଙ୍କ ବ୍ୟକ୍ତିତ୍ୱର ଗୋଟିଏ ଆଲୋକ ସ୍ତମ୍ଭ । ଥରେ ବେତନଟୀରେ ଅନେକଙ୍କ ନିମନ୍ତ୍ରଣ ରକ୍ଷାକରି ସେ ଅନେକଙ୍କ ଘରକୁ ଗଲେ । ଆମେ କେତେଜଣ ସବୁବେଳେ ତାଙ୍କ ସାଥୀରେ ଥାଉଁ । ଯାହା ଘରକୁ ଗଲେ ଚାହା, ସର୍ବତ, ଜଳଖିଆ ଯିଏ ଯାହା ଦେଲେ ଆବଶ୍ୟକତା ଅନୁସାରେ ଟିକିଏ ନିଅନ୍ତି । ଫେରିବା ବେଳକୁ ସମସ୍ତେ ପାନ ଦିଅନ୍ତି । ଚିତ୍ତଭାଇ ପାନସବୁ ଆଣି ପକେଟ୍‌ରେ ପୁରାନ୍ତି । ଆମେ ଯିଏ ନ ଖାଉଁ, ସିଧା ମନା କରି ଦେଉଁ । ଅନେକ ଘର ପରେ ଥରେ ପଚାରିଲି, "ଆପଣ ତ ପାନ ଖାଉ ନାହାଁନ୍ତି, କାହିଁକି ସବୁ ଘରୁ ଆଣୁଛନ୍ତି ?" ସେ କହିଲେ, "କାହିଁକି, ଯିଏ ପାନ ଖାଉଛି ଖାଇଦେବ ନାହିଁ ? ସେମାନେ ଶ୍ରଦ୍ଧାରେ ଦେଉଛନ୍ତି । ନ ଆଣିଲେ, ସେମାନଙ୍କ ଶ୍ରଦ୍ଧା ବାଧା ପାଇବ ନା ନାହିଁ ?" ସମସ୍ତଙ୍କ ଶ୍ରଦ୍ଧାକୁ ସେ ଗ୍ରହଣ କରନ୍ତି । ବୁଝନ୍ତି, ସମସ୍ତଙ୍କୁ ଭଲ ପାଆନ୍ତି, ସମସ୍ତେ ତାଙ୍କୁ ମଧ ଭଲ ପାଆନ୍ତି । ଭଲ ପାଇବାକୁ ହିଁ ସେ ବହୁତ ଭଲ ପାଆନ୍ତି । ଭଲ ପାଇବା ଏପରି ଦିବ୍ୟଗୁଣ ଯେ ସମସ୍ତଙ୍କ ଭିତରେ ସେହି ଭଲ ପାଇବାକୁ ଖୋଜନ୍ତି, ସମସ୍ତଙ୍କୁ ଭଲ ପାଇବାକୁ ଚାହାଁନ୍ତି । ମନୁଷ୍ୟର ଭଲ ପାଇବା ଭିତରେ ଦୁଇଟି ପ୍ରବୃତ୍ତି ପ୍ରଚ୍ଛନ୍ନ ଭାବରେ ଦେଖାଯାଉଥାଏ । ଗୋଟିଏ ସ୍ଥାନରେ ସବୁକିଛି ସେ ଆତ୍ମସାତ୍ କରି ପକାଏ, ପୂରା ଖାଇଯାଏ, ଶୋଷିନିଏ ବା ଶେଷ କରିଦେବାରେ ସାମାନ୍ୟ ଭାବରେ ଦ୍ୱିଧା ପ୍ରକାଶ କରେ ନାହିଁ । ତାହା ଅତ୍ୟାଚାର ହେଉ ବରଂ, ସେ ତାହାକୁ ଭଲ ପାଇବା ବୋଲି କହେ । ଆଉ ଗୋଟିଏ ସ୍ଥାନରେ ଯିଏ ଯାହାକୁ ଭଲପାଏ ତାହା ନିକଟରେ ନିଜର ସବୁକିଛି ଓ ନିଜକୁ ଆତ୍ମସମର୍ପଣ କରିଥାଏ । ପୂରା ନିଜକୁ ଦେଇଦିଏ । ଶୂନ୍ୟ ହୋଇଯାଏ, ନିଜ ପାଇଁ ଜୀବନକୁ ମଧ ରଖିପାରେ ନାହିଁ । ଏପରି ଭଲ ପାଇବା ଭିତରେ ସେହି ନୈସର୍ଗିକ ଦିବ୍ୟଚେତନାଟି ଦିନେ ମନୁଷ୍ୟ ଭିତରେ ପ୍ରେମର ଗୋଲାପଟିଏ ଫୁଟାଇ ଦିଏ । ଭଲ ପାଇବାଟି ମନୁଷ୍ୟ ଭିତରୁ ଭଗବାନଙ୍କ ଆଡ଼କୁ ଯାଏ ଏବଂ ଭଗବାନଙ୍କ ପାଖରୁ

ମନୁଷ୍ୟ ଭିତରକୁ ଆସେ । ସବୁରି ଭିତରେ ବଂଧନଶୂନ୍ୟ, ସ୍ୱାର୍ଥଶୂନ୍ୟ, ନିଃସର୍ତ୍ତ ଭଲ ପାଇବା ମନୁଷ୍ୟକୁ ଭଗବାନଙ୍କ ପାଶରେ ବାନ୍ଧିଦିଏ, ସ୍ୱର୍ଗର ଗୋଟିଏ ସୁନ୍ଦର ଶିଙ୍କ ତିଆରି କରେ ।

ଆମ୍ଭମାନଙ୍କ ମଧ୍ୟରେ ଗୋଟିଏ ବଡ଼ ଦୁର୍ବଳତା ହେଉଛି ଅତିଥି ଆସିଲେ ବହୁତ ଖୁଆଇବା ଏବଂ ବହୁତ 'କୁହାଇବା । ଯୋଗ ଗୋଟିଏ ଆତ୍ମସଂଯମ ଏବଂ ଆତ୍ମ ନିୟଂତ୍ରଣ ପ୍ରକ୍ରିୟା । ଆମ୍ଭମାନଙ୍କ ପରି ଅନେକ ଅଛନ୍ତି ଯେଉଁମାନେ ପଥିକ ବା ପଥଚାରୀ । ଅନେକକୁ କୁହାଯାଏ ପରିବ୍ରାଜକ । ଏହିମାନେ ପ୍ରତ୍ୟେକ ମୁହୂର୍ତ୍ତରେ ଅନ୍ୟମାନଙ୍କ ନିକଟ ସଂପର୍କରେ ଆସନ୍ତି । ଧରାଯାଉ ଗୋଟିଏ ଗାଁରେ ୨୦ଟି ଶ୍ରୀଅରବିନ୍ଦ ପାଠଚକ୍ର ଅଛି ଏବଂ ପରିକ୍ରମାରେ ୨୦ଟି ଯାକ ପାଠଚକ୍ରକୁ ଯିବାକୁ ହେବ । ବର୍ତ୍ତମାନ ୨୦ଟି ସ୍ଥାନରେ ଖାଇଲେ ଚଳିବ କି ? କୋଡିଏଟି ସ୍ଥାନରେ କଥା କହିଲେ ଚଳିବ କି ? ପୁନଶ୍ଚ ଅନ୍ୟମାନଙ୍କ ଘରକୁ ଗଲେ ଅତିଥି ସତ୍କାର ପାଇଁ ଭଲ ଭଲ ଜିନିଷ ଦିଅନ୍ତି । ଅନେକକୁ ଖାଇବାକୁ ନ ଦେବାକୁ ମନା କଲାପରେ ଜଣେ ସବୁଠାରୁ ଧନୀ, ମାନି, ବିଦ୍ୱାନ, ନାମଜାଦା ଭାଇ ତାଙ୍କ ଘରେ ଫଳ ଓ ମିଠା ଆଣି ଅତି ଶ୍ରଦ୍ଧାରେ ଖୁଆଇବାକୁ ଚେଷ୍ଟା କରନ୍ତେ, ଚିତ୍ତଭାଇ ସହସା କହିଲେ, "କଟକିଆକୁ ଫଳ ମିଠା ଖାଇବାକୁ କହୁଛ । ତୁମ ଘର ଜିନିଷ କ'ଣ ଅଛି ଦେଉନା ?" ଶେଷକୁ ମୟୂରଭଞ୍ଜ ଜିଲ୍ଲାର ଅତ୍ୟନ୍ତ ପରିଚିତ ସ୍ୱାଦିଷ୍ଟ ମୁଢ଼ି, ତେଲ, ପିଆଜ ମିଶାଇ ତାଙ୍କର୍ ଦେଲେ ଏବଂ ଚିତ୍ତଭାଇ ଖାଇଲେ, ଭାରି ଖୁସୀରେ ଖାଇଲେ । ମନୁଷ୍ୟର ନିତ୍ୟ ନୈମିତ୍ତିକ ଜୀବନଧାରା ସହିତ ସେ ମିଶି ଚଳୁଥିଲେ । କୌଣସି ପ୍ରକାର ଆଡ଼ମ୍ବର, ଜାକଜମକ, ଲୋକ ଦେଖାଣିଆ ବା ସ୍ୱତନ୍ତ୍ରତା କିଛି ସେ ପସନ୍ଦ କରୁ ନଥିଲେ ।

ପିଲାମାନଙ୍କ ମେଳରେ ପିଲା ହେବାର ଏକ ତାରୁଣ୍ୟ ଚେତନାରେ ସେ ଏପରି ପ୍ରସ୍ଫୁଟିତ ହୋଇ ରହୁଥିଲେ ଯେ, ବୟସ୍କ ଲୋକମାନେ ଧୀରେ ଧୀରେ ତାଙ୍କ ପାଖରୁ ଦୂରେଇ ଯାଉଥିଲେ ଏବଂ ତରୁଣମାନେ ତାଙ୍କର ନିକଟରେ ହେଉଥିଲେ ଓ ସଦା ତରୁଣ ରହିବାକୁ ପ୍ରୟାସ ବା ସାଧନା ମଧ୍ୟ କରୁଥିଲେ ।

ଅନେକ କହନ୍ତି ଚିତ୍ତଭାଇ ଶ୍ରୀମା ଶ୍ରୀଅରବିନ୍ଦଙ୍କୁ ପୂଜା କରନ୍ତି ନାହିଁ । ଶ୍ରୀମା ଶ୍ରୀଅରବିନ୍ଦଙ୍କ ପ୍ରତିକୃତିରେ ଧୂପ ଫୁଲ ଅର୍ପଣ କରିବାକୁ ବିରୋଧ କରନ୍ତି ବା ଆଦୌ ପସନ୍ଦ କରନ୍ତି ନାହିଁ । ଅନେକ କଥା ଆମ୍ଭେମାନେ ମନରୁ କହି ଚିତ୍ତଭାଇଙ୍କ ନାମ ନେଉ । ଏପରି ସବୁ ଅନେକ କଥାରେ ସେ ଆଦୌ ସଂଶ୍ଳିଷ୍ଟ ନଥାନ୍ତି ବା ପିଲାମାନଙ୍କ ମନଭାବ ଅନୁସାରେ କଥାଟିଏ କହିଦିଅନ୍ତି । ସ୍ୱାଧୀନ ଭାବରେ ସମସ୍ତେ ନିଜକୁ

ସଂକୀର୍ଣ୍ଣ ଚିନ୍ତାଧାରାରୁ ମୁକ୍ତ ରଖି ଉନ୍ମୁକ୍ତ ବାତାବରଣରେ ବିକଶିତ ହେବାକୁ ସେ ପ୍ରେରଣା ଦିଅନ୍ତି । ସେଦିନ ବେତନଟୀ ପାଖରେ ଗୋଟିଏ ଗ୍ରାମ ବାହାନଡ଼ା ଗଲୁ । ବେତନଟୀ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ସଂପାଦକ ନବକିଶୋର ପଟ୍ଟନାୟକଙ୍କର ଏହା ଗ୍ରାମ । ସଂଧ୍ୟାରେ ସଭା ଥାଏ । ଆମେ ପହଞ୍ଚିବା ପରେ ପାଠଚକ୍ର ଭାଇ ଜଣେ ହାତକୁ ଧୂପଫୁଲ ବଢ଼ାଇ ଦେଲେ ମା'ଙ୍କୁ ଅର୍ପଣ କରିବା ଲାଗି । ପ୍ରଥମେ ଚିତ୍ତଭାଇ ଧୂପଫୁଲ ନେଲେ । ତା'ପରେ ଆମ୍ଭେମାନେ ନେଲୁ । ଚିତ୍ତଭାଇ ଶ୍ରୀମା ଶ୍ରୀଅରବିନ୍ଦଙ୍କ ପ୍ରତିକୃତି ଚରଣରେ ଧୂପପୁଷ୍ପ ଅର୍ପଣ କରି ଭୂମିଷ୍ଠ ପ୍ରଣାମ କଲେ । ଉଠି ଆମ୍ଭମାନଙ୍କୁ ହସୁଥିବାର ଦେଖି କହିଲେ, "ମୁଁ ପରା ପ୍ରପତ୍ତି, ମୁଁ ଚିତ୍ତଭାଇ କି ?" ପ୍ରକୃତରେ ପୂଜ୍ୟପ୍ରପତ୍ତି ଯାହା ଯେପରି କରନ୍ତି ସେ ଠିକ୍ ସେହିପରି କରିଥିଲେ ।

ଅନେକ ସମୟରେ ଭକ୍ତିର ପ୍ରାବଲ୍ୟରେ ଟିକିଏ ଟିକିଏ ପାଗଳାମୀ ମଧ ଦେଖାଯାଏ । ଥରେ ଜଣେ ଯୁବକ ବନ୍ଧୁ ପ୍ରିୟ ଚିତ୍ତଭାଇ କାହିଁକି ମା'ଙ୍କୁ ପୂଜା କରିବାକୁ ସମାଲୋଚନା କରୁଛନ୍ତି ବୋଲି ଆମକୁ କହି ତାଙ୍କୁ ଗାଳି ଦେବାକୁ ଗଲେ । ଯୁବକମାନଙ୍କର ଟିକିଏ ସାହାସ ବେଶୀ ଥାଏ ତ, ତେଣୁ ସିଧା ଯାଇ ପଚାରିଲେ । ଚିତ୍ତଭାଇ ଖାଲି ପ୍ରଣେତା, ଶିଳ୍ପୀ, ଲେଖକ, ରସିକ, ପ୍ରେମିକ, ଜ୍ଞାନୀ, ବକ୍ତା, ଦ୍ରଷ୍ଟା, ସ୍ରଷ୍ଟା, ମନୋବିଜ୍ଞାନୀ ଏବଂ କର୍ମୀ ନୁହଁନ୍ତି ସେ ଜଣେ ପରମ ଯାଦୁକର । ସବୁ ପ୍ରକାର ଆପଣେଇ ନେବାର କଳା ତାଙ୍କୁ ଜଣା । ଯୁବକ ଜଣକ ତାଙ୍କ ନିଜ ଭାଇଙ୍କୁ ଚିତ୍ତଭାଇ ଏପରି କହିଥିବା କଥା କହିଲାରୁ ଚିତ୍ତଭାଇ କହିଲେ, "ମୁଁ କହିଲି ଯେମନ୍ତ, ସେ ବୁଝିଲା ତେମନ୍ତ । ଯାଅ ପଚାରିବ ଅନାଦି ଭାଇ ବେଶୀ ଶ୍ରୀମା ଶ୍ରୀଅରବିନ୍ଦଙ୍କ ଫଟୋ ବାଣ୍ଟିଛନ୍ତି ନା ମୁଁ ବେଶୀ ଫଟୋ ବାଣ୍ଟିଛି ?" ଯୁବକ ଜଣକ ସଂପୂର୍ଣ୍ଣ ଅପ୍ରସ୍ତୁତ ଓ ବିନୀତ ହୋଇ ଫେରିଲେ । ଆମ୍ଭେମାନେ ଫଟୋ ସହିତ ବାନ୍ଧି ହୋଇଥାଉ । ଚିତ୍ତଭାଇ ଆମକୁ ଶକ୍ତି ସହିତ ଯୁକ୍ତ ହେବାର ମହାନ୍ ଦୀକ୍ଷାଟି ଦେଇଥାନ୍ତି । ସେ ସଦାବେଳେ ଶ୍ରୀମା ଶ୍ରୀଅରବିନ୍ଦଙ୍କ ନାମ ଉଚ୍ଚାରଣ କରୁଥାନ୍ତି ତାଙ୍କ ଆଲୋଚନାରେ ।

ପରିଶେଷରେ ମାନବବାଦର ଏକ ମହନୀୟ ଚରିତ୍ର ତାଙ୍କ ଭିତରେ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳାପରି ଜଳ ଜଳ ହେଉଥାଏ । ଉଚ୍ଚ-ନୀଚ, ସବର୍ଣ୍ଣ-ଅସବର୍ଣ୍ଣ, ଶିକ୍ଷିତ-ଅଶିକ୍ଷିତ, ବ୍ରାହ୍ମଣ-କରଣ, ହରିଜନ, ଆଦିବାସୀ, ବାଳୁତ-ବୃଦ୍ଧ କୌଣସି ଭେଦଭାବ ତାଙ୍କ ପାଖରେ ନଥାଏ । ଅଭେଦ ତତ୍ତ୍ୱର ସଂଧାନୀ ମଣିଷ ଭିତରେ ଭଗବାନଙ୍କୁ ପ୍ରତିଷ୍ଠା କରିବା ବା ମନୁଷ୍ୟ ଭିତରେ ତାଙ୍କ ଭଗବତ୍ ରାଜ୍ୟ ପ୍ରତିଷ୍ଠା କରିବାରେ ସେ ସତତ ପ୍ରୟାସ କରି ଆସୁଛନ୍ତି । ତ୍ରିଲୋଚନପୁର ହାଇସ୍କୁଲ ଶିବିରରେ ମୋତେ କହିଥାନ୍ତି ଯେତେବେଳେ ରାତ୍ରିରେ ନଦୀକୁ ନିତ୍ୟକର୍ମ ପାଇଁ ଯିବ ମୋତେ

ଡାକିବ ।'' ମୁଁ ଜାଣେ ବୟସ୍କ ଲୋକ, ଜ୍ଞାନୀ ଲୋକ, ମହାନ୍ ବିଦ୍ୱାନ, ସବୁ ବିଶେଷଣ ତାଙ୍କୁ ନିଅଣ୍ଟ- ଅନ୍ଧାର ରାତ୍ରି କୁହୁଡ଼ି ଭିତରେ ମୁଁ କାହିଁକି ତାଙ୍କୁ ଡାକିବାକୁ ଯିବି ? ମୁଁ ଅନ୍ଧାର ରାତ୍ରି, ନିର୍ଜନତା, ଜଙ୍ଗଲ, ପାଣି-ପବନ, ପ୍ରାକୃତିକ ଦୃଶ୍ୟ ଓ ଗାଉଁଲି ଜୀବନଧାରାକୁ ଭଲପାଏ ବୋଲି ସେ ଜାଣିଛନ୍ତି । ମାତ୍ର ଅଳକା ନଈ କୂଳର ବାଗଲପୁର ପିଲା ଆହୁରି ଗାଉଁଲିଆ । ପରଦିନ ରାତ୍ରି ୪.୩୦ ହୋଇଥିବ । ବହୁତ କୁହୁଡ଼ି । ଅନ୍ଧାରରାତ୍ରି, ନଈ କୂଳରେ ମୁଁ ଚାଲିଛି ଅତ୍ୟନ୍ତ ସନ୍ତର୍ପଣରେ ନୀରବତାର ମଧୁଝରା ସାନ୍ନିଧ ଭିତରେ । ଶୁଭିଲା, 'ଅନାଦିଭାଇ' ? ଦଉଡ଼ି ଗଲି, 'ଚିତ୍ତଭାଇ, ଆପଣ ସତରେ ଏହି ଅନ୍ଧାରିଆ ରାସ୍ତାରେ ଆସିଲେ ?'' ନଦୀ ଧାର ଦୂରରେ ହଜିଲା ପରି ଲାଗିଲେ ବି ତାଙ୍କୁ ଦେଖାଇ ନେଲି । କୃତଜ୍ଞତାରେ ହୃଦୟ ତରଳିଗଲା । ଏତେବଡ଼ ଲୋକ ଏହିପରି ଗ୍ରାମ୍ୟଜୀବନକୁ ଏତିକି ଆଦର କରନ୍ତି ! କେତେ ସରଳ, କେତେ ଅମାୟିକ ସେ ଜୀବନ । ପିଲାଙ୍କ ଶ୍ରେଣୀକୁ ଯାଇ ନିଜେ ପାଠ ପଢ଼ାନ୍ତି । ଗଣିତ ଓ ଇଂରାଜୀରେ ଜଣେ ପ୍ରବୀଣ ଶିକ୍ଷକ । ଯେଉଁମାନଙ୍କର ପାଠ ହୁଏନାହିଁ ଚିତ୍ତଭାଇ ସେମାନଙ୍କୁ ପାଠ କଲା ଶିକ୍ଷା ଦିଅନ୍ତି । ପାଞ୍ଚଜଣ ଦେଖିଲେ ଟିକିଏ ସୌଜନ୍ୟତା ବା ନମନୀୟତାରେ ଦୂରେଇ ଦୂରେଇ ବାଟ ଚାଲନ୍ତି । ମାତ୍ର ପିଲାଙ୍କୁ ଦେଖିଲେ ପାଖେଇ ପାଖେଇ ଆସନ୍ତି । ତାଙ୍କ ଭିତରେ ଯେଉଁ କାର୍ଯ୍ୟକାରିଣୀ ଶକ୍ତି ଅଛନ୍ତି, ତାଙ୍କୁ ସେ ସତେ ଅବା ସତତ ଶିଶୁଟିଏ କରି ତିଆରି କରିଛନ୍ତି । ପୂଜ୍ୟ ବାବାଜି ମହାରାଜଙ୍କ ପାଖରେ ଗୋଟିଏ ଛୋଟ ଶିଶୁପରି ସେ ବସନ୍ତି, କିନ୍ତୁ ମହାରାଜ ତାଙ୍କୁ ଅତ୍ୟନ୍ତ ଉଚ୍ଚ ସମ୍ମାନ ଦିଅନ୍ତି । ଚିତ୍ତଭାଇ ବୋଲି ସଂବୋଧନ କରନ୍ତି ।

ତାଙ୍କର ସେହି ସୀମାହୀନ ବ୍ୟକ୍ତିତ୍ୱ ପାଖରେ, ତାଙ୍କର ଅଶୀତିତମ ବୟସ ନିକଟରେ ମୋର ଶ୍ରଦ୍ଧାର ପ୍ରଣାମ ନିବେଦନ କରୁଛି । ରୁପ୍ରା ଅଧ୍ୟୟନ ଶିବିରରେ 'ଯୋଗ ସମନ୍ୱୟ'ର ପ୍ରଥମ ଅଧ୍ୟାୟ ଆଲୋଚନା ହେଉଥାଏ । କଳାହାଣ୍ଡିର ଦୂରସ୍ଥ ସେ ଗ୍ରାମରେ ମହିଳା ପାଠଚକ୍ରର ଗୋଟିଏ ସ୍ୱତନ୍ତ୍ର ଅଧିବେଶନ ଆୟୋଜିତ ହୋଇଥାଏ । ଚିତ୍ତଭାଇ ତରୁଣମାନଙ୍କ ଗହଣରେ ଜଣେ ସମାଜବାଦୀ ବିପ୍ଳବୀ ପରି ଆଲୋଚନା କରୁଥାନ୍ତି । ଆମ ଭିତରେ ଯେଉଁ ଅନ୍ୟକୁ ଶୋଷଣ କରି ବଞ୍ଚି ରହିବା ପ୍ରବୃତ୍ତି ଅଛି, ତାକୁ ବାରମ୍ବାର ଆଘାତ କରୁଥାନ୍ତି । ଆମେ ଯେପରି କେବଳ ସାମ୍ୟର ପୂଜାରୀ ହୋଇପାରିବା ତା'ର ଦିଗ୍‌ଦର୍ଶନ ଦେଉଥାନ୍ତି । ଅନେକ ତରୁଣ ତରଳି ଯାଉଥାନ୍ତି ତାଙ୍କର ପୁଞ୍ଜୀବାଦ ଓ ପ୍ରତିକ୍ରିୟାଶୀଳ ସାମନ୍ତବାଦୀମାନଙ୍କ ପ୍ରତି କଟାକ୍ଷରେ, ଏକ ମେହନତି ଜନତା ପ୍ରତି ସଂବେଦନଶୀଳତାରେ । ଠିକ୍ ପରେ

ପରେ ଭଉଣୀମାନଙ୍କ ଗହଣରେ ଯେତେ ବେଳେ ପହଞ୍ଚି ଆଲୋଚନା କଲେ- ମୁଁ ନିଜେ ତାଙ୍କ ସହିତ ଥିଲି ଉଭୟ ସ୍ଥାନରେ-ବାବାଜି ମହାରାଜଙ୍କ ଲୋକ ସାହିତ୍ୟରୁ ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ ଓ ଦିବ୍ୟଯୁଗ ସ୍ଥାପନାରେ ନାରୀ ବିଷୟକୁ ଏପରି ପ୍ରାଞ୍ଜଳଭାବରେ ବୁଝାଇଲେ- କିଏ ସେ ବର୍ଣ୍ଣନା କରିପାରିବ ତାଙ୍କର ଐଶ୍ୱର୍ଯ୍ୟକୁ ? ନାରୀମାନେ ଯେ ଭବିଷ୍ୟତ ବଂଶଧରକୁ ଜନ୍ମଦେବେ ଏବଂ ସେମାନଙ୍କର ବିକାଶର ପଥ ଉନ୍ମୁକ୍ତ କରିବେ ତାର ପ୍ରତ୍ୟେକଟି ଦିଗ ତାଙ୍କ ଅଭିବ୍ୟକ୍ତିରେ ଭକ୍ତିରସାତ୍ମକ ହୋଇ ଉଠୁଥାଏ । ଦୂରରୁ ତାଙ୍କୁ ଦେଖିହୁଏ । ନିକଟରୁ ମଧ ଦେଖିହୁଏ । ଦୂର ଓ ନିକଟ ଉଭୟ ଦିଗରୁ ସେ ଜଣେ ଜଣେ ପ୍ରୟୋଗଶାଳା ଭବିଷ୍ୟତର । ଜଣେ ମନୁଷ୍ୟ ମଧ୍ୟରେ ଅସୀମ ଗୁଣରାଜିର ବିନ୍ୟାସ ବସାଇ କରୁଣାମୟୀ ମା' ଯେପରି ଆମ୍ଭମାନଙ୍କୁ ଶିକ୍ଷା ଦିଅନ୍ତି, ''ମୋର ସନ୍ତାନ କେହି ଶୂନ୍ୟ ନୁହଁନ୍ତି- ପ୍ରତ୍ୟେକଙ୍କ ଭିତରେ ନିଜ ନିଜର ଅସୀମ ସମ୍ଭାବନାରାଜି ରହିଛି ।'' ଚିଉଭାଇ ଆମ୍ଭମାନଙ୍କ ନିକଟରେ ବହୁଧା ରଶ୍ମି ବିକୀର୍ଣ୍ଣକାରୀ ସେହି ଅପୂର୍ବ ଜ୍ୟୋତି ଏବଂ ତାଙ୍କର ଜ୍ୟୋର୍ତିମୟ ଜୀବନ ସଦା ଅମ୍ଳାନ ଓ ଦେଦୀପ୍ୟମାନ ।


ଶ୍ରୀ ଅନାଦି ଚରଣ ସ୍ୱାଇଁ

*ସା/ପୋ ଶ୍ରୀଅରବିନ୍ଦ ଶ୍ରୀକ୍ଷେତ୍ର*

*ଭାୟା- କୋଟସାହି, ଜିଲ୍ଲା: କଟକ-୭୫୪୦୨୨*


# ମୋ ଦୃଷ୍ଟିରେ ଚିତ୍ତରଂଜନ

ନିଖିଳ ଉତ୍କଳ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ଅପାଭାଇମାନଙ୍କର ଏକ ସମାବେଶ ୧୯୮୦ ମସିହାରେ ଆୟୋଜିତ ହୋଇଥାଏ ଭୁବନେଶ୍ୱରଠାରେ ସମ୍ଭବତଃ ଜୁନ୍ ମାସରେ । ଯେତେଦୂର ମନେ ପଡ଼େ ସେହି ସମ୍ମିଳନୀରେ ଅନେକ ଶିକ୍ଷକ ଶିକ୍ଷୟତ୍ରୀ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଆସିଥାନ୍ତି । ଦିଲ୍ଲୀରୁ ଓ ମହାରାଷ୍ଟ୍ରରୁ ମଧ ଶୁଭେଚ୍ଛୁ ଶିକ୍ଷାପ୍ରେମୀ ଓ ଅନିସନ୍ଧିତ୍ସୁ ଆସିଥିଲେ ଓଡ଼ିଶାରେ ଶ୍ରୀମା ଶ୍ରୀଅରବିନ୍ଦଙ୍କ ଶିକ୍ଷାଧାରାରେ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରଗୁଡ଼ିକ କିପରି କ୍ରାନ୍ତିକାରୀ ଦିଗ୍‌ଦର୍ଶନ ଦେଉଛି ସେ ବିଷୟରେ କିଞ୍ଚିତ୍ ଅବଗତ ଦେବା ପାଇଁ ଓ ଅନୁପ୍ରାଣିତ ହେବାପାଇଁ ମଧ । ସମାବେଶର ଏକ ଅନ୍ତରଂଗ ମୁହୂର୍ତ୍ତ । ଦିନେ ଏକ ଅପରାହ୍ନରେ ବିଦ୍ୟାଳୟମାନଙ୍କର ଅପାଭାଇମାନଙ୍କର ସମସ୍ୟାବଳୀ ଓ ତା'ର ସମାଧାନ ଏହିସବୁ ବିଷୟରେ ଅତି ଅନ୍ତରଂଗ ଖୋଲା ଖୋଲି ଆଲୋଚନା ପାଇଁ ଆହ୍ୱାନ ଦେଉଥାନ୍ତି ଜଣେ ବ୍ୟକ୍ତି ଯେ

କି ସଭାକାର୍ଯ୍ୟ ପରିଚାଳନା କରୁଥାନ୍ତି, Co-ordinator କାର୍ଯ୍ୟ ତୁଲାଉଥାନ୍ତି ।

ସେହି ଆଲୋଚନାରେ ମୋର ମଧ୍ୟ ପାଳି ପଡ଼ିଲା । Co-ordinator ମହୋଦୟ ସବୁ ସମସ୍ୟାକୁ purge out କରିବା ପାଇଁ କହିଲେ । ମୋର ସ୍ୱଭାବସୁଲଭ ଭଙ୍ଗୀରେ ମୋର ହୃଦୟରୁ ଯାହା ଆସିଲା, ଯାହା ମୁଁ ଅନୁଭବ କରିଥିଲି ତାହା ପରିପ୍ରକାଶ କରିଥିଲି । ମୁଁ ଥିଲି ଏକ ବିଦ୍ରୋହୀ ଆତ୍ମା । ମୋର ହୃଦୟ କହୁଥିଲା ମୁଁ କିଛି ଭୁଲ୍ କହିନାହିଁ । କିନ୍ତୁ ମୋର କେତେଗୋଟି ପଦ ଏକ ଝଡ଼ର ସୂତ୍ରପାତ କରିଥିଲା ଓ ମୁଁ ଅପମାନିତ ତଥା ଲାଞ୍ଛିତ ହୋଇଥିଲି ତଥାକଥିତ ଜ୍ଞାନୀ, ଗୁଣୀ ଓ ପଣ୍ଡିତମାନଙ୍କଦ୍ୱାରା । କିନ୍ତୁ ଜଣେ ମତେ ବୁଝିଥିଲେ, ମୋର ଆତ୍ମାର ସ୍ୱରକୁ ଚିହ୍ନି ପାରିଥିଲେ ଏକ ଦରଦୀ ଓ ସୁହୃଦ୍‌ର ହୃଦୟ ନେଇ । ମୁଁ ତାଙ୍କୁ ଚିହ୍ନି ନ ଥିଲି । କିନ୍ତୁ ତାଙ୍କୁ ସେଇଦିନୁ ଏକ ଅନନ୍ୟ ଓ ଭିନ୍ନ ବ୍ୟକ୍ତି ବୋଲି ଜାଣିବାର ସୁଯୋଗ ପାଇଲି । ସେ ହେଉଛନ୍ତି ସମସ୍ତଙ୍କର ପ୍ରିୟ ଓ ଆଦରଣୀୟ ସମ୍ମାନନୀୟ ଓ ପୂଜନୀୟ ଚିତ୍ତଭାଇ । ଚିତ୍ତଭାଇ ଜଣେ ଅନବଦ୍ୟ ଚିନ୍ତାନାୟକ ଓ ପ୍ରଥିତଯଶା ବାଗ୍ମୀ ଓ ପଣ୍ଡିତ । ଯଥାର୍ଥରେ ସେ ସମସ୍ତଙ୍କୁ ତାଙ୍କର ଯାଦୁକାରୀ ବାକ୍‌ପଟୁତା ଓ ସହୃଦୟତାର ନିର୍ମଳ ପ୍ରେମରେ ବାନ୍ଧି ପକାନ୍ତି । ତାଙ୍କ ପାଖରେ ନା ଅଛି ଛଳନା, ନା କପଟତା । ସରଳ, ନିଷ୍କପଟ, ହୃଦୟବାନ୍, ଉଦାର, ନମ୍ର, ସହିଷ୍ଣୁ, କ୍ଷମାଶୀଳ ଓ ପ୍ରେମମୟ ସେ । ଶିଶୁ ଠାରୁ ବୃଦ୍ଧଯାଏ ତାଙ୍କୁ ଅତି ଆଦରରେ ପ୍ରେମର ସହିତ 'ଚିତ୍ତଭାଇ' ବୋଲି ସମ୍ବୋଧନ କରନ୍ତି । ସଭାସମିତିରେ ତାଙ୍କୁ ନ ପାଇଲେ ଖୋଜନ୍ତି । ପଚାରନ୍ତି ଚିତ୍ତଭାଇ କାହାଁନ୍ତି ? ଚିତ୍ତଭାଇଙ୍କର କଣ କିଛି programme ନାହିଁକି ?

ମୋର ପ୍ରଥମ ପରିଚୟ ପରେ ଅନେକ ଦିନ ବିତିଯାଇଥାଏ । ମୁଁ ଖୋର୍ଦ୍ଧାରେ ଥିଲାବେଳେ ତାଙ୍କର ଲେଖା ସମ୍ବାଦର ଦ୍ୱିତୀୟ ପୃଷ୍ଠାରେ ପ୍ରକାଶ ପାଉଥିଲା । ସେଗୁଡ଼ିକ ଅଧ୍ୟୟନ କରି ଏକ ଚିଠି ଲେଖିଥିଲି ତାଙ୍କ ପାଖକୁ । ସେ ଉତ୍ତରରେ ଲେଖିଥିଲେ, ''ମାତୃଭବନରେ Class ହେଉଛି । ଆସିବ, ଆଲୋଚନା କରିବା । ତୁମର ସବୁ ପ୍ରଶ୍ନର ଆଲୋଚନା କଲେ ଉତ୍ତର ମିଳିଯିବ ।'' ମୁଁ ମାତୃଭବନ Classକୁ ଆସିଲି । ପୁଣି ସେଇ ମହାନ୍ ପଣ୍ଡିତଙ୍କର The Life Divineର ଅନନ୍ୟ ବିଶ୍ଳେଷଣ ମୋତେ ଚକିତ ଓ ସମ୍ମୋହିତ କରିଥିଲା । ଯଦିଓ ମୁଁ ଆଗରୁ କିଛି ପଢ଼ିଥିଲି । ଠିକ୍ ଠିକ୍ ଭାବରେ କିଛି ହୃଦୟଙ୍ଗମ କରିପାରି ନଥିଲି । 'ଦିବ୍ୟ ଜୀବନ' ଗ୍ରନ୍ଥକୁ ସେ ଏଭଳି ତାଙ୍କ ହାସ୍ୟରସାତ୍ମକ ଶୈଳୀରେ ବିଶ୍ୱର ମହାନ୍ ମନିଷୀମାନଙ୍କର ଲେଖାକୁ ଉଦ୍ଧୃତ କରି ଓ କିହାତି ପାର୍ଥିବ ଓ ଦୈନନ୍ଦିନ

ଜୀବନଶୈଳୀରୁ ଉଦାହରଣମାନ ନେଇ ବୁଝାଉଥାନ୍ତି, ଯାହାକି ସାଧାରଣ ଆମ ଭଳି ଅଜ୍ଞାନ ଓ ଫରଫର ହେଉଥିବା ସଫରୀମାନେ ସଠିକ୍ ଭାବରେ ହୃଦୟଙ୍ଗମ କରିପାରୁଥିଲୁ । ତାଙ୍କର ଉପସ୍ଥାପନା ଶୈଳୀ ଅନନ୍ୟ ଓ ଅବର୍ଣ୍ଣନୀୟ । ସେ ଜଣେ Colossal Psychologist ପ୍ରତ୍ୟେକ ବ୍ୟକ୍ତିର ଅନ୍ତରକୁ ପଢ଼ିପାରନ୍ତି ସେ । ମୁଁ ଏହା ଗଭୀର ଭାବରେ ଅନୁଭବ କରିଛି । ମୁଁ କଟକ ବଦଳି ହୋଇ ଆସିଥାଏ ଓ ନିୟମିତ ରବିବାସରୀୟ କ୍ଲାସ୍‌ରେ ଯୋଗ ଦେଉଥାଏ । ଉଦାହରଣ ମାଧ୍ୟମରେ Letters on Yoga ର practical ବା ବ୍ୟାବହାରିକ ବିଷୟବସ୍ତୁ ସବୁକୁ ସେ ଏଭଳି ପ୍ରାଞ୍ଜଳ ଭାବରେ ଓ ହୃଦୟଗ୍ରାହୀ ଭାବରେ ବୁଝାଉଥାନ୍ତି ଯେ ମୁଁ ଅନ୍ୟ କେଉଁ ଶିକ୍ଷକଙ୍କଠାରୁ ଏପରି ଶୁଣିନି କି ବୁଝିନି ମଧ । ମୁଁ ଶ୍ରୀମା ଶ୍ରୀଅରବିନ୍ଦଙ୍କୁ ଶାରିରୀକ ଭାବରେ ଦର୍ଶନ କରିନାହିଁ । ଯଦିଚ ମୁଁ ତାଙ୍କୁ ଦୀର୍ଘ ୨୯ ବର୍ଷ ହେଲା ପାଠଚକ୍ର ମାଧମରେ ଓ ପୁସ୍ତକମାଧମରେ ଜାଣିଛି । କୈଶୋର ଅବସ୍ଥାରୁ ଜାଣିବା ସତ୍ତ୍ୱେ ସଠିକ୍ ଭାବରେ ମୁଁ ତାଙ୍କୁ ବୁଝିଲି ଚିତ୍ତଭାଇଙ୍କ କ୍ଲାସରୁ । ସେଥିପାଇଁ ଶ୍ରୀମା ଶ୍ରୀଅରବିନ୍ଦ ମୋର ଦିବ୍ୟଗୁରୁ ହେଲେ ହେଁ ଯେ ମୋତେ ଆଧାତ୍ମିକ ଜ୍ଞାନ ପ୍ରଦାନ କରିଛନ୍ତି ସେ ହେଉଛନ୍ତି ମୋର ପାର୍ଥିବ ଗୁରୁ ଆମର ସର୍ବଜନପ୍ରିୟ ଅଧାପକ ଚିତ୍ତରଂଜନ ଦାସ ମହୋଦୟ ।

ତାଙ୍କର ଜ୍ଞାନ ଅସୀମ । ମୁଁ ତାଙ୍କୁ ଗ୍ରୀସ୍ ଦେଶର ପ୍ଲାଟୋ ଓ ସକ୍ରେଟିସ୍‌ଙ୍କ ସହିତ ତୁଳନା କରିଥାଏ । ସେ ଜଣେ ଦାର୍ଶନିକ ଓ କନ୍‌ଫୁସିୟସ୍ ପରି witty ଓ ଭବିଷ୍ୟଦ୍ରଷ୍ଟା । ଯେ ତାଙ୍କ ସହିତ ମିଶିଛି ତାଙ୍କର ଜ୍ଞାନର ଗଭୀରତାର ସ୍ପର୍ଶ କିଛି ମାତ୍ରାରେ ପାଇଥିବ ନିଶ୍ଚୟ । କ୍ଲାସ୍ ମାନଙ୍କରେ କେତେ କେତେ ଅଧାପକ, ଶିକ୍ଷକ, ଛାତ୍ର ଭାଇଭଉଣୀ ସମସ୍ତେ ତାଙ୍କର Scholasticismକୁ ପ୍ରଶଂସା ନ କରି ରହିପାରନ୍ତି ନାହିଁ । ସେ ଜଣେ ବିରାଟ ବିଜ୍ଞ ବ୍ୟକ୍ତି, ଦର୍ଶନ, ମନୋବିଜ୍ଞାନ, ସମାଜଶାସ୍ତ୍ର, ନୃତତ୍ତ୍ୱ, ବିଜ୍ଞାନ, ଗଣିତ, ସାହିତ୍ୟ କଳା ଓ ସଙ୍ଗୀତରେ ତାଙ୍କର ଅଗାଧ ଜ୍ଞାନର ପରିଚୟ ଆମେ ପାଇଛୁ । କିନ୍ତୁ ସେ ଏତେ ସରଳ ଓ ନମ୍ର ଯେ ତାଙ୍କୁ ଦେଖିଲେ କେହି ତାଙ୍କର ସେହି ଅପରିମେୟ ଜ୍ଞାନର ଅଗାଧ ସମୁଦ୍ରରେ ଅବଗାହନ କରିବା କଥାଟିକୁ ବିଶ୍ୱାସ କରିପାରିବ ନାହିଁ । କାରଣ ସେ ଶିଶୁଭଳି ଅତି ସରଳ, ତାଙ୍କ ହୃଦୟ ଫୁଲଭଳି ଅତି କୋମଳ । ଦରିଦ୍ରର ସଖା । ଦଳିତ ନିଷ୍ପେଷିତ ମାନବସମାଜର ସେ ଦରଦୀ ବନ୍ଧୁ । ତାଙ୍କର ଲେଖନୀ ପ୍ରଚଣ୍ଡଭାବରେ ଭାରତର ସମାଜ ବ୍ୟବସ୍ଥାରେ ଦରିଦ୍ର ଓ ନିଷ୍ପେସିତ ମଣିଷମାନଙ୍କର ଅବସ୍ଥାର ଉନ୍ନତିପାଇଁ ସର୍ବଦା ନିରପେକ୍ଷ ଭାବରେ ପରିଚାଳିତ । ସେ ତୀକ୍ଷ୍ଣଭାବରେ ଏ

ଦେଶର ଶାସକ ତଥା ଶିକ୍ଷିତ ଗୋଷ୍ଠୀଙ୍କର ଛଳନା ଓ କପଟତାପୂର୍ଣ୍ଣ ଆଚରଣକୁ ତୀବ୍ର ଭାଷାରେ ସମାଲୋଚନା କରିବା ପାଇଁ ପଶ୍ଚାଦ୍‌ପଦ ହୋଇ ନାହାଁନ୍ତି । କିନ୍ତୁ ସେ ସମସ୍ତଙ୍କୁ ଭଲପାଇ ଲେଖନ୍ତି । ଶୋଷକ ଓ ଲାଞ୍ଛିତ ଉଭୟଙ୍କ ପାଇଁ ତାଙ୍କର ଦରଦୀପ୍ରାଣର ପରିଚୟ ଆମେ ତାଙ୍କ ଲେଖାମାନଙ୍କରୁ ପାଉ । ସେ ସମଦର୍ଶୀ । ଗୀତା'ର ଆପ୍ତବାଣୀକୁ ସେ ନିଜ ଜୀବନରେ ଫୁଟାଇ ପାରିଛନ୍ତି । ''ବିଦ୍ୟା ବିନୟସମ୍ପନ୍ନେ ବ୍ରାହ୍ମଣେ ଗବି ହସ୍ତିନୀ ଶୁନିଚୈବ ଶ୍ୱପାକେଚ ପଣ୍ଡିତଃ ସମଦର୍ଶୀନଃ ।'' ଆବାଳ ବୃଦ୍ଧ ବନିତା, କି ଦରିଦ୍ର କି ଧନୀ, ଜ୍ଞାନୀଠାରୁ ଅଜ୍ଞାନଯାଏ ସମସ୍ତେ ତାଙ୍କୁ ଆଦରରେ ଚିତ୍ତଭାଇ ବୋଲି ସମ୍ବୋଧନ କରନ୍ତି । ଶିଶୁମାନେ ଅତି ଆଦରରେ ତାଙ୍କ ସହିତ ଖେଳନ୍ତି, ବୁଲନ୍ତି, ଗପ ଶୁଣନ୍ତି । ଜଣେ ଆଦର୍ଶ ଶିକ୍ଷକଙ୍କଠାରୁ ଆହୁରି ଉର୍ଦ୍ଧ୍ୱରେ ସେ ଯଥାର୍ଥରେ ଜଣେ ଗୁରୁ ଓ ଋଷି । ତାଙ୍କର ଶତ୍ରୁ କେହି ନାହାଁନ୍ତି । ସମସ୍ତେ ତାଙ୍କୁ ପ୍ରେମସମ୍ଭାଷଣ କରନ୍ତି । ଆକୁମାରୀ ହିମାଳୟ ତାଙ୍କର ବନ୍ଧୁ ଓ ସୁହୃଦ୍ ଅଛନ୍ତି । ଅନେକ ବିଦେଶୀ ମଧ୍ୟ ତାଙ୍କୁ ଜାଣନ୍ତି । ତାଙ୍କର ଗଭୀର ସାହିତ୍ୟାନୁରାଗ ଓ ମାନବପ୍ରେମ ତାଙ୍କୁ ଓଡ଼ିଶା କାହିଁକି ସମଗ୍ର ପୃଥିବୀର ଜଣେ ଜ୍ଞାନୀ ଗୁଣୀ କ୍ରାନ୍ତଦର୍ଶୀ ଭବିଷ୍ୟଦ୍‌ଦ୍ରଷ୍ଟା ମହାନ୍ ଶିକ୍ଷକ ହିସାବରେ ଗଣେ । ଆମର ସୌଭାଗ୍ୟ ସେହି ଭଳି ଜଣେ ଗୁରୁଙ୍କୁ ଆମେ ଆମ ଗହଣରେ ପାଇଛୁ । ତାଙ୍କ ଲେଖା ସହ ମୋର ପ୍ରଥମ ପରିଚୟ 'ଶିଳାତୀର୍ଥ' ପୁସ୍ତକ ଅଧ୍ୟୟନ ମାଧ୍ୟମରେ, ଯାହାକି ମୋତେ ବହୁଭାବରେ ସ୍ପର୍ଶ ଓ ଆନନ୍ଦିତ କରିଥିଲା । ତାଙ୍କର ଗଭୀର ନିଷ୍ଠା ଓ ଅନୁସନ୍ଧିତ୍ସା ତାଙ୍କୁ ହିମାଳୟରେ ପ୍ରକୃତିର ପରିଚୟ ଦେଇଥିଲା । ମୋତେ ସବୁଠୁ ବେଶୀ ସ୍ପର୍ଶ କରିଥିଲା ତାଙ୍କର ଗଭୀର ଅନ୍ୱେଷାର ଆତ୍ମା । ସେ ଏତେ ଗଭୀରକୁ ଯାଇ ପ୍ରକୃତିର ଅମାପ ସୌନ୍ଦର୍ଯ୍ୟକୁ ତାଙ୍କ ଲେଖନୀ ମୁନରେ ପ୍ରାଣଦାନ କରିବା ସହିତ ଭାରତର ଗଭୀର ଆଧ୍ୟାତ୍ମିକ ଦର୍ଶନର ଅବତାରଣା କରିଛନ୍ତି । ତଥାକଥିତ ଉପଚାର ଓ କର୍ମକାଣ୍ଡର ଉର୍ଦ୍ଧ୍ୱକୁ ଯାଇ ମଣିଷ ଏକ ଉଚ୍ଚତର ଆତ୍ମିକ ଅନ୍ୱେଷଣରେ ହିମାଳୟକୁ ଦେଖି ପାରିଲେ ତଥାକଥିତ ତୀର୍ଥସ୍ଥାନ ସବୁ ତାଙ୍କୁ ପାହାଚ ଭଳି ପ୍ରତୀୟମାନ ହେବ । ଧର୍ମର ଅସଲ ଉଦ୍ଦେଶ୍ୟ ସେ ବୁଝିବ । ଉତ୍ତରୋତ୍ତର ଉର୍ଦ୍ଧ୍ୱକୁ ascent ବା ଆରୋହଣ ହିଁ ତା'ର ଆତ୍ମାର ପରିଚୟ ଦେବ । ଅସଲ ଅଧ୍ୟାତ୍ମର ପରିଚୟ ପାଇବାକୁ ଶିଳାତୀର୍ଥ ମତେ ବହୁତ ବହୁତ ସାହାଯ୍ୟ କରିଛି । ଏକ ଦିବ୍ୟ ଯାତ୍ରା ପ୍ରକୃତ ତୀର୍ଥଯାତ୍ରାର ପରିଣତ ହେବ ସେତେବେଳେ, ଯେତେବେଳେ ସେ ପ୍ରକୃତ ଯାତ୍ରାର ଉଦ୍ଦେଶ୍ୟ ବିଷୟରେ ସମ୍ପୂର୍ଣ୍ଣ ଭାବରେ ସ୍ପଷ୍ଟ ଧାରଣା କରିଥିବ । ଶିଳାତୀର୍ଥ ଏକ adventure ତଥା ଆଧ୍ୟାତ୍ମିକ ଅନ୍ୱେଷାର ପ୍ରତୀକ ବହନ କରେ ।

ତା'ପରେ ଡେନମାର୍କ 'ପଶ୍ୟତି ଦିଶି ଦିଶି', 'ନେତା ଓ ନାରାୟଣ', 'ଅରମ୍ୟ ରଚନା', 'ଓଡ଼ିଶା ଓ ଓଡ଼ିଆ', 'ଭିନ୍ନ ଜଣେ ବିବେକାନନ୍ଦ', 'ଜାତିରେ ମୁଁ ଯବନ' ଓ ସର୍ବୋପରି 'ମିତ୍ରସ୍ୟ ଚକ୍ଷୁସା' ଓ 'ରୋହିତର ଡାଏରୀ' ମୋର ଆତ୍ମାକୁ ବିପୁଳଭାବରେ ଆନ୍ଦୋଳିତ କରିଛି। ପ୍ରଥମେ 'ଓଡ଼ିଶା ଓ ଓଡ଼ିଆ' ଅଧ୍ୟୟନ କରି ମୁଁ ଓଡ଼ିଶାର ସମ୍ପୂର୍ଣ୍ଣ ଚିତ୍ର ପାଇପାରିଛି। ଏତେ ଗବେଷଣାଧର୍ମୀ ଲେଖା ମୁଁ କେବେ କୋଉଠି ଦେଖି ନଥିଲି କି ପଢ଼ି ନଥିଲି। କାରଣ ମୁଁ କ୍ଷୁଦ୍ର ଅଳ୍ପ ଶିକ୍ଷିତ ବ୍ୟକ୍ତି ଜଣେ। 'ଜଗନ୍ନାଥ ରହସ୍ୟ' ଓ 'ଓଡ଼ିଶାର ଧର୍ମଜୀବନ' ଅଧ୍ୟାୟ ଦୁଇଟି ମତେ ବେଶୀ ଦୋଳାୟିତ କରିଛି। କାରଣ ଅସଲ ଧର୍ମ ଓ ଅସଲ ଆଧ୍ୟାତ୍ମିକତାର ପରିଚୟ ମୁଁ ସେ ଦୁଇଟି ଅଧ୍ୟାୟରୁ ପାଇଛି। ଜଗନ୍ନାଥଙ୍କୁ ପୂଜୁଥିବା କୋଟି କୋଟି ଓଡ଼ିଆଙ୍କର ଭକ୍ତି ଓ ଶ୍ରଦ୍ଧାକୁ ସମ୍ମାନ କରି ମୁଁ ତଥାପି କହୁଛି ଯେ ସେ ଏକ ପ୍ରତୀକ, ସର୍ବୋତ୍ତମ ଓ ସର୍ବାଧୀଶ୍ୱର ବିଶ୍ୱର ଦେବତା ଇତ୍ୟାଦି ଇତ୍ୟାଦି ନୁହେଁ। ଜଣେ ଆଧ୍ୟାତ୍ମବାଦୀ ସେଇ ପ୍ରତୀକମାଧ୍ୟମରେ ପରମଈଶ୍ୱରଙ୍କର ସନ୍ଧାନ କରିପାରେ, କିନ୍ତୁ ସେଠି ଅଟକିଯାଇ ନୁହେଁ, ତୁଚ୍ଛା କର୍ମକାଣ୍ଡ ବା rituals ଓ ଉପଚାରରେ ପରିପୁଷ୍ଟ ସେଇ ମହାପ୍ରତୀକଟିଏ ଖାଲି ପିତୁଳା ହୋଇ ରହିଯାଇଛନ୍ତି ଓ ତୁଚ୍ଛା ଆର୍ତ୍ତଭକ୍ତିର ମାଧ୍ୟମ ହୋଇଗଲେଣି ଓଡ଼ିଶାରେ।

'ସନ୍ଥ(ଭକ୍ତି) ସାହିତ୍ୟ' ମତେ ଶାଣିତ କରିଛି। ମୋର ବିଦ୍ରୋହୀ ଆତ୍ମାକୁ ଜାଗ୍ରତ ଓ ସମ୍ବୋଧିତ କରିଛି। ଧାର୍ମିକତା ଭିତରେ ମୁଁ ନଥାଏ। ତେଣୁ ଚିତ୍ତରଂଜନଙ୍କ ସମସ୍ତ ଲେଖା ମୋତେ ଆକୃଷ୍ଟ କରିଛି। କରୁଥିବ ମୃତ୍ୟୁପର୍ଯ୍ୟନ୍ତ। ଏକ କାଳଜୟୀ ପୁରୁଷ ସେ। ମହାନ୍ ସାଧକ। ସାଧନା ମୃତ୍ୟୁ ପର୍ଯ୍ୟନ୍ତ ଚାଲିବ। ସେହି ସାଧନାର ଅନ୍ତ ନାହିଁ। ଅନ୍ୱେଷାର ଅନ୍ତନାହିଁ, ଗବେଷଣାର ଶେଷ ନାହିଁ। ସେ 'ଯବନ' ଯବନବାଟ ଚାଲିବ। ଚାଲୁଥିବ ସତୀର୍ଥ ସୁହୃଦ୍ ସମସ୍ତଙ୍କୁ ସାଥୀରେ ନେଇ ହାତଧରି ଉତ୍ତୋଳିତ କରି ନେଉଥିବ ଆତ୍ମାର ରାଜ୍ୟକୁ। ଯବନ କାହାରି କ୍ଷତି କରିନାହିଁ କରିବ ନାହିଁ ମଧ୍ୟ। ଅସଲ ଗୁରୁର ପରିଚୟ ଯଦି ପାଇବାକୁ ଚାହିଁ ତାହା ହେଲେ ଚିତ୍ତରଂଜନ ହିଁ ମୋର ଅସଲ ଗୁରୁ। ପାର୍ଥିବ ଗୁରୁର ଭୂମିକା ସେ ନେଇଛନ୍ତି ଓ ନେଉଥିବେ। ଆମ ଭିତରେ ଥିବା ଅବିଗୁଣକୁ (ପ୍ରାଣିକ ସ୍ତରରେ ବା ମାନସିକ ସ୍ତରରେ) ସେ ତୀକ୍ଷ୍ଣ ଆକ୍ରମଣରେ ମୂଳୋତ୍ପାଟନ କରନ୍ତି। ନିମ୍ନ ପ୍ରାଣର ଆବେଗ physical vital ଓ physical mental ସ୍ତରରେ ଯେତେ ଯେତେ କୁତ୍ସିତ ଭାବନା ଓ ଛଳନା ରହିଛି ସେଗୁଡ଼ିକ ତାଙ୍କ କ୍ଲାସ ମାଧ୍ୟମରେ ଆମେ ଖାଲି ଶୁଣି ଶୁଣି ସେଥିପ୍ରତି ସଚେତନ ଓ ସଜାଗ ହେବାପାଇଁ ପ୍ରେରଣା ଓ ସାହାସ ପାଉଛୁ।

ସେ ଜଣେ surgeon । ସେହିପରି ସର୍ଜନ୍ ଶରୀରର ମଇଳା, ଆବର୍ଜନା ଓ କ୍ଷତରୁ ପୂଜରସ ନିକାଳି ବାହାର କରିଦିଅନ୍ତି । ଚିତ୍ତରଂଜନ ଚିତ୍ତକୁ ରଞ୍ଜେଇ ଆମର ପ୍ରାଣ ମନର ଆବିଳତା ଓ ଆବର୍ଜନା ସବୁକୁ ନିକାଳି ଫିଙ୍ଗି ଦେବାରେ ପ୍ରେରଣା ଓ ଉପଦେଶ ଦିଅନ୍ତି । ବେଳେ ବେଳେ କଠୋର ଓ ତୀବ୍ର ହେଲେ ମଧ୍ୟ କାମ କ୍ରୋଧ ଓ ଷଡରିପୁଙ୍କର ଜ୍ୱାଳା କ'ଣ ତା'ଠାରୁ ଊଣା କି ? କଦାପି ନୁହେଁ । ସେଥିପାଇଁ ଶ୍ରୀମା ଶ୍ରୀଅରବିନ୍ଦଙ୍କ ମୂଳଲେଖା ସବୁ ଅଧ୍ୟୟନ କରିବାରେ ଆମେ ତାଙ୍କର ସାହାଯ୍ୟ ସହଯୋଗ, ପ୍ରେରଣା, ଅଗାଧ ପାଣ୍ଡିତ୍ୟର ଅନୁଭୂତି ଓ ସପ୍ରେମ ଶୁଭେଚ୍ଛା କାମନା କରୁ । ସଠିକ୍ ଭାବରେ ଶାସ୍ତ୍ରସବୁକୁ ହୃଦୟଙ୍ଗମ କରିବାପାଇଁ ଜଣେ ବ୍ୟକ୍ତି ଯେଉଁ ଗୁରୁର ଆବଶ୍ୟକତା କରେ ତାଙ୍କୁ ପାଇବା ସେ ବ୍ୟକ୍ତିର ସୌଭାଗ୍ୟ । ମୁଁ ସେଇଟି ପାଇଥିବାରୁ ପ୍ରଭୁଙ୍କ ନିକଟରେ ଚିରଋଣୀ । ସେଥିପାଇଁ ମୁଁ ଉତ୍କଣ୍ଠିତ ଭାବରେ ରୁଚିଛପି classକୁ ଯିବାକୁ ବିକଳ ହେଉଥାଏ । ଏବଂ ସୁଯୋଗ ଉଣ୍ଡି ସେ ଯେଉଁଠାରେ ପଢୁଥାନ୍ତି ବା ପଢୁଥାନ୍ତି ଯାଏ । ସଭାସମିତି, ସମ୍ମିଳନୀରେ ଦେଖା ହେଲେ ସର୍ବକୁଶଳ ପଚାରନ୍ତି ଅତି ଅନ୍ତରଙ୍ଗ ଭାବରେ । ଏ ଛଳନା ଓ ପ୍ରତାରଣା ପୂର୍ଣ୍ଣ ସଂସାରରେ ଏଭଳି ଜଣେ ମହାନ୍ ବ୍ୟକ୍ତିଙ୍କୁ ପାଇ ମୁଁ ଓ ମୋର ସତୀର୍ଥ ସୁହୃଦ୍ ଭାଇଭଉଣୀମାନେ ବିଭୁପାଦରେ ଅନ୍ତରର କୃତଜ୍ଞତା ଜ୍ଞାପନ କରୁଛୁ । ସେ ଦୀର୍ଘଜୀବି ହୁଅନ୍ତୁ । ତାଙ୍କର ଲେଖନୀରୁ ଆହୁରି ଶାଣିତ ଓ ପ୍ରଜ୍ଞାଦୀପ୍ତ ଭାବର ସ୍ଫୁରଣ ହେଉ ଓ ସମଗ୍ର ମାନବ ସମାଜକୁ ଆଲୋକ ଦୀପ୍ତ ଓ ପ୍ରଜ୍ଞାଦୀପ୍ତ କରି ଚେତନାର ଉତ୍ତରଣରେ ପାବଚ୍ଛ ପରେ ପାବଚ୍ଛ ଆରୋହଣ କରିବାପାଇଁ ଉତ୍ପ୍ରେରଣା ପ୍ରଦାନ କରୁ । ଏହାହିଁ କାମନା ।

ଭକ୍ତି, ଜ୍ଞାନ ଓ କର୍ମର ମୂର୍ତ୍ତିମନ୍ତ ଦୃଷ୍ଟାନ୍ତ ମାନବସମାଜର ସେବାପାଇଁ ଗୋଟିଏ ଅହଂଶୂନ୍ୟ ବ୍ୟକ୍ତି ହୋଇଉଠିବା ଲାଗି ଚିତ୍ତଭାଇଙ୍କଠାରୁ ମୁଁ ଶିକ୍ଷାଲାଭ କରିଛି । କରୁଥିବି । କାଳ ସମସ୍ତଙ୍କୁ ନେଇଥାଏ । ନେବ, କିନ୍ତୁ କୃତବିଦ୍ ସ୍ରଷ୍ଟା କାଳଜୟୀ ଓ ମୃତ୍ୟୁଞ୍ଜୟୀ ହୋଇ ଯୁଗ ଯୁଗଧରି ଅନ୍ଧକାର ଓ ଅଜ୍ଞାନତାକୁ ଅପସରି ନେବାପାଇଁ ଜନ୍ମ ହୋଇଥାନ୍ତି । ଚିତ୍ତରଂଜନ ସେମାନଙ୍କ ମଧ୍ୟରେ ଅନ୍ୟତମ । ତାଙ୍କର ଦୀର୍ଘଜୀବନ ପାଇଁ ବିଭୁପାଦରେ ଗଭୀର ଭକ୍ତି ନିବେଦନ କରୁଛି ଯେ ସେ ଶତାୟୁ ହୁଅନ୍ତୁ । ଦେଶ ଓ ଦଶର ଦିଗ୍‌ଦର୍ଶକ ହେବାପାଇଁ ଏକ ସୁସ୍ଥ ନିରାମୟ କର୍ମମୟ ଜୀବନର ଅଧିକାରୀ ହୁଅନ୍ତୁ ।

ନିତ୍ୟାନନ୍ଦ ମହାପାତ୍ର

*ଶ୍ରୀ ଅରବିନ୍ଦ ନଗର, ପୋ: ମଧୁପାଟଣା, କଟକ*

# ନିର୍ଭୀକ ସମାଲୋଚକ

ସମ୍ଭବତଃ ୧୯୭୧/୭୨ ବେଳର କଥା । ସେ ସମୟରେ ମୁଁ ପଢୁଥିବା ଅନୁଗୋଳ ମହାବିଦ୍ୟାଳୟର ବାର୍ଷିକୋତ୍ସବକୁ ମୁଖ୍ୟଅତିଥି ରୂପେ ଅଧ୍ୟାପକ ଚିତ୍ତରଂଜନ ଦାସଙ୍କୁ ନିମନ୍ତ୍ରଣ କରାଯାଇଥିଲା । ସାଧାରଣ ମୁଖ୍ୟ ଅତିଥିମାନେ ଯଥାଚର୍ଚ୍ଚିତ ହୋଇ ଟାକ୍ସିନେଇ ଆସିଥାନ୍ତି । କି ଆଶ୍ଚର୍ଯ୍ୟ ! ସନ୍ଧ୍ୟା ସଭାରମ୍ଭର ଅବ୍ୟବହିତ ପୂର୍ବରୁ ମହାବିଦ୍ୟାଳୟ ମୁଖ୍ୟ ଫାଟକ ସାମ୍ନାରେ ସାଇକେଲରୁ ଓହ୍ଲାଇ ପଡ଼ିଲେ ଜଣେ ଧୋତି ଖଦଡ଼ ପିନ୍ଧା ସାଦାସିଧା ମଣିଷ । ବାହୁ ବିସ୍ତାର କରି କହି ଉଠିଲେ, ''I am Chittaranjan Das" ଏହିଭଳି ଏକ ବ୍ୟତିକ୍ରମରେ ବିହ୍ବଳିତ ହୋଇ ଏପରି ଏକ ବ୍ୟକ୍ତିତ୍ୱ ଆଡ଼କୁ ଆକର୍ଷିତ ହୋଇ ପଡ଼ିବା ମୋର ସନ୍ଧିତ୍ସୁ ମନ ପ୍ରତି ଖୁବ୍ ଉତ୍ସାହପ୍ରଦ ଘଟଣା ଥିଲା ।

ସଭାରମ୍ଭ ହେଲା । ଅନର୍ଗଳ ଓ ସୁସ୍ପଷ୍ଟ ତାଙ୍କର ବକ୍ତବ୍ୟ । 'ଅତୀତର ପରିପ୍ରେକ୍ଷୀରେ ବର୍ତ୍ତମାନ' ଏହିଭଳି ଏକ ବିଷୟ ଉପରେ ସେ ବର୍ତ୍ତମାନର ବିଭ୍ରଷ୍ଟ ଶିକ୍ଷା ଓ ସମାଜ ବ୍ୟବସ୍ଥା ମଧ୍ୟରେ ଦୁର୍ନୀତିଗ୍ରସ୍ତ ଶିକ୍ଷାକର୍ତ୍ତୃପକ୍ଷ ଓ ଦିଗଭ୍ରଷ୍ଟ ଶିକ୍ଷକ ଓ ଶିକ୍ଷା ପ୍ରଣାଳୀ ତଥା ଦୁରାଚାରୀ ରାଜନୈତିକ ନେତା ଓ ପ୍ରଶାସକବର୍ଗଙ୍କୁ ଏଭଳି ମର୍ମଭେଦୀ ବାକ୍ୟବାଣରେ ବିଦ୍ଧ କରୁଥାନ୍ତି ଯାହା ଲୋମହର୍ଷଣକାରକ । ବ୍ୟକ୍ତି ବେଳେ ବେଳେ ଅନ୍ୟାୟ କଥା ଦେଖିଥିଲେ ବା ତା'ର ଫାନ୍ଦରେ ଶିକାର ହେଉଥିଲେ ମଧ୍ୟ ସାହସ ବାନ୍ଧି ପ୍ରକାଶ ବା ପ୍ରତିବାଦ କରିପାରେନା । ବରଂ ଭଦ୍ରୋଚିତ ସହନଶୀଳତା ଦେଖାଇ ଭୀରୁର ନୀରବ ନିରପେକ୍ଷତା ଅବଲମ୍ବନ କରେ । କାଳେ କିଏ ପ୍ରତିଶୋଧ ପରାୟଣ ହୋଇ ହଇରାଣ ହରକତ କରିପକାଇବ ବୋଲି ହୁସିଆର ହୋଇ ବାକସଂଯମ କରିନିଏ । ଅଥବା ପଶ୍ଚାତରେ ଗୁଜବ ବା ଗୁଞ୍ଜରଣ କରୁଥାଏ । ସାମ୍ୟବାଦୀ ମଜଦୂର ନେତା ଓ ଧର୍ମାନ୍ଧ ମୌଳବାଦୀମାନଙ୍କର ଭାଷଣବାଜି ବୃତ୍ତିଗତ-ଉଗ୍ରତା ତ ସହଜରେ ଦେଖିବାକୁ ମିଳେ । ଶିକ୍ଷକତାର ପଚ୍ଛଭୂମିରୁ ଅଭ୍ୟୁତ୍‌ଥିତ ହୋଇ ନିର୍ଭୀକ ଭାବରେ ଯୁବ ସମାଜକୁ ସାଧାରଣ ସଭାମାନଙ୍କରେ ଉଦ୍‌ବୁଦ୍ଧ କରିବା ଓ ମୁକ୍ତବାକ୍ୟ ଦ୍ୱାରା ଜାଗ୍ରତ କରିବାର ଅଦ୍ଭୁତ ଶୈଳୀଥିଲା ଚିତ୍ତରଂଜନ ଦାସଙ୍କର । ଖୁବ୍ ସରଳ ଓ ନିରାଡମ୍ବର ଆଭରଣ ମଧ୍ୟରେ ଏକ ସମାଜ ସଂସ୍କାରକର ବିପ୍ଳବୀ ମାନସ ପରିସ୍ଫୁଟ ହୋଇଥାଏ ତାଙ୍କଠାରେ ।

ସେଦିନ ତାଙ୍କ ବକ୍ତବ୍ୟ ଓ ବ୍ୟକ୍ତିତ୍ୱ ଅନୁସନ୍ଧାନରୁ ଜଣାପଡ଼ିଲା ଯେ

ଅନୁଗୋଳସ୍ଥ ମାଳତି ଚୌଧୁରୀ ଶିକ୍ଷାଶ୍ରମର ଜଣେ ପ୍ରାକ୍ତନ କ୍ରାନ୍ତିକାରୀ ଯୁବଶିକ୍ଷକ ଥିଲେ । ଛାତ୍ରରୂପେ ସେ ଥିଲେ ଅତ୍ୟନ୍ତ ମେଧାସଂପନ୍ନ ଓ ତାଙ୍କର ଥିଲା ଏକାଧିକ ବିଷୟରେ ସ୍ନାତକୋତ୍ତର ଶିକ୍ଷାଲାଭ ଓ ବ୍ୟୁତ୍ପତ୍ତି । ଶାନ୍ତିନିକେତନର ଗବେଷକ, ଆଗ୍ରାରେ ମନୋବିଜ୍ଞାନ ଅଧ୍ୟାପକ, ଦେଶୀୟ ମୌଳିକ ଲୋକଭାଷାକୁ ବଳିଷ୍ଠ ଭାବବ୍ୟଞ୍ଜନା ଦ୍ୱାରା ପରିପୁଷ୍ଟକରି ଗଦ୍ୟ ସାହିତ୍ୟରେ ନିଜର ସ୍ୱତନ୍ତ୍ର ଶୈଳୀ ସୃଷ୍ଟି କରିପାରିଥିବା ଜଣେ ରାଜ୍ୟ ପ୍ରସିଦ୍ଧ ସାହିତ୍ୟିକ ସେ । ସଂସ୍କାରୋନ୍ମୁଖ ଗଠନମୂଳକ ଶିକ୍ଷା ପ୍ରବର୍ତ୍ତନରେ ଜଣେ ମାର୍ଗଦର୍ଶକ ରୂପେ ସେ ବହୁବିଦିତ । ବହୁ ଦେଶୀୟ ଓ ବିଦେଶୀଭାଷାରେ ସୁପଣ୍ଡିତ, ଅନୁବାଦ ସାହିତ୍ୟ ସଂରଚନାରେ ଧୁରୀଣ ତାଙ୍କର ଲେଖନୀ ସର୍ବଦା ନିର୍ଝରିତ ।

ନିଜର ବଡ଼ପଣିଆକୁ ଜାହିର କରି ଅନ୍ୟଠାରୁ ସମ୍ମାନ ଦାବୀ କରିବାର ବ୍ୟକ୍ତି ସେ ନୁହନ୍ତି । ଅନ୍ୟଠାରୁ ଦୂରେଇ ରହି ନିଜର ଗୁରୁତ୍ୱ ପ୍ରତିଷ୍ଠା କରିବା ତାଙ୍କର ସ୍ୱଭାବ ନୁହେଁ । ଆବାଳ-ଯୁବ-ବୃଦ୍ଧଙ୍କ ସହ ସମସ୍ତରରେ ମିଶି କଥା ଓ କାର୍ଯ୍ୟରେ ତାରତମ୍ୟ ନ ରଖିବା ଭଳି ଏହି ବ୍ୟକ୍ତି ବିଶେଷ ଜଣକ ସହଜରେ ଅନ୍ୟକୁ ଆପଣାର କରିନିଅନ୍ତି । ଦେଶ ବିଦେଶରେ ଖ୍ୟାତିଲାଭ କରିଥିବା ଓଡ଼ିଶାର କତିପୟ ବିଦ୍ୱାନମାନଙ୍କ ମଧ୍ୟରେ ସେ ଅନ୍ୟତମ । ପରିବା ବ୍ୟାଗ୍‌ଟି ଧରି ପଦବ୍ରଜରେ ଚାଲି ଯାଉଥିବା ସ୍ୱାବଲମ୍ବୀ ମଣିଷ ମଧ୍ୟ ସିଏ ।

୧୯୭୩ ବେଳକୁ ମୁଁ ଶ୍ରୀମା ଶ୍ରୀଅରବିନ୍ଦଙ୍କ ଅନୁଗାମୀ ହୋଇଥିଲି । ଶ୍ରୀମା ଶ୍ରୀଅରବିନ୍ଦଙ୍କ ମନ୍ତ୍ରବତ୍ ଆଧ୍ୟାତ୍ମଭାଷାବଦ୍ଧ ବୃହଦକାୟ ଗ୍ରନ୍ଥ ଯଥା 'ଦିବ୍ୟ ଜୀବନୀ' ଯୋଗସମନ୍ୱୟ, ମାନବ ଯୁଗଚକ୍ର ଓ ମାତୃରଚନାବଳିର ଅନୁବାଦ ଗୁଡ଼ିକ ଇଂରାଜୀ ଭାଷାରୁ ଓଡ଼ିଆରେ ପ୍ରକାଶିତ ହେଲା । ଅନୁବାଦକ ଚିତ୍ତରଂଜନ ଦାସ ବୋଲି ନାମୋଲ୍ଲେଖ ଥିଲା । ମୋ ମନରେ ବିସ୍ମୟ ଜାତ ହେଲା- କିଏ ଏହି ଚିତ୍ତରଂଜନ ଦାସ, ଯିଏ ଅସମ୍ଭବକୁ ସମ୍ଭବ କରି ପାରିଛନ୍ତି ? ଇଏ କ'ଣ ସେହି ମନୋବିଜ୍ଞାନ ଅଧ୍ୟାପକ ଚିତ୍ତରଂଜନ ଦାସ କି ? ଅଥବା ଯୋଗବିଜ୍ଞାନରେ ବରିଷ୍ଠ ଅନ୍ୟ କେହି ଚିତ୍ତରଂଜନ ଦାସ ଅଛନ୍ତି ଯାହାଙ୍କୁ ହୁଏତ ମୁଁ ଏଯାବତ୍ ଚିହ୍ନିନାହିଁ ? ଏହିଭଳି ଏକ ସଂଶୟ ମନରେ ରହିଥିଲା ।

୧୯୭୬ ନିଖିଳ ଉତ୍କଳ ଶ୍ରୀଅରବିନ୍ଦ ପାଠଚକ୍ର ସମ୍ମିଳନୀରେ ଯୋଗଦେବାକୁ ମୁଁ ବାରବାଟୀ ଷ୍ଟାଡିୟମ୍‌କୁ ଯାଇଥାଏ । 'ଦିବ୍ୟ ଜୀବନ' ଗ୍ରନ୍ଥର ଆଲୋଚକ ରୂପେ ଚିତ୍ତରଂଜନ ଦାସ ଆମନ୍ତ୍ରିତ ହୋଇ ଆସିଥାନ୍ତି । ତାଙ୍କୁ ଦେଖି ମୋର ସନ୍ଦେହ ଦୂର ହେଲା । ଇଏ ତେବେ ସେଇ ଲୋକ । ବୌଦ୍ଧିକ ମନୋବିଜ୍ଞାନ ଓ ଭାବଗତ ସାହିତ୍ୟ

ସାଧନାରୁ ସେ ଅତିମାନସିକ ଆଦିତ୍ୟ ଲୋକର ଅଭୀପ୍ସୁ ହୋଇ ଏବେ ଚିତ୍ତଭାଇ ନାମରେ ବେଶ ଆଦୃତ ଓ ଆମର ଗୁରୁଭାଇ । ଉତ୍କଳରେ ଶ୍ରୀଅରବିନ୍ଦଙ୍କ ପୂର୍ଣ୍ଣାଙ୍ଗ ଶିକ୍ଷାର କ୍ରାନ୍ତିକାରୀ ପ୍ରବର୍ତ୍ତନର ଆଦିପର୍ବରେ ଏହାର ସମ୍ୟକ୍ ପ୍ରୟୋଗାତ୍ମକ ରୂପରେଖ ସେହିଁ ପ୍ରଦାନ କରିଥିଲେ । ଏହି ଉତ୍କଳ ମନିଷୀଙ୍କର ଚେତନାବିସ୍ତାର ଯୁଗାବତାର ଶ୍ରୀଅରବିନ୍ଦଙ୍କ ବଳୟଭୁକ୍ତ ହୋଇପାରିଥିବାର ଜାଣି ଖୁସି ହେଲି । ଆଜି ସେ ସାହିତ୍ୟ ସାଧନାରେ ବହୁ ସମ୍ମାନର ଅଧିକାରୀ । ସମ୍ମାନ ନ ଚାହୁଁଥିବା ବ୍ୟକ୍ତି ପଛରେ ସମ୍ମାନ ଆପେ ଗୋଡାଏ ଯଦି ତାଙ୍କର ମୌଳିକ ପ୍ରତିଭା ଥାଏ ବା ନିଃସ୍ୱାର୍ଥପର ଆଦର୍ଶ ପ୍ରତି ଆତ୍ମୋତ୍ସର୍ଗ ଥାଏ । ମୁଁ ତାଙ୍କର ପରିଣତ ବୟସରେ ସୁସ୍ଥ ଜୀବନ ଓ ଉର୍ଦ୍ଧ୍ୱାୟନ କାମନା କରୁଛି ।

**ଧରଣୀଧର ପାଢ଼ୀ**

*ଶ୍ରୀଅରବିନ୍ଦ ଶ୍ରୀକ୍ଷେତ୍ର, ଡାଳିଯୋଡ଼ା, କଟକ*

# ଭିନ୍ନ ଜଣେ ମଣିଷ

୧୯୭୪ ମସିହାରେ ସେ ଜୟପୁର ଆସିଥାନ୍ତି । ଶ୍ରୀଅରବିନ୍ଦ ଭବନରେ ମିଟିଂ ଥାଏ । ପୂର୍ଣ୍ଣାଙ୍ଗ ଶିକ୍ଷା ସଂପର୍କରେ କହିବାପାଇଁ ଜଣେ ଉଚ୍ଚକୋଟିର ବ୍ୟକ୍ତି ଆସିଛନ୍ତି ବୋଲି ଶୁଣିବାକୁ ପାଇ ଭବନକୁ ଯାଇଥିଲି । ଅନ୍ୟ ବକ୍ତାଙ୍କ ପରି ତାଙ୍କପାଇଁ ମଟରଗାଡ଼ି ବା ରହିବା ପାଇଁ ସେପରି କିଛି ବିଶେଷ ବ୍ୟବସ୍ଥା ହୋଇନଥିଲା । ସିଧା ବସ୍‌ରେ ଆସି ସଂଧ୍ୟାରେ ପହଞ୍ଚିଥିଲେ । ଅତି ସାଦାସିଧା ସରଳ ବ୍ୟକ୍ତିତ୍ୱ । ରାତ୍ରିଭୋଜନରେ କଣ ଖାଇବେ ବୋଲି ପଚାରିବାରୁ, ଦୁଇପଟ ରୁଟି ଓ ଟିକିଏ ସନ୍ତୁଳା ହେଲେ ଯଥେଷ୍ଟ ହେବ ବୋଲି କହିଥିଲେ । ପରଦିନ ସକାଳ ୯ଟାରେ ଏକ ସୀମିତ ପରିବେଶରେ ଆମେ ତାଙ୍କୁ ଘେରିବସିଥିଲୁ । ଅତି ନରମ ଓ ଧୀର ସ୍ୱରରେ "Three Principles of Teaching" ସଂପର୍କରେ ଅତି ସରଳ ଭାଷାରେ ବିଭିନ୍ନ ଉଦାହରଣ ଦେଇ ବୁଝାଇଥିଲେ । ଏ ହେଉଛି ଚିତ୍ତଭାଇଙ୍କ ସହ ପ୍ରଥମ ସାକ୍ଷାତ ।

୧୯୮୩ ମସିହା ଡିସେମ୍ବର ୨୫ରୁ ୨୮ ତାରିଖ ମଧ୍ୟରେ ସର୍ଦ୍ଦାରପଟେଲ୍ ହଲ୍ ପରିସରରେ ରାଜ୍ୟସ୍ତରୀୟ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରମାନଙ୍କର ୮ମ ଶିକ୍ଷକ ସମ୍ମିଳନୀରେ ଯୋଗଦେବା ଅବସରରେ ଚିତ୍ତଭାଇଙ୍କ ସହ ପୁନର୍ବାର ଦେଖାହୁଏ । ସେ ସେତେବେଳେ ସକ୍ରିୟଭାବେ ପୂର୍ଣ୍ଣାଙ୍ଗ ଶିକ୍ଷା ଆନ୍ଦୋଳନରେ ଜଡ଼ିତ ଥିଲେ ।

ବିଜ୍ଞାନ ବହି ପ୍ରସ୍ତୁତ କରିବାରେ ସହଯୋଗ କରିବା ପାଇଁ ପରାମର୍ଶ ଦେଇ ସେ ଦିଗରେ ଉତ୍ସାହିତ କରିଥିଲେ । ଅନ୍ୟର ସାମାନ୍ୟ ଗୁଣ ଦେଖିଲେ ଉତ୍ସାହିତ କରି ସେ ଦିଗରେ ତାହାକୁ ଆଗେଇ ନେବାରେ ଏପରି କିଛି ସାମର୍ଥ୍ୟ ତାଙ୍କର ସ୍ୱଭାବଗତ । ଶ୍ରୀକୃଷ୍ଣଚନ୍ଦ୍ର ଗଜପତି କଲେଜରେ ପ୍ରତିବର୍ଷ ଗଜପତି ବକ୍ତୃତାମାଳା ଅନୁଷ୍ଠିତ ହୁଏ । ସେତେବେଳେ ସେଠାରେ ମୁଁ ଅଧ୍ୟାପକ ରୂପେ କାର୍ଯ୍ୟ କରୁଥାଏ । ଚିତ୍ତଭାଇଙ୍କୁ ବକ୍ତୃତା ଦେବାପାଇଁ ଅନୁରୋଧ କରିବାକୁ ପ୍ରସ୍ତାବ ଦେଇଥିଲି । ତତ୍କାଳୀନ ଅଧ୍ୟକ୍ଷ ଶ୍ରୀକୃଷ୍ଣଚନ୍ଦ୍ର ପଟ୍ଟନାୟକ ଜଣେ ଗୁଣଗ୍ରାହୀ ବ୍ୟକ୍ତି ଥିଲେ । ଚିତ୍ତଭାଇଙ୍କ ବିଦ୍ୱତ୍ତାରେ ସେ ମୁଗ୍ଧ । ତେଣୁ ଅନୁରୋଧ ପତ୍ର ପଠାଗଲା । ଅଚିରେ ସ୍ୱୀକୃତିପତ୍ର ମଧ୍ୟ ଆସିଲା । ଦୁଇଦିନ ବ୍ୟାପି ବକ୍ତୃତାର ଆୟୋଜନ କରାଯାଇଥିଲା । ବରିଷ୍ଠ ଅଧ୍ୟାପକ ବୃନ୍ଦ ବକ୍ତୃତାଟି ଉଚ୍ଚକୋଟିର ହୋଇଛି ବୋଲି ମତ ଦେଇଥିଲେ । ପରମ୍ପରା ଅନୁଯାୟୀ ତାହା ଛପାଯାଇଥିଲା ।

ମୋର ବଡ଼ପୁଅ ବୁର୍ଲାରେ ଇଞ୍ଜିନିୟରିଂ ପଢୁଥିଲାବେଳେ ଚିତ୍ତଭାଇଙ୍କ ସହ ପତ୍ରାଳାପଦ୍ୱାରା ଘନିଷ୍ଠ ସମ୍ପର୍କ ସ୍ଥାପନ କରିଥିଲା । ମୋର ଦୃଢ଼ ବିଶ୍ୱାସ, ସେ ତାଙ୍କଠାରୁ ଅନେକ ମାର୍ଗ ଦର୍ଶନ ଓ ପ୍ରଚୁର ପ୍ରେରଣା ପାଇଛି । ମୋ ସହ ସାକ୍ଷାତ୍ ହେଲେ ଉଭୟେ ଉଭୟଙ୍କ ସଂପର୍କରେ ପଚାରନ୍ତି । ସାନଝିଅ ମିରା ପାରଳାଖେମୁଣ୍ଡି ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ଛାତ୍ରୀ ଥିଲାବେଳେ ଅଧ୍ୟକ୍ଷ ରାମନାରାୟଣଙ୍କ ଅନୁରୋଧ କ୍ରମେ ସେ ଦୀର୍ଘ ୩ ଦିନ ପିଲାଙ୍କ ଗହଣରେ ଇଂରାଜୀ ପଢ଼ାଇଥିଲେ । ଶିକ୍ଷାକେନ୍ଦ୍ରର ଛାତ୍ରମାନଙ୍କ ସ୍ମୃତିରେ ସେହି ୩ ଦିନର ସାହଚର୍ଯ୍ୟ ଓ ଶିକ୍ଷାଦାନ ଅଲିଭା ହୋଇରହିଛି । ଆମେ ସବୁ ଆଚମ୍ୱିତ ହେଲୁ ଯେତେବେଳେ ପ୍ରତ୍ୟେକ ଛାତ୍ରର ନାମ ସହ ତାହାର ଅଗ୍ରଗତି ଓ କୁଶଳବାର୍ତ୍ତା ସଂପର୍କରେ ଚିତ୍ତଭାଇ ଚିଠି ଲେଖିଲେ । ସବୁ ବୟସର ଲୋକଙ୍କ ସହ ଏତେ ସରଳ, ସହଜ ଓ ଘନିଷ୍ଠ ଭାବେ ସେ ମିଶିପାରନ୍ତି । ତାହା ମୋତେ ଆଶ୍ଚର୍ଯ୍ୟ ଲାଗେ । ସେପରି ଦ୍ୱିତୀୟ ବ୍ୟକ୍ତି ଆଜିଯାଏ ମୁଁ ଭେଟିନାହିଁ । ନିର୍ଭୀକଭାବେ ଖୁଞ୍ଚା ଦେଇ ଅନ୍ୟର ଗ୍ରମର ଗୁଡ଼ିକ ଦେଖାଇ ଦେବାରେ ସେ ଅଦ୍ୱିତୀୟ ଅଟନ୍ତି । ସେଥିରେ ହାସ୍ୟ, ବ୍ୟଙ୍ଗ ଓ ସଖ୍ୟ ଏପରି ମିଶିଥାଏ ଯେ ବ୍ୟକ୍ତି ବ୍ୟଥିତ ହେବାପାଇଁ ଅବସର ପାଏନାହିଁ । ଅଥଚ ନିଜକୁ ସଜାଡ଼ି ଦେବାପାଇଁ ସୁଯୋଗ ପାଇଥାଏ ।

ନିଜେ ସୀମା ଟପି ଅନ୍ୟକୁ ସୀମା ଟପିବା ପାଇଁ ଉତ୍ସାହିତ କରିବାରେ ସେ ସିଦ୍ଧହସ୍ତ । ଥରେ ପିଲାଙ୍କୁ ପ୍ରଶ୍ନ କରିବା ମୁଁ ନିଜେ ଶୁଣିଛି- "ଶ୍ରୀ ଅରବିନ୍ଦଙ୍କଠାରୁ ମଧ୍ୟ ତୁମେ ବଡ଼ ନ ହେବ କାହିଁକି ?" କୌଣସି ସୀମା ଭିତରେ ମଣିଷ ଆବଦ୍ଧ

ହୋଇ ରହୁ । ଏକଥା ସେ ମୋତେ ପସନ୍ଦ କରୁନଥିଲେ ।

ଓଡ଼ିଶାରେ ନୂତନ ଶିକ୍ଷାର ପ୍ରସାର ଓ ପ୍ରଗତି କିପରି ହେବ ଏଥିପାଇଁ ସେ ବିଭିନ୍ନ ଉପାୟ ଓ ଧାରାରେ କାର୍ଯ୍ୟ କରିଛନ୍ତି ଓ ଏଯାଏ କରି ଚାଲିଛନ୍ତି । 'ସୁହୃଦ୍ ଗୋଷ୍ଠୀ' ଚିତ୍ତଭାଇଙ୍କ ମାନସପୁତ୍ର, 'ଶ୍ରମଶିବିର' ଏବଂ ଅଧ୍ୟୟନ ଶିବିର' ତାଙ୍କରି ସାଧନା ଓ ପ୍ରେରଣାର ପରିଣତି କହିଲେ ଆଦୌ ଅତ୍ୟୁକ୍ତି ହେବନାହିଁ । ଓଡ଼ିଶାରେ ପୂର୍ଣ୍ଣାଙ୍ଗଶିକ୍ଷା ସଫଳତାର ସହ କିପରି କାର୍ଯ୍ୟକାରୀ ହେବ; ଶିକ୍ଷକମାନଙ୍କ ସ୍ୱାର୍ଥ ଓ ଭବିଷ୍ୟତ କିପରି ସୁରକ୍ଷିତ ହେବ, ସରକାରୀ କଟକଣା ଓ ଚାପରୁ ମୁକ୍ତ ହୋଇ କିପରି ଶିକ୍ଷାୟତନ ଆଗେଇବ ଏଥିପାଇଁ ସେ ସଦା ଉତ୍କଣ୍ଠିତ । ତାଙ୍କଦ୍ୱାରା ତା ୧୨.୧.୮୩ରିଖରେ ମୋ ନିକଟକୁ ଲିଖିତ ପତ୍ରର କିୟଦଂଶ ନିମ୍ନରେ ଦିଆଗଲା । ଏଥିରେ ପୂର୍ଣ୍ଣାଙ୍ଗ ଶିକ୍ଷାର ପ୍ରଗତିପାଇଁ ତାଙ୍କରି ବ୍ୟାକୁଳତା ସୁସ୍ପଷ୍ଟ ।

କଟକ, ୧୨.୧.୮୩

ଭାଇ କୁମାର ବାବୁ

ଶିକ୍ଷକ ସମ୍ମିଳନୀକୁ ଆପଣ ଆସିଲେ, ଆମ ସମସ୍ତଙ୍କ ସହ ତିନିଦିନ ଯାକ ରହିଲେ, ଭାରି ଭଲ କଥା ହେଲା । ପୂର୍ଣ୍ଣାଙ୍ଗ ବିଦ୍ୟାଳୟ ଗୁଡ଼ିକର ଶିକ୍ଷକ ଓ ପରିଚାଳକମାନେ ଯଦି ଏହିପରି ବାରବାର ଏକତ୍ର ହୋଇପାରନ୍ତେ ତେବେ ଆମର ଅନେକ ସମସ୍ୟାର ସମାଧାନ ପାଇଁ ଆମକୁ ଗଭୀରତର ଅନ୍ତର୍ଦୃଷ୍ଟିମାନ ମିଳିପାରନ୍ତା । ଏଥର ଏହିପରି ସମ୍ମିଳନୀଗୁଡ଼ିକୁ ଅବଶ୍ୟ ଆସିବେ ବୋଲି ଆଶା କରୁଛି ।

ଶ୍ରୀଯୁକ୍ତ ଜୟନାରାୟଣ ପାଣିଗ୍ରାହୀ ଶେଷଦିନ ଭୁବନେଶ୍ୱର ସମ୍ମିଳନୀକୁ ଆସିଥିଲେ । ମୁଁ ତାଙ୍କୁ ଆପଣଙ୍କ କଥା କହିଥିଲି । ଭାବିଥିଲି ଯେ ଆପଣ ଦୁଇଜଣ ଏକତ୍ର ମିଶିଥିବେ ଏବଂ ବିଜ୍ଞାନ ପାଠ୍ୟପୁସ୍ତକ ବିଷୟରେ କିଛି ମୀମାଂସକ ଆଲୋଚନା କରିନେଇଥିବେ । ସିଏ କେତୋଟି ଶ୍ରେଣୀର ଅଙ୍କ ଓ ବିଜ୍ଞାନ ଲେଖିକରି ଦେଇଛନ୍ତି । ସେ ଗୁଡ଼ିକ ଟ୍ରଷ୍ଟ୍ ପାଖରେ ଅଛି । ବିଜ୍ଞାନ ବିଷୟରେ ଯେଉଁମାନେ ତଦ୍‌ବିଦ୍ ଏବଂ ଆଗ୍ରହୀ ସେମାନେ ଏକାଠି ବସି ଏ ପୁସ୍ତକସବୁ ବିଷୟରେ ଆଲୋଚନା କରିବେ, ଆବଶ୍ୟକ ପରିବର୍ତ୍ତନମାନ କରିବେ । ତା'ପରେ ଯାଇ ସେଗୁଡ଼ିକ ଛାପିବାର ପ୍ରଶ୍ନ ଉଠିବ । ଭୁବନେଶ୍ୱରରେ ଥିବା ସମୟରେ ଆପଣ ଦୁହେଁ ଯାକ ସେହି ପାଣ୍ଡୁଲିପିଗୁଡ଼ିକୁ ଦେଖିନେଇଥିଲେ କେଡ଼େ ଭଲ ହୋଇଥାନ୍ତା । ତଥାପି ମୋର ଇଚ୍ଛା ଜୟନାରାୟଣ ବାବୁଙ୍କ ସହିତ ପତ୍ର ବିନିମୟ କରନ୍ତୁ ।

ପାଠ୍ୟପୁସ୍ତକ ସବୁଶ୍ରେଣୀ ପାଇଁ ଲେଖାହେବ । ପ୍ରଥମରୁ ଦଶମ ପର୍ଯ୍ୟନ୍ତ । ଆପଣମାନେ ସମ୍ମିଳିତ ଭାବରେ ଏଥିଲାଗି କାର୍ଯ୍ୟକଲେ ଭଲ ହେବ । ରାଉରକେଲାରୁ ଶରତବାବୁ ମଧ ଆପଣଙ୍କ ସାଙ୍ଗରେ ଅଛନ୍ତି । ମୋଟ କଥା ହେଉଛି ପିଲାମାନେ ସେହିସବୁ ଖୁସି ହୋଇ ପଢ଼ିବେ । ସାଧାରଣତଃ ପାଠ୍ୟପୁସ୍ତକକୁ ପିଲାମାନେ ଯେପରି ଅପ୍ରୀତିକର ବୋଲି ଭାବନ୍ତି ସେପରି ମୋଟେ ଭାବିବେ ନାହିଁ । ବିଷୟବସ୍ତୁ ଥିବ, ସମ୍ବନ୍ଧିତ ସମସ୍ୟାଗୁଡ଼ିକ ମଧ ଆଲୋଚିତ ହୋଇଥିବ, ସୁନ୍ଦର ଶୈଳୀରେ ସୁନ୍ଦର ଭାଷାରେ ଲେଖାହୋଇଥିବ ।...

ଆପଣଙ୍କର ଚିତ୍ତଭାଇ

ଚିଠିଟିରେ ଆବେଗଭରା ହୃଦୟର ଉଚ୍ଛ୍ୱାସ ସୁସ୍ପଷ୍ଟ ।

ସେ ଯାହା ହେଉ ମୁଁ ନିଶ୍ଚିତ ରୂପେ ଏତିକି ଅନୁଭବ କରିଛି ଯେ, ସେ ଭିନ୍ନ ଜଣେ ମଣିଷ ଯିଏ ଅନ୍ୟକୁ ପ୍ରତିଷ୍ଠା ଓ ବୟସ ନିର୍ବିଶେଷରେ ମିତ୍ରରୂପେ ଦେଖନ୍ତି ଓ ତାହାଙ୍କୁ ଉନ୍ନୀତ କରିବାପାଇଁ ସବୁମନ୍ତେ ଚେଷ୍ଟା କରନ୍ତି । ମାନୁଷୀ ପ୍ରକୃତିର ଏହା ଏକ ବିରଳ ବ୍ୟତିକ୍ରମ ।

କୁମାର ଚନ୍ଦ୍ର ମିଶ୍ର
*ଅବସର ପ୍ରାପ୍ତ ଅଧକ୍ଷ,*
*ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟ, ପାରଳାଖେମୁଣ୍ଡି*

# ଚିତ୍ତଭାଇଙ୍କ ସହ ପାଞ୍ଚଦିନ

ମୋ ଦଶମଶ୍ରେଣୀ ପରୀକ୍ଷା ସରିଥାଏ । ଛୁଟିକୁ ଏକ ଭିନ୍ନ ଉପାୟରେ କାଟିବା ପାଇଁ ମୁଁ ଚିନ୍ତା କରୁଥାଏ । ସେହି ସମୟରେ ରବିଭାଇଙ୍କ କହିବା ଅନୁସାରେ ମୁଁ ରାୟଗଡ଼ାରେ ହେଉଥିବା ନବପଲ୍ଲବ କିଶୋର ଲେଖକ ଓ ଶିଳ୍ପୀ କର୍ମଶାଳାକୁ ଯିବାପାଇଁ ରାଜି ହେଲି ।

ରାୟଗଡ଼ାର ବାରିଝୋଲା ଗ୍ରାମରେ ଶିବିରଟି ଅନୁଷ୍ଠିତ ହେଉଥିଲା । ପରିବେଶଟି ଖୁବ୍ ଚମତ୍କାର ଥିଲା । ଆମେ ପହଞ୍ଚିବାର କିଛି ସମୟ ପରେ ଚିତ୍ତଭାଇ ପହଞ୍ଚିଲେ । ଚିତ୍ତଭାଇଙ୍କୁ ଆଗରୁ ମୁଁ ଦେଖିଥିଲି, ମାତ୍ର ତାଙ୍କ ପାଖରେ ରହିବାର ସୁଯୋଗ ପାଇବାର ଏହା ଥିଲା ମୋର ପ୍ରଥମ । ସେ ଦେଖିବାକୁ ଖୁବ୍ ସାଧାସିଧା, ପୋଷାକ ମଧ ଠିକ୍ ସେହିପରି ଧଳା ଧୋତିକୁ ପଞ୍ଜାବୀ । ଖୁବ୍ ଆକର୍ଷଣୀୟ ବ୍ୟକ୍ତିତ୍ୱ । ସେହି ପାଞ୍ଚଦିନ ରହଣି ଭିତରେ ମୁଁ ଭାଇଙ୍କୁ ଯେପରି ବୁଝିପାରିଛି ତାହା ତଳେ

ଲେଖୁଛି ।

ଚିତ୍ତଭାଇ ଥିଲେ ସମସ୍ତଙ୍କଠୁ ଭିନ୍ନ । ବୟସ ଏତେ ହୋଇଥିଲେ ମଧ ସେ ତାକୁ ଖାତିର କରନ୍ତିନି । ସେ ପିଲାମାନଙ୍କ ସହ ଖୋଲାଘରେ ରହୁଥିଲେ । ପିଲାମାନଙ୍କ ସହ ଖାଉଥିଲେ । ତଳେ ଶୋଉଥିଲେ ବସୁଥିଲେ, ବିଭିନ୍ନ ପ୍ରକାର ଆଲୋଚନା ସମୟରେ ପିଲାମାନଙ୍କ କଥାକୁ ମନଦେଇ ଶୁଣୁଥିଲେ । ବଡ଼ମାନଙ୍କୁ ଭାଇଙ୍କ କଡ଼ା ନିର୍ଦ୍ଦେଶ ଥିଲା ପିଲାମାନଙ୍କ ଉପରେ କୌଣସି ଚାପ ନ ପକାଇବାକୁ । ଦରକାର ପଡ଼ିଲେ ଭାଇ ନିଜେ ପିଲାମାନଙ୍କ ଭୁଲ୍ ସଂଶୋଧନ କରିଦେଉଥିଲେ । ସବୁଠୁ ବେଶୀ ଆଶ୍ଚର୍ଯ୍ୟ ଲାଗେ ଯେ ଭାଇ ସବୁବେଳେ କିଛି ନା କିଛି ବହି ପଢୁଥାନ୍ତି । ରାତିରେ ଲଣ୍ଠନରେ ଝାପ୍ସା ଆଲୋକରେ ମଧ ମୁଣ୍ଡ ପୋତି ସେହିପରି ପଢୁଥାନ୍ତି ।

ଦିନେ ମୁଁ ଓ କେତେଜଣ ସାଙ୍ଗ ଛାତ ଉପରକୁ ଗଲା ସମୟରେ ରବିଭାଇ ଓ ଚିତ୍ତଭାଇ ସିଡ଼ି ଉପରେ ବସିଥାନ୍ତି । ସାଧାରଣତଃ ଆମମାନଙ୍କୁ ଶିଖା ଯାଇଥାଏ ବଡ଼ ଲୋକ ବସିଥିବା ସମୟରେ ନଇଁକରି ଯିବାପାଇଁ ତେଣୁ ମୁଁ ଠିକ୍ ସେହିପରି ଗଲାବେଳେ ଭାଇ ମତେ କହିଲେ, ''ସିଧା ସିଧା ଯାଆ, ନଇଁ କରି ଯିବାର ଦରକାର ନାହିଁ ।'' ମୁଁ କୁଣ୍ଠାବୋଧ କରିବାରୁ ଭାଇ କହିଲେ, ''ମୋ କଥା ନ ମାନିଲେ ମୁଁ ଏବେ ତୋ ନନାକୁ ଫୋନ୍ କରି କହିବି ଯେ ଝିଅ ମୋ କଥା ମାନୁନି ।'' ଏହାଦ୍ୱାରା ଯେ ବଡ଼ମାନଙ୍କୁ ଅସମ୍ମାନ କରିବାକୁ ସେ କହୁଥିଲେ ତାହା ନୁହେଁ । ବରଂ ଭାଇଙ୍କ ମତରେ ପିଲାମାନଙ୍କୁ କଦାପି ଛୋଟ ବା ନିଉଛୁଣା ମନେ କରିବା ଉଚିତ୍ ନୁହେଁ । ପିଲାମାନେ ବଡ଼ମାନଙ୍କ ପାଖରେ ଦାସ ନୁହଁନ୍ତି । ବଡ଼ମାନେ ପିଲାମାନଙ୍କୁ ବନ୍ଧୁପରି ମନେ କରିବା ଦରକାର । ସେମାନଙ୍କୁ ଶ୍ରଦ୍ଧା ଓ ସମ୍ମାନପୂର୍ଣ୍ଣ ଦୃଷ୍ଟିରେ ଦେଖିବା ଦରକାର। ତାହାହେଲେ ପିଲାମାନେ ବଡ଼ମାନଙ୍କ ଆଗରେ ସେମାନଙ୍କର ମନ ଓ ହୃଦୟକୁ ଖୋଲି ଦେଇପାରିବେ । ଯାହାଦ୍ୱାରା ସେମାନଙ୍କ ବିକାଶ ପାଇଁ କୌଣସି ବାଧା ରହିବ ନାହିଁ ।

ଦିନେ ଶିବିରରେ ଆମମାନଙ୍କୁ ''ସବୁ ପିଲା କାହିଁକି ପଢ଼ିପାରୁନାହାନ୍ତି'' ତା' ଉପରେ ଲେଖିବାକୁ ଦିଆଗଲା । କେତେ ସମୟ ପରେ ସମସ୍ତେ ଲେଖିକରି ଆଣିଲେ ଓ ତାହାକୁ ଜଣ ଜଣ କରି ପଢ଼ିଲେ ମାତ୍ର ଲେଖାସବୁ ଶୁଣି ଭାଇ ବହୁତ ବିରକ୍ତ ହେଲେ ଏବଂ କହିଲେ- ''ଯେଉଁ ଦେଶରେ ପିଲାମାନେ ଦିଓଳି ନ ଖାଇ ଉପାସରେ ଶୁଅନ୍ତି । ସେଠି ତୁମେ କିପରି ଲେଖୁଛ ଯେ ଟିଭି ଦେଖି ପିଲାମାନେ ପଢୁନାହାନ୍ତି ? ଯାଅ ପ୍ରକୃତ କାରଣ ଜାଣିବା ପାଇଁ ପାଖ ଆଦିବାସୀ ଗ୍ରାମକୁ ଓ ପିଲାମାନଙ୍କୁ ପଚାର କାହିଁକି ସେମାନେ ପଢୁନାହାନ୍ତି । ବାପାମାମାନଙ୍କୁ ପଚାର କାହିଁକି ସେମାନେ ପିଲାମାନଙ୍କୁ ପଢ଼ାଉନାହାନ୍ତି ।'' ଭାଇଙ୍କ ଏଇ କେତେ ପଦ କଥା ମୋ ମନକୁ ଛୁଇଁ ଯାଇଥିଲା ।

ପ୍ରକୃତରେ ଆମେମାନେ କେତେ ଅନ୍ଧଭାବେ ପ୍ରତିକଥାକୁ ବିଚାର କରୁଛୁ । ଭାଇଙ୍କ ମତରେ ''ପ୍ରତ୍ୟେକ ସମସ୍ୟାର ସମାଧାନ ଖୋଜିବାକୁ ହେଲେ ତା'ର ମୂଳ କାରଣ ଖୋଜିବାକୁ ହେବ ।''

ଆଗରୁ ବହିପଢ଼ି, ଶିକ୍ଷକମାନଙ୍କଠାରୁ ଶୁଣି ଓ ମୋର ଅଭିଜ୍ଞତାରୁ, ଜୀବନ ଓ ଜଗତକୁ ମୁଁ ଯେପରି ଦେଖିବାକୁ ଅଭ୍ୟସ୍ତ ଥିଲି ଭାଇଙ୍କୁ ଭେଟିବାପରେ ସେହିକଥାକୁ ଆଉ ଏକ ଭିନ୍ନ ଦୃଷ୍ଟିରେ ଦେଖିବାକୁ ସମର୍ଥ ହେଲି । ସେହି ୫ ଦିନର ଶିବିର ଜୀବନ ମୋ ପାଇଁ ବହୁ ମୂଲ୍ୟବାନ ହୋଇଥିଲା । ସେଠି ମୋର ଚିନ୍ତା ଓ ଚେତନାର ଗବାକ୍ଷ ଅଧିକ ଖୋଲିଯାଇଥିଲା । ମୁଁ ଅଧିକ କଥା କହିବା ଶିଖିଥିଲି । ଯେଉଁଥି ପାଇଁ ଶିବିରର ଅନ୍ୟ ସମସ୍ତଙ୍କର ଅବଦାନ ରହିଥିଲେ ବି ସବୁଠାରୁ ବେଶୀ ଅବଦାନ ଥିଲା ଭାଇଙ୍କର ।

ମୁଁ ଶିବିରକୁ ଆସିଲାବେଳେ ନନା (ବାପା) କହୁଥିଲେ- 'ମୋ ଶିକ୍ଷକ ଜୀବନ ଆରମ୍ଭ ପୂର୍ବରୁ ଆଜିକୁ ୨୩ ବର୍ଷ ତଳେ ଯାହା ପାଖରେ ୧୫ ଦିନ ବସି ଅନେକ କିଛି ଶିଖିଥିଲି, ତତେ ଆଜି ତାଙ୍କରି ପାଖରେ ୫ ଦିନ ରହି ତାଙ୍କଠୁ ଏକ ଭିନ୍ନ ଦୃଷ୍ଟି ଶିକ୍ଷା କରିବା ପାଇଁ ପଠାଉଛି ।'' ବାସ୍ତବରେ ମୁଁ ଆଜି ସେ କଥାର ଯଥାର୍ଥତା ଅନୁଭବ କରୁଛି ।

ବନ୍ଦନା ମିଶ୍ର

*ଡୁମୁଡୁମା ହାଉସିଂବୋର୍ଡ କଲୋନି, ଡୁମୁଡୁମା*

# ସବୁରି ମିତ ଚିତ୍ତଭାଇ

ଅତି ସାଧାସିଧା ଧୋତି ପଞ୍ଜାବୀ ଦି'ଖଣ୍ଡ ଭିତରୁ ଜିଜ୍ଞାସୁ, କ୍ଷୀଣକାୟ ଅଥଚ ସୁସ୍ଥ ମଣିଷଟି ସଚରାଚର ଦୁନିଆଟିକୁ ଅତି ନିରିଖେଇ ଦେଖୁଥାଏ । ଖାଲି ଭାରତବର୍ଷ କାହିଁକି ସୁଇଜରଲ୍ୟାଣ୍ଡ ଆମେରିକା ଭଳି କାହିଁ କେତେ ଦେଶ ବିଦେଶ ବୁଲି ବୁଲି ପୃଥିବୀକୁ ତନ୍ନ ତନ୍ନ କରି ତା'ର ସଭ୍ୟତା ସଂସ୍କୃତି ଓ ମଣିଷମାନଙ୍କୁ ପଢ଼ି ଯାଉଥିବା ମଣିଷଟି ବି ଅନ୍ୟ କେହି ନୁହେଁ ଆମ ସବୁରି ପ୍ରିୟ ଚିତ୍ତଭାଇ । ମଣିଷକୁ ନିବିଡ ଭାବରେ ଭଲ ପାଉଥିବା ତଥା ତାର ଦୁଃଖ ଯନ୍ତ୍ରଣାରେ ଅନ୍ତରତଳୁ ଗୁମୁରି ଗୁମୁରି କାନ୍ଦୁଥିବା ଏହି ସରଳ ମଣିଷଟି ଯେମିତି ସବୁକିଛି ଟିକିନିଖି ଜାଣନ୍ତି ! ନିଜର ଭାବନା, ବିଚାର ଓ ବକ୍ତବ୍ୟକୁ ଦିନରାତି ବସି କାଗଜ ପୃଷ୍ଠାକୁ ଉତାରି ଆଣି ମଣିଷସମାଜ ଆଗରେ ନିଖୁଣ ଭାବରେ ବାଢ଼ି ଦିଅନ୍ତି । ତାଙ୍କର ଲେଖାଗୁଡ଼ିକ ଯେପରି ସରଳ ବୋଧଗମ୍ୟ ଓ ମନଛୁଆଁ, ସେ ସବୁର ବର୍ଣ୍ଣନା ଚାତୁରୀ ମଧ୍ୟ ସେହିପରି ଅନନ୍ୟ ଓ

ସ୍ୱତନ୍ତ୍ର । ଏଥିରେ ସାମାଜିକ ତଥା ମାନସିକ ସମସ୍ୟାଗୁଡ଼ିକ ଖୋଲା ଖୋଲି ଆଲୋଚନା ହୋଇଥାଏ, ତା'ର କାରଣ ଗୁଡ଼ିକ ପ୍ରତି ସିଧାସଳଖ ବ୍ୟଙ୍ଗୋକ୍ତି ମଧ ଥାଏ । ସବୁଠୁ ବଡ଼କଥା ଏହାର ସମାଧାନଟିରେ ପ୍ରତ୍ୟେକ ବ୍ୟକ୍ତିର ଭୂମିକା ବା କର୍ତ୍ତବ୍ୟ ଅତି ସ୍ପଷ୍ଟ ଭାବରେ ରହିଥାଏ । ମଣିଷର ବର୍ଷ ବର୍ଷ ଧରି ବସି ଯାଇଥିବା ଜଡ଼ତାର ବକଳଟିକୁ ଖେଞ୍ଚି ଖସାଇ ପକାଇବାକୁ ଲେଖାଗୁଡ଼ିକ ମଧରେ ଅଫୁରନ୍ତ ପ୍ରେରଣା ଓ ଶକ୍ତି ରହିଥାଏ । ମଝିରେ ମଝିରେ ରୋଗ ତଥା ବୟସାଧିକ୍ୟ ଯେ ପ୍ରତିବନ୍ଧକ ସୃଷ୍ଟି ନ କରନ୍ତି ତା' ନୁହେଁ, କିନ୍ତୁ ତାହା ବୈଶାଖୀ ଆକାଶର ଅଦିନ ମେଘପରି ପୁଣି କୁଆଡ଼େ ଫିଟିଯାନ୍ତି, ସଫା ଆକାଶ ପରି ଚିରଭାଇ ସବୁବେଳେ ଦିଶନ୍ତି ସୁସ୍ଥ, ସାଦାସିଧା ଶୁଭେଚ୍ଛୁ ମଣିଷଟିଏ । ଏତେ ବାଧା ସତ୍ତ୍ୱେ ତାଙ୍କର ନିରବଚ୍ଛିନ୍ନ ପ୍ରବନ୍ଧଧର୍ମୀ ଲେଖା ହୋଇଛି ଆହୁରି ବୁଦ୍ଧିମନ୍ତ ଓ ହୃଦୟସ୍ପର୍ଶୀ । ତାଙ୍କ ସଂସ୍ପର୍ଶରେ ଯେ ଥରୁଟେ ଆସିଛି, ସେ ରହିଯାଇଛି ତାଙ୍କ ନଖ ଦର୍ପଣରେ । ଭେଟ ହେଲେ ପଚାରି ବସନ୍ତି ସୁଖ ଦୁଃଖ,ଘରଦ୍ୱାର, ପରିବାର, ହାନିଲାଭ ଓ ପେଟପାଟଣା କଥା । କଥାରେ କଥାରେ ଖୋଜିବସନ୍ତି ଲୋକଟି ଭିତରେ ସମ୍ଭାବନା ଗୁଡ଼ିକୁ । ପୁଣି ଜୀବନର ଉଠାଣି ଗଡ଼ାଣିର କାହାଣୀ ଭିତରୁ ସେଇ ସମ୍ଭାବନାର ଖିଅଟିକୁ ମଧ ଦେଖେଇ ଦିଅନ୍ତି । ମଣିଷଟି ହୁଏତ ପ୍ରଥମ ଥର ପାଇଁ ବଡ଼ ମଣିଷଟି ହୋଇ ପାରିବାର ଅହେତୁକ ଆତ୍ମବିଶ୍ୱାସରେ ଆଚମ୍ବିତ ହୋଇପଡ଼େ । ଅତି ସ୍ୱଭାବ ସୁଲଭ ଭାବେ ଡୁଙ୍କାଇ ପଡ଼ି ଦିବାସ୍ୱପ୍ନ ଦେଖୁଥିବା ମଣିଷଟିକୁ ଚିଆଁଇ ଦିଅନ୍ତି । ବାସ୍ତବତାକୁ ଭିଡ଼ି ଆଣନ୍ତି । ଅତି ସାଧାରଣ ମଣିଷଟି ବି ପ୍ରଭୁଙ୍କ ସୃଷ୍ଟିରେ ଅନେକ କିଛି କରିପାରିବ ସେହି ଆତ୍ମ ବିଶ୍ୱାସ ଟିକକ ଜଗାଇ ଦିଅନ୍ତି ।

ଅବଶ୍ୟ ମଣିଷ ଦେହରେ ଜୋକଟିଏ ପରି ଲାଗି ରହିଥିବା ତାମସିକ ଜଡ଼ତାଟିକୁ ଉଖାରି ବାହାର କରିବାକୁ ଯାଇ, ବ୍ୟକ୍ତିଟିକୁ ଅତି ନିଷ୍କପଟ ଭାବେ ସେ ଅନୁଶୀଳନ କରି ଦେଖାଇ ଦିଅନ୍ତି-ତ୍ରୁଟି ରହିଥିବା ଦୁର୍ବଳତାଗୁଡ଼ିକୁ । କେତେକ ଉପକୃତ ହୁଅନ୍ତି ପ୍ରକୃତ ବଂଧୁଟିଏ ପାଇ । ଜୀବନରେ ଉନ୍ନତି କରନ୍ତି । କେହି ଜାଣନ୍ତୁ ବା ନ ଜାଣନ୍ତୁ ବ୍ୟକ୍ତିର ହୃଦୟରେ ଜଣେ ପଥ ପ୍ରଦର୍ଶକ ବଂଧୁଟିଏ ହୋଇ ରହିଯାନ୍ତି । କିନ୍ତୁ ଅପରପକ୍ଷରେ ନିଜ ଦୁର୍ବଳତାକୁ ପିଲାଝିଲାଠୁ ଅଧିକ ସ୍ନେହ ଦେଇ ପାଳିପୋଷି ବଢ଼ାଉଥିବା ଲୋକଟି ପାଇଁ ଚିରଭାଇ ଅଖାଡୁଆ ମଣିଷ ରୂପେ ଦିଶିଯାନ୍ତି । ଭାଇଙ୍କ କଥା ତାକୁ କଟୁ ସମାଲୋଚନା ପରି ଲାଗେ । ଯେମିତି ବ୍ୟକ୍ତିଟିର ଯଶଖ୍ୟାତିରେ ଭାଇ ଅସହିଷ୍ଣୁ ହୋଇ ଏପରି କହୁଛନ୍ତି ! ଅଯଥା ଭୁଲ୍ ବୁଝାମଣାଟା ମୁଣ୍ଡ ଟେକେ । ଲୋକଟି ତେଣିକି ଦୁରେଇ ଯାଏ ଓ କଥାରେ ନଥା ଯୋଡ଼ି ଗପିବୁଲେ । ଯେ ଯାହା କହୁନା

କାହିଁକି- କାହାରିଠୁ କୃତ୍ରିମ ପ୍ରଶଂସା ବା ଅକୃତ୍ରିମ ନିନ୍ଦାକୁ ହିସାବକୁ ନେଉନଥିବା ଦୁଃସାହସୀ ଏହି ପରାର୍ଥ ପଥିକଟି ପ୍ରତ୍ୟେକ ମଣିଷ ଭିତରେ ଆମ ସମାଜ ପାଇଁ ତାର ବିବେକ ଘରେ ମଂଜିଟିଏ ପୋତି ଦିଅନ୍ତି । ସେ କୁହନ୍ତି , ''କାହାଠୁ କିଛି ଚାହଁନି, ନିଜକୁ ବରଂ ଦେଇଦିଅ, ଅନ୍ୟମାନଙ୍କୁ ସାଂଗରେ ନେଇ ଲକ୍ଷ୍ୟ ଆଡ଼କୁ ମାଡ଼ିଚାଲ । ଏବେ ହୁଏତ କେହି କେହି ଆସୁ ନାହାନ୍ତି । ମାତ୍ର ସମୟ ଆସିଲେ ସଭିଏଁ ଆସିବେ । ଜୀବନଟା ଭଗବାନ ଦେଇଛନ୍ତି କିଛି କରିବାକୁ, ହୋଇଉଠିବାକୁ ପ୍ରତ୍ୟେକ ପରିସ୍ଥିତିରେ ।'' ସେ ଯାହା-ତାହା ହିଁ କୁହନ୍ତି ବୋଲି ତ ମନକୁ ଛୁଇଁଯାଏ । ଗାନ୍ଧିଜୀଙ୍କ ଆଦର୍ଶରେ ଯେପରି ସରଳ ନିରାଡମ୍ବର ମାନବବାଦୀ ଜୀବନ କାଟୁଥାନ୍ତି ଶ୍ରୀଅରବିନ୍ଦଙ୍କ ଆଦର୍ଶରେ ସେହିପରି ଲୋକ ଲୋଚନର ଆଢୁଆଳରେ କେଉଁ ସୂକ୍ଷ୍ମଜଗତ ସହ ଡୋରିଟିଏ ବାଂଧି ଭାବନାରାଜିଗୁଡ଼ିକ ସାଉଁଟି ଆଣୁଥାନ୍ତି ପୃଷ୍ଠା ପରେ ପୃଷ୍ଠାକୁ । ପୃଥିବୀର ଯେଉଁ ଭାଷା ହୋଇଥାଉନା କାହିଁକି ଆମ ଓଡ଼ିଆ ଭାଇ ଭଉଣୀଙ୍କ ଜ୍ଞାନ ପିପାସାକୁ ବଢ଼ାଇବାକୁ ଅନୁବାଦ କରିଯା'ନ୍ତି ବିଦେଶୀ ଭାଷାର ଅନେକ ବହି ।

ସତରେ ସାମଗ୍ରିକ ଦୃଷ୍ଟିକୁ ଦେଖିଲେ ସମସ୍ତଙ୍କ ପାଇଁ ଦରଦ ଥିବା ବଂଧୁଟିଏ, ମଣିଷ ଭଳି ମଣିଷଟିଏ ଆମ ସଭିଁରି ମିତ ଚିତ୍ତଭାଇ ।

ରମାକାନ୍ତ ସାହୁ

*ସଂଯୋଜକ, ନବଜୀବନ ଶିକ୍ଷା ସଂସଦ,*

*ମାତୃବିହାର, ଖଣ୍ଡଗିରି, ଭୁବନେଶ୍ୱର-୩୦*

# ଆଲୋକ ଓ ଆନନ୍ଦର ମଣିଷ

**ଡଃ** ଚିତ୍ତରଂଜନ ଦାସ ଏକାଧାରରେ ଲେଖକ, ସମାଲୋଚକ ଏବଂ ଅନୁବାଦକ ମଧ୍ୟ । ସେ ଯେ ସାଧାରଣ ମଣିଷକୁ ଆନ୍ତରିକ ଭାବେ ଭଲପାଆନ୍ତି ତାହା ତାଙ୍କ ବ୍ୟବହାର ରୁ ହିଁ ଜଣାପଡେ । ସବୁଠାରୁ ବଡକଥା ହେଲା ସେ ସାନ ସାନ ପିଲା ମାନଙ୍କୁ ଭଲ ପାଆନ୍ତି । ଓଡିଶାର ଘରେ ଘରେ ଚିତ୍ତଭାଇ ଭାବରେ ପରିଚିତ । ସେ ସାନ ସାନ ପିଲାଙ୍କ ପାଇଁ ରଚନା କରିଛନ୍ତି ଶିଶୁ ସାହିତ୍ୟ । ଏକାଧିକ ବିଦେଶୀ ଭାଷା ଜାଣିଛନ୍ତି ସେ । ବିଭିନ୍ନ ବିଦେଶୀ ଭାଷାରୁ ଓଡିଆ ଭାଷାକୁ ଅନୁବାଦ କରିଛନ୍ତି ବହୁ ପୁସ୍ତକ । ଖାସ୍ ଏଇଥିପାଇଁ ସେ ବିଭିନ୍ନ ମହଲରେ ଆଦୃତ ହୋଇଛନ୍ତି ।

ପିଲା ବୁଢ଼ା ସମସ୍ତଙ୍କ ସାଙ୍ଗରେ ହସି ହସି କଥା କହନ୍ତି ସେ । କେହି ପର ନୁହଁନ୍ତି ତାଙ୍କର, ସମସ୍ତେ ଆପଣାର । ବିଭିନ୍ନ ସାମାଜିକ ସାହିତ୍ୟକ ସଂଗଠନ ସହ

ଡଃ ଦାସଙ୍କ ବେଶ୍ ନିବିଡ ସଂପର୍କ ଏହା ଯେ କେହି ମୁକ୍ତ କଂଠରେ ସ୍ୱୀକାର କରିବ । ଡଃ ଦାସଙ୍କ ବ୍ୟକ୍ତିତ୍ୱ ସତରେ ଅନନ୍ୟ । ପ୍ରଫେସର ହିସାବରେ ମଧ ସେ ଅଭିଜ୍ଞ ଓ ପଣ୍ଡିତ । ପୃଥିବୀର ସମସ୍ତଙ୍କ ମଙ୍ଗଳ ମନାସୁଥିବା ମଣିଷଟିଏ ସେ । ଓଡିଶାର ପ୍ରକାଶକମାନେ ପ୍ରକାଶ କରିଛନ୍ତି ତାଙ୍କର ବହୁ ପୁସ୍ତକ ଯାହା ଓଡିଶାର ପାଠକ ମାନଙ୍କ ଦ୍ୱାରା ସବୁକାଳେ ଆଦୃତ ହୋଇଛି ।

ବିଭିନ୍ନ ସାହିତ୍ୟକ ସଂଗଠନ ଦ୍ୱାରା ସେ ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି । ସତ୍ୟର ପୂଜାରୀ ସେ । ଏ ସମ୍ମାନ ଓ ପୁରସ୍କାରର ଉର୍ଦ୍ଧ୍ୱରେ ସେ ଏବେ ବି ସାହିତ୍ୟ ସାଧନାରତ ।

ଅଂଧାରରୁ ଆଲୁଅକୁ ଆପଣାର ଜୀବନକୁ ନେଇ ଯିବାକୁ ସେ ଆହ୍ୱାନ କରିଛନ୍ତି ମଣିଷ ସମାଜକୁ । କାର୍ଯ୍ୟକୁଶଳତାକୁ ଭଲ ପାଆନ୍ତି ସେ, ମଣିଷର ଚାଟୁକାରିତାକୁ ନୁହେଁ । ପୃଥିବୀର ବହୁ ସ୍ଥାନକୁ ଯାଇଚନ୍ତି ସେ ବିଭିନ୍ନ ସମୟରେ । ଓଡ଼ିଶା ବାହାରେ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ପ୍ରଫେସର ହିସାବରେ କାର୍ଯ୍ୟ କରିଛନ୍ତି । ଗର୍ବ ଓ ଅହଂକାର ମୋଟେ ତାଙ୍କୁ ସ୍ପର୍ଶ କରିନାହିଁ ।

ଆମେ ଯାହା ଜାଣିଚୁ 'ଜୀବନ' ସଂପର୍କରେ ସାହିତ୍ୟ ସଂପର୍କରେ ସେ ତା'ଠାରୁ ଢ଼େର ଅଧିକ ଜାଣିଛନ୍ତି । ସେ ଯେ ଖାଲି ଭାରତୀୟ ଭାଷା ଜାଣିଛନ୍ତି ତା' ନୁହେଁ, ସେ ବହୁ ବିଦେଶୀ ଭାଷା ମଧ ଜାଣିଛନ୍ତି ।

ମଣିଷର ସମସ୍ତ ଦୋଷ ତ୍ରୁଟିକୁ ମାର୍ଜନା କରି ମଣିଷକୁ ଭଲ ପାଇବାକୁ ସେ ଶିଖେଇଛନ୍ତି । ସାହିତ୍ୟ ସଂପର୍କରେ 'ଜୀବନ ସଂପର୍କରେ' ସମାଜ ସଂପର୍କରେ ସେ ରାଶି ରାଶି ପ୍ରବଂଧ ଓ ସମାଲୋଚନା ଲେଖିଛନ୍ତି । 'ଶିକ୍ଷା' ମାଧମରେ ମଣିଷକୁ ଦିବ୍ୟ ଚେତନାର ଅବବୋଧ ଦେଇଛନ୍ତି ସେ । ମଣିଷ ବିନୟୀ ହେଉ ବୋଲି ସେ ଚାହାଁନ୍ତି ।

ପିଲାମାନଙ୍କୁ ମଣିଷ ଭଳି ମଣିଷ ହେବା ଲାଗି ସେ ଚେଷ୍ଟା କରିଛନ୍ତି । ସେଥିପାଇଁ ସେ ଗଢ଼ିଛନ୍ତି 'ଜୀବନ ବିଦ୍ୟାଳୟ' । ମୁଁ ପିଲା ଦିନେ ପଢ଼ିଛି ବେଶ୍ କିଛି ଶୁଣିଛି ଡଃ ଦାସଙ୍କ ବ୍ୟକ୍ତିତ୍ୱ ସଂପର୍କରେ । ସେ ଯାହା କୁହନ୍ତି ସେଇଆ କରନ୍ତି । ତାଙ୍କ କାର୍ଯ୍ୟ ଓ କଥା ମଧରେ କିଛି ପ୍ରଭେଦ ନଥାଏ । ତାଙ୍କ ଭାଷଣ ଯିଏ ଥରେ ଶୁଣିଛି ସେ ଚିରଦିନ ତାଙ୍କୁ ମନେ ରଖିଛି ।

ଦୂରରେ ଥିବା ଲୋକଟିଏ ବି ମନେ ପକାଉଥାଏ ତାଙ୍କୁ । ବ୍ୟକ୍ତିଗତ ଭାବରେ ତାଙ୍କୁ ଯେଉଁମାନେ ଜାଣି ନାହାଁନ୍ତି ସେମାନେ ତାଙ୍କୁ ଜାଣିବାକୁ ଚେଷ୍ଟା କରିବା ଦରକାର ତାଙ୍କର ଲେଖା ଓ କାର୍ଯ୍ୟ ମାଧମରେ । ସେ ନିଶ୍ଚିତ ଭାବରେ ଓଡ଼ିଶାର 'ପାଠକ' ଓ 'ସାଧାରଣ ମଣିଷ'ର ହୃଦୟରେ ଚିରଦିନ ବଂଚି ରହିଥିବେ । ଶିକ୍ଷାର

ସଂଜ୍ଞା ତାଙ୍କ ନିକଟରେ ନିଶ୍ଚିତ ଭାବରେ ଭିନ୍ନ । ସେ କାହାକୁ କିଛି ନ କହି ବର୍ଷ ବର୍ଷ ଧରି ସଂଘର୍ଷ କରି ଚାଲିଛନ୍ତି ଜଗତର କଲ୍ୟାଣ ଲାଗି, ମଣିଷର କଲ୍ୟାଣ ଲାଗି । ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କ ଆଦର୍ଶରେ ଅନୁପ୍ରାଣିତ ସେ । ସେ ଚିରକାଳ ବାଣ୍ଟି ଚାଲିଚନ୍ତି ଜ୍ଞାନର ଅମୃତ ।

ବହୁ ପୁସ୍ତକ ରଚନା କରିଚନ୍ତି ସେ, ପ୍ରବନ୍ଧ, ସମାଲୋଚନା, ଅନୁବାଦଠୁ ଆରମ୍ଭ କରି ଶିଶୁ ସାହିତ୍ୟ ପର୍ଯ୍ୟନ୍ତ । କେବେ ହୋଇ ନାହାନ୍ତି ସେ ଜୀବନ ପ୍ରତି ବିତସ୍ପୃହ । ସେ କଥା କହନ୍ତି ଅଳ୍ପ । ଦେଖା ହେଲେ ସୁଖ ଦୁଃଖ କଥା ପଚାରନ୍ତି ।

ମତେ ଯଦି କେବେ ପଚରାଯାଏ ଜଣେ ସଚ୍ଚା ସାହିତ୍ୟିକଙ୍କ ନାମ କୁହନ୍ତୁ । ମୁଁ ନିଶ୍ଚିତ ଭାବରେ କହିବି ଚିତ୍ତରଂଜନ ଦାସ ହିଁ ଓଡ଼ିଶାର ସମ୍ମାନୀୟ ସାହିତ୍ୟିକ । ଏହା ଯେ କେହି ମଧ ମୁକ୍ତ କଂଠରେ ସ୍ୱୀକାର କରିବ । କଥା କହିଲାବେଳେ ମନେ ହୁଏ ଯେଭଳି ମହୁ ଝରୁଚି କଥାରୁ । ଆଶା ଓ ଆଲୋକର ମଣିଷ ସେ । ମୋର ଏଇ କବିତାଟି ଡଃ ଦାସଙ୍କୁ ଉତ୍ସର୍ଗୀକୃତ ।

(୧)

କିଛି କହିବେ ବୋଲି ବସିତୁ
ଆମେ ଶୁଣିବାକୁ
ବକ୍ତବ୍ୟ ଯାହା ଆପଣଙ୍କର,
ତା' ଆଗରେ ହୀରା ନୀଳା, ମୋତି ମାଣିକ କିଛି ନୁହଁ ।
ଦେଖ, ପିଲାମାନେ ଦଉଡୁଛନ୍ତି ଖରାରେ,
ସେମାନଙ୍କୁ ଆକଟ କର ବୋଲି କେହି କହୁଚିକି ?
ଦେଖ, ଟିକେ ଦୂରରେ କିଏ ଠିଆ ହେଇଛି
ସାଧା ସିଧା ମଣିଷଟେ ସେ,
ଜ୍ଞାନ ତପସ୍ୱୀ ସେ, ତାକୁ କିଛି ପଚାରନି ଜମା,
ଟିକେ ସାହସ କରି ତାଙ୍କ ନିକଟକୁ ଯାଅ
ପାଟିଗୋଳ କରନି ଜମା
ଭାବୁଛକି ତୁମଠୁ କେହି କିଛି ଛଡେଇ ନବ ?
ସେମିତି କିଛି ଭାବନି, ବରଂ ତମେ ଯାହା ପାଇବ
ସେ ସବୁ ପାଇବା ଲାଗି ତମର ଯୋଗ୍ୟତା ଅଛି କି ନାଇଁ ଭାବିବ ।
ଆମେ ଯଦି କିଛି କାଳ ତାଙ୍କ ସାଙ୍ଗରେ ରହିଯିବା କ୍ଷତି କ'ଣ ?
ସେ କେବଳ ଆମକୁ ସିଧା ଅନେଇବେ

ଚିହ୍ନା ଜଣା ଲୋକ ଭଳି ଅଳ୍ପ ହସିବେ ।
ତମେ ଭାବୁଥିବ, ଫୁଲ ଭଳି ସୁବାସ ବାଣ୍ଟିବା ଛଡ଼ା
ତାଙ୍କର ଆଉ କାମ କ'ଣ ?
'ଦୁ ଦୁ ବର୍ଷାରେ ଭିଜୁଥିବା ଲୋକ
ଜାଣିଥିବ ବର୍ଷାର ମଜା,
ଯାହା ତମେ କି ମୁଁ ମୋଟେ ଜାଣି ନଥିବା
'ଆନନ୍ଦ' ଓ 'ଆଲୋକ'ର ମଣିଷ ସେ
ସବୁବେଳେ ସମସ୍ତଙ୍କ କଥାରେ
ମୁଂଡ ଟୁଙ୍ଗାରେନି ବୋଲି
ସେ ଅନନ୍ୟ ଚିରକାଳ ।

(୨)

ତଥାପି ବାଟ କଢ଼େଇ ନେବାକୁ
ସମସ୍ତେ କହିବେ ଆପଣଙ୍କୁ,
ହଠାତ୍ ଆମେ ଦେଖିବୁ
ସମସ୍ତେ ବୋକା ପାଲଟି ଯାଇଚନ୍ତି ଖୁସିରେ,
ମିଂଝି ମିଂଝି ଡିବି ଆଲୁଅରେ
ଆମେ ଖାଲି ଆପଣଙ୍କ ଫଟୋ ଦେଖୁଥିବୁ
ଓ ବେଳାଏ ଖୁସିରେ ଆପଣଙ୍କ ଲେଖା ବହିର ପୃଷ୍ଠା ଓଲଟାଉଥିବୁ
ଅନେକ ଅନେକ ବର୍ଷପରେ
ତଥାପି ବାଟ କଢ଼େଇ ନେବାକୁ ସମସ୍ତେ କହିବେ ଆପଣଙ୍କୁ ।

ଶ୍ରୀ ପୃଥ୍ୱୀରାଜ ପରିଡ଼ା
*ପ୍ଲଟ୍ ନଂ ୧୪୮୮, ବାଳ ଭବନ ଷ୍ଟ୍ରୀଟ୍ ଲେଡ଼ ଟାଉନ୍,*
*ଭୁବନେଶ୍ୱର-୨*

# ଚିଉଭାଇଙ୍କ ସହ ପରିଚୟ

୧୯୯୪ ମସିହା ନଭେମ୍ବର ୨୪ ତାରିଖ । ମୋ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଦିବସ । ନବଜନ୍ମର ଦିନ । ଅନ୍ତର୍ମୁଖୀ ଚେତନା ମଧ୍ୟକୁ ପ୍ରବେଶ କରିବାର ପ୍ରଥମ ମୁହୂର୍ତ୍ତ । ସେଦିନ ସତେ ଅବା ପ୍ରଥମଥର ପାଇଁ ବିଶ୍ୱଜନନୀଙ୍କ ଦିବ୍ୟପ୍ରେମପୂର୍ଣ୍ଣ

ଆଲିଙ୍ଗନର ସ୍ପର୍ଶ ଅନୁଭବ କଲି ।

ଯେତେବେଳେ ମୁଁ ଶାଳବଣି ଗ୍ରାମପଞ୍ଚାୟତ ବାଳିକା ଉଚ୍ଚ ବିଦ୍ୟାଳୟରେ ଶିକ୍ଷକତା କରୁଥାଏ । ଶାଳବଣି ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ଅଧକ୍ଷ ରଶ୍ମିଭାଇ ଏବଂ ଆମ ବିଦ୍ୟାଳୟର ଶିକ୍ଷୟିତ୍ରୀ ଭଉଣୀ କାନ୍ତିଅପାଙ୍କ ସହଯୋଗରେ ଶ୍ରୀଅରବିନ୍ଦଙ୍କ 'ଯୋଗସମନ୍ୱୟ' ଗ୍ରନ୍ଥ ଅଧ୍ୟୟନ ଶିବିର ଶାଳବଣି ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ଅନୁଷ୍ଠିତ ହୋଇଥିଲା ।

ଏହା ପୂର୍ବରୁ 'ଶ୍ରୀମଦ୍ ଭଗବଦ୍ ଗୀତା' ଅଧ୍ୟୟନରୁ ମୁଁ ଏତିକିମାତ୍ର ବୁଝିଥାଏ ଯେ ଭଗବାନ ସମସ୍ତଙ୍କ ହୃଦୟରେ ଅଛନ୍ତି, ସାରାଜଗତରେ ରହିଛନ୍ତି । ଭାଗବତର ବାଣୀ ''ମନ ମୋହର ନିଜ ଗୁରୁ'' ଅନୁସାରେ ମୁଁ କାହା କଥା ଶୁଣେ ନାହିଁ । ଘରେ ମୋ ବଡ଼ ମା' ଖୁବ୍ ବ୍ୟସ୍ତ ହୋଇ ସେ ଦୀକ୍ଷା ଗ୍ରହଣ କରିଥିବା ଗୁରୁଙ୍କର ଶରଣାପନ୍ନ ହୋଇ ଦୀକ୍ଷା ନେବାକୁ କହନ୍ତି । ମୋ ମନ ଆଦୌ ମାନେ ନାହିଁ । ସିଧା ମନା କରିଦିଏ ।

ପାଠଚକ୍ରରେ ଯେ ଦୀକ୍ଷିତ ହେବାର ପ୍ରଶ୍ନ ନାହିଁ; ଏହା ଯେ ଧର୍ମର ସଂକୀର୍ଣ୍ଣତା ମଧ୍ୟରେ ନାହିଁ, ଏ ବିଷୟରେ କାନ୍ତିଅପା ଯେତେ କହିଲେ ମଧ୍ୟ ମୁଁ ପାଠଚକ୍ରରେ କେବେହେଲେ ଯୋଗ ଦିଏନାହିଁ ମୋର ପୂର୍ବର ଏହି ଦୀକ୍ଷିତ ହେବାର ଭ୍ରମଧାରଣା ଏବଂ ଅନ୍ଧବିଶ୍ୱାସ ଯୋଗୁଁ । ଏବେ ମୁଁ ଚିନ୍ତା କରୁଛି ପୂର୍ବର ପୁଞ୍ଜୀଭୂତ ଧାରଣାଗୁଡ଼ିକ ମଣିଷ ମଧ୍ୟରେ କେଡ଼େ ବଳବତ୍ତର ପ୍ରଭାବ ପକାଇଥାଏ ।

ସ୍ୱାଧ୍ୟାୟ ଶିବିରକୁ ପ୍ରାବନ୍ଧିକ ଚିତ୍ତରଂଜନ ଦାସ ଆସୁଛନ୍ତି ଶୁଣି କ୍ଲାସ୍‌ରେ ଯୋଗ ଦେବାକୁ ଇଚ୍ଛା ହେଲା । ଏ ଦିଗରେ ମୋ ପାଇଁ କାନ୍ତିଅପାଙ୍କ ଶ୍ରଦ୍ଧା ଓ ସଦିଚ୍ଛା ମଧ୍ୟ ଅବିସ୍ମରଣୀୟ । ନଭେମ୍ବର ୨୪ ତାରିଖ ସକାଳୁ ଆଧ୍ୟାତ୍ମିକ ପତାକା ଉତ୍ତୋଳନ କରାଗଲା । ତା' ପରେ କେତେକ ଭାଇଭଉଣୀଙ୍କୁ ନେଇ କ୍ଲାସ୍ ଆରମ୍ଭ ହେଲା । ମଝି ସ୍ଥାନରେ ଚିତ୍ତଭାଇ ବସିଥାନ୍ତି । ତାଙ୍କ ସାମ୍ନାରେ ଥାଏ ଡେକ୍ସ ଉପରେ ବହି । ଛଅଦିନ ମଧ୍ୟରେ କେତେ କ'ଣ ଆଲୋଚନା ମଧ୍ୟରୁ କେତୋଟି ବାକ୍ୟ ପ୍ରତି ଖୁବ୍ ଆକୃଷ୍ଟ ହୋଇ ପଡ଼ିଥିଲି ଯଥା:- ''ଖରାପ ବା ମନ୍ଦ ପରିବେଶ ମଧ୍ୟରେ ଭଲ ଲୋକର ଭୂମିକା ଖୁବ୍ ବେଶୀ ।'' ''ଆଧ୍ୟାତ୍ମିକତାର ପ୍ରକୃତ ଲକ୍ଷ୍ୟ Service to the Divine in the humanity", "Man is a thinker" ''ଦୋଷ ଦେଖିବା ସତ୍ତ୍ୱେ ଜଣକୁ ଭଲପାଇବା ହିଁ ପ୍ରକୃତ ଭଲପାଇବା'' ''ଯିଏ ବେଶୀ ବୁଝିଛି, ସେ ବେଶୀ ସହିବ ।'' ''ଆମର ସମସ୍ତ ଶକ୍ତି ଉପଲବ୍ଧିର ମୂଳଦୁଆ ହେଉଛି ଶରୀର ।'' ''ମୁଁ ବଦଳିଲେ ପୃଥିବୀ ବଦଳିବ ।'' ବିଶ୍ୱାସ ହିଁ ମୂଳମନ୍ତ୍ର ।''

''ଚିରନ୍ତନ ଜନ୍ମ ଲାଭ କରୁଥିବା ବ୍ୟକ୍ତିକୁ କେଉଁ ସକାଳ ପୁରୁଣା ଲାଗିବ ନାହିଁ ।'' ''ପ୍ରତିବର୍ଷ ଶିକ୍ଷକ ନୂତନ ଉପାୟରେ ଶିକ୍ଷାଦାନ କରିବା ଆବଶ୍ୟକ ।'' ''ମୋ ବଗିଚାର ଫୁଲ ଦେଖି ପୃଥିବୀ ସାରା ବଗିଚାର ଫୁଲକୁ ଦେଖିବା ।'' ''ଆମେ ସର୍ବପ୍ରଥମେ ମଣିଷ, ତା'ପରେ ଭାରତୀୟ, ତା'ପରେ ଓଡ଼ିଆ ।''

ଏସବୁ କଥା ଶୁଣି ବିସ୍ମୟ ନେତ୍ରରେ ଚାହିଁ ରହିଥିଲି ଅଧ୍ୟାପନା ଦାୟିତ୍ୱରେ ଥିବା ଚିତ୍ତଭାଇ ଏବଂ ସେ ହାତରେ ଧରିଥିବା ଶ୍ରୀଅରବିନ୍ଦଙ୍କ ପୁସ୍ତକକୁ । ମୋ ମନରେ ସ୍ୱତଃ ପ୍ରଶ୍ନ ଉଠୁଥିଲା- ତେବେ ଶ୍ରୀଅରବିନ୍ଦଙ୍କ ପୁସ୍ତକରେ କ'ଣ ଏହିଭଳି କଥା ଲେଖା ଅଛି ?

ସେହି ସ୍ୱାଧ୍ୟାୟ ଶିବିରରେ ଏତିକି ମାତ୍ର ପରିଚୟରୁ ଶ୍ରୀଅରବିନ୍ଦଙ୍କ ଦର୍ଶନ ଏବଂ ଚିତ୍ତଭାଇଙ୍କ ସାହିତ୍ୟ ପ୍ରତି ଶ୍ରଦ୍ଧା ଭାବ ଜନ୍ମ ନେଲା । ନିଜେ ମଧ୍ୟ ନିଜର ପରିଚୟ ପାଇଲି । ନଚେତ୍ ଜଣେ ଯାନ୍ତ୍ରିକ ଶିକ୍ଷକ ଭାବେ କେବଳ ଆଦର୍ଶ ଶିକ୍ଷକରେ ହିଁ ଜୀବନସାରା ରହିଯାଇଥାନ୍ତି । ପ୍ରକୃତ ଶିକ୍ଷକ ଆଦର୍ଶ ଶିକ୍ଷକଠାରୁ ବହୁ ଉର୍ଦ୍ଧ୍ୱରେ ସେ ନିଜକୁ କେବେ ସଫଳ ମନେ କରେ ନାହିଁ କିମ୍ବା କୌଣସିଠାରେ ସନ୍ତୁଷ୍ଟ ହୋଇ ରହିଯାଏ ନାହିଁ । କେତେ କେତେ ଉପାୟ ନୂତନ ଢଙ୍ଗରେ ତା ନିକଟକୁ ନିୟତ ଆସିବାରେ ଲାଗିଥାନ୍ତି ।

ଭଗବାନ ସମସ୍ତଙ୍କ ହୃଦୟରେ ଅଛନ୍ତି, ସାରାଜଗତରେ ରହିଛନ୍ତି । ପୂର୍ବରୁ ବୁଝିଥିବା ଗୀତାର ବାଣୀ ଶ୍ରୀଅରବିନ୍ଦଙ୍କ ଦର୍ଶନରେ ଦେଖିବାକୁ ପାଇଲି ଅଧିକ ଗଭୀର ଭାବରେ । ଭଗବାନ ସମଗ୍ର ସୃଷ୍ଟିରେ ପରିଣତ ହୋଇଛନ୍ତି; ସମସ୍ତଙ୍କ ହୃଦୟରେ ସାରା ଜଗତରେ ଅଛନ୍ତି କିନ୍ତୁ ବିକୃତ ଅବସ୍ଥାରେ ଅଛନ୍ତି । ନିଜ ସ୍ୱରୂପରେ ପ୍ରକଟିତ ହେବା ଭଗବାନଙ୍କ ଲକ୍ଷ୍ୟ । ପ୍ରକୃତି ତା'ର ବିବର୍ତ୍ତନ ଧାରାରେ ଏହି କାର୍ଯ୍ୟ ସମ୍ପାଦନ କରୁଛି, କିନ୍ତୁ ମଣିଷ ପ୍ରକୃତି ସହ ସହଯୋଗ କଲେ ବିବର୍ତ୍ତନର ଗତି ତ୍ୱରାନ୍ୱିତ ହେବ ।

ଚିତ୍ତଭାଇଙ୍କ କ୍ଲାସରେ ଯୋଗ ଦେବାର ଯେଉଁ କେତୋଟି ସୁଯୋଗ ପାଇଥିଲି, ସେଗୁଡ଼ିକ ହେଲା ଶିବିର, ଶାଳବଣି ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର, ମନୋବିଜ୍ଞାନ ସ୍ୱାଧ୍ୟାୟ ଶିବିର, ନବୋଦ୍ୟମ ମାର୍କୋଣା, ଗ୍ରୀଷ୍ମକାଳୀନ ଶ୍ରମ ଶିବିର, ମାତୃବିହାର କାଦବରାଙ୍ଗ ଏବଂ ଭୁବନେଶ୍ୱରରେ ମାତ୍ର ୪/୫ଗୋଟି କ୍ଲାସ୍ । ଏହି ଅଳ୍ପ କେତେକ କ୍ଲାସରୁ ମୁଁ ଯାହା ଅନୁଭବ କରିଛି- ଚିତ୍ତଭାଇ କ୍ରମାଗତ ଭାବେ ୪/୫ ଘଣ୍ଟା ଧରି କ୍ଲାସ୍ ନେଉଥିଲେ ମଧ୍ୟ ସେ କେବେହେଲେ କ୍ଲାନ୍ତ ହେବାର ପରିଲକ୍ଷିତ ହୋଇନାହାନ୍ତି । ଆମେ ମଧ୍ୟ ଜାଣିପାରୁନେ କିଭଳି ଏତେ ଶୀଘ୍ର ସମୟ ଚାଲିଯାଏ ।

ନିଜକୁ ଅନ୍ୟମାନଙ୍କ ନିମିତ୍ତ ଦେଇଦେବା ପାଇଁ ଅନ୍ତରରେ ସମ୍ମତି ପ୍ରଦାନ କରୁଥିବା ଶିକ୍ଷକ ହିଁ ଏହିପରି ପ୍ରସନ୍ନ ଥାଆନ୍ତି, ଅକ୍ଳାନ୍ତ ଥାଆନ୍ତି । ପରମ ଶ୍ରଦ୍ଧାର ଭାବଟି ସହ ସଂଯୁକ୍ତ ଥାଆନ୍ତି ।

ଚିତ୍ତଭାଇଙ୍କ କ୍ଲାସ୍‌ରେ ଅନେକ ଦାର୍ଶନିକ, ବୈଜ୍ଞାନିକ, ସାହିତ୍ୟିକ, ଭକ୍ତଙ୍କ ପ୍ରସଙ୍ଗ ଆଲୋଚିତ ହୁଏ । ରାଜନୀତିର କଥା, ଅର୍ଥନୀତିର କଥା, ମନୋବିଜ୍ଞାନର କଥା, ସମାଜର କଥା, ଶିକ୍ଷା ଓ ଶିକ୍ଷାବିତ୍‌ମାନଙ୍କର କଥା ପଡ଼େ । ସବୁକିଛିକୁ ସେ ବ୍ୟକ୍ତିଗତ ଜୀବନ ବଂଚିବା କ୍ଷେତ୍ରକୁ ଓହ୍ଲାଇ ଆଣନ୍ତି । ବ୍ୟକ୍ତିଗତ ଜୀବନକୁ ପୁଣି ସାମୂହିକ ଜୀବନ ଓ ବିଶ୍ୱପ୍ରକୃତି ସହ ଛନ୍ଦି ଦିଅନ୍ତି । ସର୍ବୋପରି ତାଙ୍କର ସମସ୍ତ ଆଲୋଚନା ଓ ଉଦାହରଣ ସମ୍ପର୍କିତ ଥାଏ ଦିବ୍ୟ ସତ୍ୟପୂର୍ଣ୍ଣ ତତ୍ତ୍ୱ ସହିତ ।

ସ୍ୱାଧ୍ୟାୟ ଶିବିରମାନଙ୍କରେ ସାନ୍ଧ୍ୟ ଆଲୋଚନା ପାଇଁ ଅଧ୍ୟୟନ ହୋଇଥିବା ବିଷୟ ସମ୍ପର୍କିତ ପ୍ରସଙ୍ଗ ମୁକ୍ତଭାବେ କହିବା ନିମିତ୍ତ ରଖାଯାଇଥାଏ । ପ୍ରତ୍ୟେକଙ୍କ ମଧ୍ୟରେ ସେ କହିବାର କଳା ସମ୍ଭାବନା ରୂପେ ନିହିତ, ତାହା ପ୍ରସ୍ଫୁଟିତ କରାଇବା ହିଁ ମୁଖ୍ୟ ଲକ୍ଷ୍ୟ । କେବଳ ଜଣେ ଦୁଇଜଣ ନୁହେଁ ସମସ୍ତେ ଯେପରି କହିବାର ସୁଯୋଗ ପାଇପାରିବେ ସେହିଭଳି ବାତାବରଣଟି ମଧ୍ୟ ସୃଷ୍ଟି କରାଯାଇଥାଏ । ଏହି ସୁନ୍ଦର ପରଂପରାର ପ୍ରେରଣା ଚିତ୍ତଭାଇଙ୍କ ଠାରୁ ଆସିଛି ।

ନମ୍ରତା ଚିତ୍ତଭାଇଙ୍କ ପ୍ରତିଟି ଆଚରଣରେ ହିଁ ପ୍ରସ୍ଫୁଟିତ । ଅତ୍ୟନ୍ତ କଠୋର ଅବସ୍ଥାରେ ମଧ୍ୟ ନମ୍ର ଭାବଟି ତାଙ୍କୁ ଆଚ୍ଛାଦିତ କରି ରଖିଥାଏ । ଦିବ୍ୟ ସତ୍ୟ ପ୍ରକାଶିତ ହେବାରେ ପ୍ରତିବନ୍ଧକ ସବୁକୁ ଠିକ୍ ନିଖି ଭାବେ ସେ ସୂଚାଇ ଦିଅନ୍ତି ଏବଂ ସେଭଳି କର୍ମର ସମାଲୋଚନା କରନ୍ତି । ସେ କେବେହେଲେ ନିଜକୁ ମଣିଷଠାରୁ ଦୂରେଇ ନେଇ ନାହାନ୍ତି, ମଣିଷ ମଧ୍ୟରେ ଉତ୍ପାତ କରୁଥିବା ଆସୁରିକ ପ୍ରବୃତ୍ତି ନିକଟରେ ସମୟେ ସମୟେ ନୀରବ ରହି ପୁଣି ମଣିଷ ନିକଟକୁ ଫେରି ଆସନ୍ତି ଅଶେଷ ବିଶ୍ୱାସ ନେଇ । ମଣିଷ ମଧ୍ୟରେ ଅନ୍ୟ କାହାକୁ ଉପଲବ୍ଧି କରିପାରୁଥିବା ଏଇ ବ୍ୟକ୍ତିଜଣକ ମଣିଷ ଉପରେ ଅତୁଟ ଶ୍ରଦ୍ଧା ଓ ବିଶ୍ୱାସ ରଖିଥାନ୍ତି । ଚିତ୍ତଭାଇଙ୍କ କଥା ମଣିଷ ମଧ୍ୟରେ ଥିବା ସମସ୍ତପ୍ରକାର ସ୍ଥାଣୁତାକୁ ଭଙ୍ଗ କରେ । ମନ୍ତ୍ର ସ୍ୱରୂପ ବଳ ପ୍ରଦାନ କରିଥାଏ । ସକଳ ଭାବପ୍ରବଣତାଠାରୁ ଦୂରେଇ ନିଏ । ମନଗହନର ବିଚିତ୍ରତାକୁ ଠିକ୍ ନିଖି ଭାବେ ସେ ଉପସ୍ଥାପନ କରିଥାନ୍ତି ।

ଦିବ୍ୟ ସତ୍ୟର ପରିପ୍ରକାଶ ନିମିତ୍ତ କର୍ମଭୂମିରେ ଚିତ୍ତଭାଇ ଅବତରଣ କରିଛନ୍ତି । ଅନ୍ୟମାନଙ୍କ ସହ ତାଙ୍କର ସମ୍ପର୍କ ଅନ୍ତରଂଗ । ସେହି ସମ୍ପର୍କରୁ ସୃଷ୍ଟି ହୁଏ ସୁହୃଦ୍ ଗୋଷ୍ଠୀ । ଚିତ୍ତଭାଇଙ୍କ ସହ ପରିଚୟ ହେବା ସଙ୍ଗେ ସଙ୍ଗେ ସୁହୃଦ୍

ପରିବାରରେ ନିଜକୁ ଅନ୍ତର୍ଭୁକ୍ତ କରିବାର ସୁଯୋଗ ମୁଁ ଲାଭ କରିଛି । ୧୯୯୫ ମସିହା ଶାନ୍ତବଣି ପୂର୍ଣ୍ଣାଙ୍କ ଶିକ୍ଷାକେନ୍ଦ୍ରରେ ସୁହୃଦ୍ ଶ୍ରମ ଶିବିର ଅନୁଷ୍ଠିତ ହୋଇଥିଲା । ଏହା ଗ୍ରୀଷ୍ମକାଳୀନ ଶ୍ରମ ଶିବିର ଥିଲା । ମେ ୨୧ ତାରିଖ ସନ୍ଧ୍ୟା ସମୟରେ ରବିଭାଇ ଶ୍ରୀଅରବିନ୍ଦଙ୍କ 'ଆମନ୍ତ୍ରଣ' କବିତା ଆବୃତ୍ତି କରୁଥିଲେ । ତାଙ୍କର କବିତା ଆବୃତ୍ତି ଶୈଳୀ ଅନ୍ତରର କେଉଁ ଗଭୀରତମ ପ୍ରଦେଶରୁ ଉଚ୍ଚାରିତ ହେଉଥିବାର ଅନୁଭୂତ ହେଉଥିଲା । ଶ୍ରୀଅରବିନ୍ଦଙ୍କ The Human cycle ଗ୍ରନ୍ଥ ଅଧ୍ୟାପନାର ଦାୟିତ୍ୱରେ ଥାଆନ୍ତି ରବିଭାଇ । ଓଡ଼ିଶାର ବିଭିନ୍ନ କୋଣ ଅନୁକୋଣରୁ ଆସିଥିବା ଭାଇଭଉଣୀ ଅଧ୍ୟୟନର ଆଲୋଚନାରେ ଅଂଶଗ୍ରହଣ କରୁଥାନ୍ତି । ପ୍ରଭାତ ସମୟରେ ରବୀନ୍ଦ୍ର ସଙ୍ଗୀତ ସହ ନିର୍ବାଚିତ ଅନ୍ୟ କେତେକ ସଙ୍ଗୀତ ବୋଲାହୁଏ ତା'ପରେ ଶ୍ରମ, ଅଧ୍ୟୟନ ଏହା ମଧ୍ୟରେ ରୋଷେଇ ନିମିତ୍ତ ପରସ୍ପର ମଧ୍ୟରେ କାର୍ଯ୍ୟର ବିଭାଗ ବଣ୍ଟନ ମଧ୍ୟ ହୋଇଥାଏ । ସନ୍ଧ୍ୟା ସମୟରେ ଅଧ୍ୟୟନ ହୋଇଥିବା ବିଷୟବସ୍ତୁ ନିର୍ବାଚିତ ହୋଇଥାଏ ମୁକ୍ତ ଭାବେ କହିବା ନିମିତ୍ତ । ଏସବୁ କାର୍ଯ୍ୟକ୍ରମର ପଶ୍ଚାତ୍‌ଭାଗରେ ଥିବା ଦର୍ଶନ ଅନୁଭବ କଲି । ମଣିଷର ଚିନ୍ତାଧାରା ଉନ୍ମୋଚିତ କରିବାରେ ସହାୟକ ଆବଶ୍ୟକ ପୁସ୍ତକମାନ ମଧ୍ୟ ଅନେକାଂଶରେ ଏହି ଶିବିରରୁ ମିଳିଥାଏ । ସୁହୃଦ୍ ପରିବାରର ଆଧ୍ୟାତ୍ମିକ କାର୍ଯ୍ୟକ୍ରମ ୧୦ ଦିନ ଲେଖାଏଁ ବର୍ଷରେ ଦୁଇଥର ଅନୁଷ୍ଠିତ ହୋଇଥାଏ ସତ, କିନ୍ତୁ ଜୀବନ ବଞ୍ଚିବା କ୍ଷେତ୍ରରେ, ଚେତନାର ଅଗ୍ରଗତି ନିମିତ୍ତ ଅନେକ ଅନେକ ବନ୍ଧନ ତୁଟିବାରେ ଏହା ଖୁବ୍ ପ୍ରଚ୍ଛନ୍ନ ଭାବେ ପ୍ରଭାବ ପକାଇଥାଏ । ଜ୍ଞାନ, ଭକ୍ତି ଓ କର୍ମର ତ୍ରିବେଣୀ ସଙ୍ଗମ ହୋଇଥାଏ, ସବୁଥିରେ ଥାଏ ଆନ୍ତରିକତାପୂର୍ଣ୍ଣ ଆନନ୍ଦ ହିଁ ଆନନ୍ଦ । ବ୍ୟକ୍ତି ଏକା ଏକା ବାଟ ଚାଲିବା ଖୁବ୍ ସହଜ, କିନ୍ତୁ ସମୂହ ସହ ନିଜକୁ ଏକାତ୍ମ କରିବା ସାଧନାର କଥା । ସମୂହ ସହ ଏକୀଭୂତ କରିବାର ଅଭୀପ୍‌ସାଟି ଯୋଗୁଁ ହିଁ ୧୯୯୫ ମସିହାଠାରୁ ଏ ପର୍ଯ୍ୟନ୍ତ ଶିବିର ମୋତେ କେବଳ ପୁରୁଣା ଲାଗିନାହିଁ । ପ୍ରତି ଶିବିର ମୋ ପାଇଁ ନୂଆ ରୂପେ ଅନୁଭୂତ ହେଉଛି ଏବଂ କହିବା ବାହୁଲ୍ୟ ଯେ ଚିତ୍ତଭାଇ ହିଁ ଏହି ଶିବିରର ମୂଳ ପ୍ରେରଣା ଦାତା ।

ଚିତ୍ତଭାଇଙ୍କ ରଚିତ ଶତାଧିକ ସାହିତ୍ୟ ପୁସ୍ତକରେ ଓଡ଼ିଆ ସାହିତ୍ୟ ଋଦ୍ଧିମନ୍ତ । ନିରବଚ୍ଛିନ୍ନ ଭାବେ ଲେଖିଚାଲିଥିବା ପ୍ରାବନ୍ଧିକ ଚିତ୍ତରଂଜନ ଦାସଙ୍କ ସାହିତ୍ୟ ମଧ୍ୟକୁ ପ୍ରବେଶ କଲେ ତାଙ୍କର ସମୁଦାୟ ପରିଚୟ ପାଇହେବ । କିୟଦ୍ ମାତ୍ରାରେ ତାଙ୍କ ସାହିତ୍ୟ ଅଧ୍ୟୟନରୁ ଅନୁଭୂତ ହୋଇଛି ଯେ ତାଙ୍କ ରଚିତ ସାହିତ୍ୟ ଅନ୍ତର ଉନ୍ମୋଚନର ସହାୟକ । 'ଜୀବନ ବିଦ୍ୟାଳୟ', 'ରୋହିତର ଡାଏରୀ',

'ଶିଳା ଓ ଶାଳଗ୍ରାମ', 'ସମ୍ପାଦକର ସ୍ତମ୍ଭ', 'ଅନାବନା ରଚନା' ଇତ୍ୟାଦି କହିବୁ ମୁଁ ଛାତ୍ରଛାତ୍ରୀମାନଙ୍କ ସହିତ ପୁସ୍ତକ ପାଠ ପରେ ସେମାନଙ୍କର ଲେଖା ସଂପର୍କିତ ମତାମତ ମଧ ଶୁଣିଛି । ଏହା ମୋ ପାଇଁ ବାସ୍ତବିକ୍ ଖୁବ୍ ଆନନ୍ଦଦାୟକ ହୋଇଉଠିଛି ।

ମୋର ଜଣେ ଶିକ୍ଷକ ଭାବେ ଚିତ୍ତଭାଇଙ୍କୁ ଶିକ୍ଷା, ଗବେଷଣା, ଶିକ୍ଷକତା ଓ ବ୍ୟକ୍ତିଗତ ଜୀବନ ସମସ୍ୟା ସମ୍ପର୍କିତ ବିଷୟ ନିର୍ବିଘ୍ନରେ ଲେଖି ଜଣାଇଥାଏ ଏବଂ ଆବଶ୍ୟକ ଉତ୍ତର ମଧ ପାଇଥାଏ । "ତମର ପ୍ରକୃତ ବନ୍ଧୁ ତମ ନିଜ ଭିତରେ ଅଛନ୍ତି"- ଚିଠିରେ ଲେଖିଥିବା ଚିତ୍ତଭାଇଙ୍କ ବାକ୍ୟଟି ମୋର ବାରବାର ସ୍ମରଣରେ ଆସେ । ଚିତ୍ତଭାଇଙ୍କ ପୂର୍ଣ୍ଣ ପରିଚୟ ମୁଁ ଏଯାଏ ପାଇନି । ତାଙ୍କୁ ଅଧିକରୁ ଅଧିକ ଜାଣିବା ନିମିତ୍ତ ମୁଁ ମୋର ପ୍ରୟାସ ଅବ୍ୟାହତ ରଖିଛି ।

ଡକ୍ଟର ସବିତା ଜେନା
*ଶିକ୍ଷୟିତ୍ରୀ ରୁଦ୍ରଚରଣ ଉଚ୍ଚବିଦ୍ୟାଳୟ*
*ସୁଜନପୁର, ଯାଜପୁର*

# ମାନବବାଦୀ ସାରସ୍ୱତ ସାଧକ ଚିତ୍ତରଂଜନ

ଅଧାପକ ଚିତ୍ତରଂଜନରୁ ଉତ୍କଳଶ୍ରୀ ଚିତ୍ତରଂଜନ ଦାସ - ଯିଏ ଜଣେ ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ, ଅନୁବାଦକ, ସମାଲୋଚକ, ଶିକ୍ଷାବିତ୍ ତଥା ସ୍ୱାଧୀନତା ସଂଗ୍ରାମର ମହାରଥୀ ଭାବେ ଜଣାଶୁଣା ଓ ପରିଚିତ । ଏଇ ଜଣାଶୁଣାରେ ଓ ପରିଚିତିରେ ସେ ଏପରି ଏକ ବିସ୍ତୀର୍ଣ୍ଣ ବଳୟ ସୃଷ୍ଟି କରିଛନ୍ତି ଯେ ସର୍ବିଙ୍କ ଚିତ୍ତରେ ସେ ଚିତ୍ତଭାଇ । ଆପଣାର ଭାଇଟିଏ ପରି । ଆପଣାର ଲୋକଟିଏ ସେ । ନିଜ ମଧରେ ସଭିଙ୍କୁ ଭଲ ପାଉଥିବା ଆତ୍ମିକ ଚେତନା ସେ ।

ସବୁଥିରେ ଅନନ୍ୟ ସେ, ଅସାଧାରଣ ବି । ସାଧାରଣ ପରି ଲାଗନ୍ତି, ଚାଲିଚଳନ, ବେଶଭୂଷା ଅତ୍ୟନ୍ତ ନିରାଡମ୍ବର, ଆଚରଣ ଉଚ୍ଚାରଣର ପ୍ରକାରଭଙ୍ଗୀ କୌଣସି ରଙ୍ଗ ଢଙ୍ଗିଆ ନୁହେଁ । ହସ ହସ ପ୍ରବୃତ୍ତି, ସାଧାସିଧା ଆକୃତି, ଆଉ ଉଦାର ତଥା ଖୋଲା ପ୍ରକୃତିର ସେ । ଗାଉଁଲୀ, ମଫସଲି ପରି ମନେ ହେଲେ ବି ସେଇ ସେ ସାଧାରଣ ସଂସ୍ଥିତିରେ ସାରସ୍ୱତ ସାଧନାର ସ୍ୱୟଂସିଦ୍ଧ ସ୍ୱାକ୍ଷରଟିଏ ।

ସେଇ ସ୍ୱର୍ଣ୍ଣାଭ ସ୍ୱାକ୍ଷରଟି ଝଲସିଯାଏ- ଜନ୍ମ ମାଟି ବାଗଲପୁରରୁ ବନ୍ଦୀଶାଳା, ବନ୍ଦୀଶାଳାରୁ ବିଶ୍ୱଭାରତୀ, ବିଶ୍ୱଭାରତୀରୁ ବିଶ୍ୱ ଭ୍ରମଣ, ଡେନ୍‌ମାର୍କର କୃଷିକ୍ଷେତ୍ରରୁ

ଓଡ଼ିଶାର ଚମ୍ପଭିମୁଣ୍ଡା । ଆଉ ସ୍ୱିନୋବାଙ୍କ ଠାରୁ ଶ୍ରୀଅରବିନ୍ଦଙ୍କଯାଏ । ସତରେ ସେ ଜଣେ ବାସ୍ତବବାଦୀ ଅତନ୍ଦ୍ର ଯାତ୍ରୀଟିଏ । ସ୍ୱଭାବ ସୁଲଭ ଅନନ୍ୟ ବ୍ୟକ୍ତିତ୍ୱଟିଏ ଆଉ ମାନବିକ ଚେତନାର ପ୍ରମୂର୍ତ୍ତ ପ୍ରକାଶଟିଏ ।

ଏଇ ମାନବିକ ଚେତନାର ଚେନାଏ ହସ ଝରିପଡ଼ିଥିଲା ୧୯୨୩ ମସିହାର ଅକ୍ଟୋବର ୩ ତାରିଖରେ ଜଗତସିଂହପୁର ଜିଲ୍ଲାର ବାଗଲପୁର ଗାଁରେ ବାପା ଖୋସାଲିଚରଣ ଦାସ ଓ ମାତା ହାରାମଣି ଦେବୀଙ୍କ କୋଳ ଆଲୋକିତ କରି । ଗାଁ ମାଟିର ଶାନ୍ତ ପରିବେଶ ଓ କମନୀୟ ପ୍ରକୃତିରାଜିର ଭାବ ଉଦ୍ଦୀପକ ବାତାବରଣ ଶୈଶବ ଅବସ୍ଥାକୁ ଯଥେଷ୍ଟ ପ୍ରଭାବିତ କରିଥିଲା । ନିଜ ଗାଁର ପ୍ରାଥମିକ ଶିକ୍ଷା, ପୁନଙ୍ଗର ଉଚ୍ଚ ପ୍ରାଥମିକ ଓ କଟକ ରାଣୀହାଟ ମାଇନର ସ୍କୁଲର ଶିକ୍ଷାଡାଆଁ ଜୀବନର ଗତିପଥର ଏକ ମଡ୍ରେଲ ଭାବେ ଅନୁରଣିତ ହୋଇଥିଲା । ତାଙ୍କ କମନୀୟ ଜୀବନର ଛାତ୍ରାବସ୍ଥାରୁ ହିଁ ସେ ଜଣେ ସ୍ୱାଧୀନଚେତା ଓ ସ୍ୱେଚ୍ଛାଧୀନ ଛାତ୍ର ଭାବେ ଜଣାପଡ଼ିଥିଲେ । ଏଠାରେ ପ୍ରଖ୍ୟାତ ଲେଖକ ଗୋଲଡ୍‌ସ୍ମିଥ୍ (Goldsmith)ଙ୍କ ଉକ୍ତି ମନେ ପଡ଼େ : There is an unspeakable pleasure attending the life of a voluntary student. (ଜଣେ ସ୍ୱେଚ୍ଛାଧୀନ ଛାତ୍ର ଜୀବନରେ ଅକଥନୀୟ ଆନନ୍ଦ ଅନୁଭବ କରେ ।) ଏ କଥାର ଯଥାର୍ଥତା ପ୍ରତିପାଦିତ ହୋଇଛି ତାଙ୍କ ଜୀବନରେ ।

ଚିତ୍ତରଂଜନଙ୍କ ଶୈଶବ-ଜୀବନ ବାଗଲପୁର ଗାଁ ମାଟିର ସରସ ସୁନ୍ଦର ପରିବେଶରୁ ଅଭ୍ୟୁଦୟ ହୋଇଥିଲା । ସେ ଏ ଗାଁ ମାଟିର ମାଆକୋଳରେ ଓ ମାଆର ପଣତ ତଳେ ବଢ଼ିଲାବେଳେ ଗାଁର ସୁଯୋଗ୍ୟ ସନ୍ତାନ ସମାଜବାଦୀ ପ୍ରଜା ଆନ୍ଦୋଳନର ମହାନ୍ ରଥୀ, ସ୍ୱାଧୀନତା ଆନ୍ଦୋଳନର ପ୍ରଖ୍ୟାତ ଯୋଦ୍ଧା, ଗାନ୍ଧୀବାଦୀ ନେତା ତଥା ସର୍ବୋଦୟ କର୍ମୀ ଗୌରାଙ୍ଗଚରଣ ଦାସ ଶୈଶବକାଳରେ ବିଶି ଆଙ୍ଗୁଳି ଧରି ବାଟ ଚଲାଇ ଦେଶ ମାତୃକାର ସଚ୍ଚା ସେବକଟିଏ ହେବାକୁ ବାଟ କଢ଼ାଇ ନେଉଥିଲେ । ଏହା ଫଳରେ କି ସ୍ୱାଧୀନତା ସଂଗ୍ରାମ ପାଇଁ ଆଗଭର ହୋଇ ପ୍ରଚାର ପତ୍ର ନିଜେ ଲେଖି, ସଭା ସମିତିର ପ୍ରେରଣାଦାୟକ ଓଜସ୍ୱିନୀ ଭାଷଣଦେଇ ନିଜ ଜୀବନକୁ ଉତ୍ସର୍ଗକରି ସେ କାରାବରଣ କରିଥିଲେ । ନିଜ ଗ୍ରାମ ବାଗଲପୁରଠାରେ ଗୌରାଙ୍ଗବାବୁଙ୍କ ନେତୃତ୍ୱରେ ସାମିଲ ହୋଇ ଜାତି-ବର୍ଣ୍ଣ-ଧର୍ମ ମଧ୍ୟରେ ଥିବା ଘୃଣ୍ୟ ପ୍ରଥା ଓ ସଂକୀର୍ଣ୍ଣ ଭାବକୁ ଛିନ୍ନ କରି ମନ୍ଦିର ମଧ୍ୟରେ ହରିଜନ ପ୍ରବେଶ କରାଇଥିଲେ, ଯାହାକି ଓଡ଼ିଶାରେ ସର୍ବ ପ୍ରଥମ ଘଟଣା । ଏଇ ସମୟରେ କବିତା ଲେଖି ଓ ତାହାକୁ ଗାନ କରି ଜାତୀୟତାର ଜାଗରଣ ସୃଷ୍ଟି କରିପାରିଥିଲେ ଜନମାନସରେ ।

ମଧ୍ୟ ଇଂରାଜୀ ଶିକ୍ଷା ସମାପ୍ତ ପରେ ରେଭେନ୍ସା କଲିଜିଏଟ୍‌ରେ ମାଟ୍ରିକ ପଢ଼ିଲେ । ଏଇ ସମୟରେ 'ମହାତ୍ମା ସକ୍ରେଟିସ୍' ଶିରୋନାମାରେ ଏକ ପ୍ରବନ୍ଧ ସ୍କୁଲ ପତ୍ରିକା 'ଛାତ୍ରବଂଧୁ'ରେ ପ୍ରକାଶିତ ହେଲା । ଏହି ଲେଖା ସର୍ବପ୍ରଥମ ହେଲେ ବି ପ୍ରତିଶ୍ରୁତି ପୂର୍ଣ୍ଣ ପ୍ରତିଭାଦୀପ୍ତ ଜୀବନର ଜ୍ୱଳନ୍ତ ଏକ ଦୀପସ୍ତମ୍ଭ ସଦୃଶ ।

ମାଟ୍ରିକ ପରେ ୧୯୪୧ ମସିହାର ରେଭେନ୍ସା କଲେଜରେ ପଢୁଥିବା ସମୟରେ ଗାନ୍ଧୀଜୀଙ୍କ 'ଭାରତଛାଡ଼' ଆନ୍ଦୋଳନରେ ଲମ୍ଫଦେଇ ୧୯୪୨ରୁ ୧୯୪୪ ପର୍ଯ୍ୟନ୍ତ କଟକ ଜେଲରେ କାରାବାସ ଭୋଗିଥିଲେ । ଏହି ସମୟରେ ପ୍ରଚୁର ବହି ପଢ଼ିବାର ସୁଯୋଗ ପାଇ ସାରସ୍ୱତ ସାଧନାକୁ ଜୀବନର ବ୍ରତ କରିଥିଲେ । ଏହି ବହି ପଢ଼ାରେ ଜ୍ଞାନର ବିସ୍ତୀର୍ଣ୍ଣ ବଳୟ ମଧ୍ୟରେ ନିଜକୁ ହଜାଇ ଦେଇ ଆଉ କଲେଜକୁ ନ ଫେରି ସେ ମାଡ଼ି ଯାଇଛନ୍ତି ବିଶ୍ୱଭାରତୀ ''ଶାନ୍ତିନିକେତନ''କୁ ଲକ୍ଷ୍ୟକରି, ସେଇଠି ସେ ଖୋଜିଛନ୍ତି ଜ୍ଞାନର ଆଲୋକକୁ ।

ଶାନ୍ତିନିକେତନର ଗବାକ୍ଷ ମଧ୍ୟ ଦେଇ 'ବିଶ୍ୱନିକେତନ' ପ୍ରତି ଆପଣାର ଦୃଷ୍ଟିର ବଳୟକୁ ସେ ଯଥା ସମ୍ଭବ ପ୍ରସାରିତ କରିଛନ୍ତି । ବିଶ୍ୱ ମାନବୀୟ ଦୃଷ୍ଟିକୋଣରେ ଝଲସି ଯାଉଛନ୍ତି ବିଶିଷ୍ଟ ଦାର୍ଶନିକ ବିନୋବାଙ୍କ ଠାରୁ ବିଶ୍ୱ ବିଦିତ ରବୀନ୍ଦ୍ରନାଥ, ସନ୍ଥକବି ଭୀମଭୋଇ, ବଳରାମ ଦାସ ଓ ଦେବପ୍ରତିମ ଶ୍ରୀଅରବିନ୍ଦ ଇତ୍ୟାଦିଙ୍କ ପର୍ଯ୍ୟନ୍ତ । ସାହିତ୍ୟ ଆଉ  ଦର୍ଶନ ମଧ୍ୟରେ ମହାମାନବୀୟ ପ୍ରସଙ୍ଗକୁ ଉପଜୀବ୍ୟକରି ଚାଲିଛି ତାଙ୍କର ଅଧ୍ୟୟନ ଓ ଗବେଷଣା ।

୧୯୫୦ ମସିହାରେ ବିଶ୍ୱଭାରତୀରୁ ଯାଇ ଡେନମାର୍କର ରାଜଧାନୀ କୋପେନ୍‌ହେଗେନ୍‌ସ୍ଥିତ ବିଶ୍ୱବିଦ୍ୟାଳୟର 'ମନୋବିଜ୍ଞାନ', ସମାଜ ବିଜ୍ଞାନ ଓ ସାଂସ୍କୃତିକ ନୃତତ୍ତ୍ୱ ବିଷୟରେ ସେ ଅଧ୍ୟୟନ କଲେ । ଏହି ଅଧ୍ୟୟନର ବିଷୟବସ୍ତୁରେ ମଣିଷ ଓ ତା'ର ଜୀବନ ସଂପର୍କରେ ଅଧିକ ଜାଣିବାକୁ ପାଇଲେ । ସେ ୧୯୫୫ ମସିହାରେ ନିଜ ଭିଟାମାଟିକୁ ଫେରି ଅନୁଗୁଳ ଜିଲ୍ଲାର ଚମ୍ପତିମୁଣ୍ଡା ଠାରେ ଭିନ୍ନ ଏକ ଧରଣର ବିଦ୍ୟାଳୟ ସ୍ଥାପନ କଲେ । ଯାହାର ନାମ ଦେଲେ 'ଜୀବନ ବିଦ୍ୟାଳୟ'' । ଏହି ବିଦ୍ୟାଳୟ ହିଁ ଶିକ୍ଷାଗ୍ରହଣ ସାଥେ ସାଥେ ଜୀବନ କିପରି ସ୍ୱାବଲମ୍ବୀ ହେବ, ବଞ୍ଚିବାର ପଥ କିପରି ସୁଗମ ହେବ ତା' ଉପରେ ଗୁରୁତ୍ୱ ଦେଲା । ସ୍ୱାଧୀନ ଚେତା ହୋଇ ମଣିଷ ବଞ୍ଚିବେ- ଏହି ରୀତିରେ ଶିକ୍ଷା ଦିଆଗଲା, ଜୀବନ ଓ ସୃଜନଧର୍ମୀ ଶିକ୍ଷାର ପ୍ରୟୋଗ କ୍ଷେତ୍ରରେ ଏହି ବିଦ୍ୟାଳୟ ସମଗ୍ର ରାଜ୍ୟରେ ନୂତନ ଦିଗ୍‌ଦର୍ଶନ ନିମିତ୍ତ ଆଲୋକ ସ୍ତମ୍ଭଟିଏ ଭାବରେ ଉଦ୍‌ଭାସିତ ହୋଇଉଠିଲା ।

ଏଠାରୁ ସେ ୧୯୫୯ ମସିହାରେ ଆଗ୍ରା ନିକଟସ୍ଥ ଗ୍ରାମୀଣ ଉଚ୍ଚଶିକ୍ଷା

ଅନୁଷ୍ଠାନରେ ଅଧ୍ୟାପକ ଭାବେ, ୧୯୬୨ରେ ପଶ୍ଚିମ ଜର୍ମାନୀ ଅନ୍ତର୍ଗତ 'ସେନେନ୍‌ବର୍ଗ' ଆନ୍ତର୍ଜାତିକ ଶିକ୍ଷାକେନ୍ଦ୍ରରେ ଅଧ୍ୟାପକ ରୂପେ, ତା'ପରେ ସ୍ୱିଜରଲ୍ୟାଣ୍ଡର 'ଟ୍ରାଗେନ'ଠାରେ ଶିକ୍ଷକ ଭାବେ କାର୍ଯ୍ୟ ସମ୍ପାଦନ ବେଳେ ନିଜର ଶୈକ୍ଷିକ ବ୍ୟକ୍ତିତ୍ୱକୁ ମହା ମାନବିକତାରେ ପ୍ରତିଫଳିତ କରି ଛାତ୍ର ସମାଜକୁ ଦିଗ୍‌ଦର୍ଶନ ଦେଇଛନ୍ତି । ଆନନ୍ଦ ବାଣ୍ଟିଛନ୍ତି ଓ ମଣିଷ ପଣିଆର ନିଛକତାରେ ବେଶ୍ କିଛି ହୃଦୟଙ୍ଗମ ମଧ୍ୟ କରିଛନ୍ତି । ଏହିପରି ବିଶ୍ୱ ପରିକ୍ରମା ଭିତ୍ତିରେ ଅନେକ କିଛି ଅଭିଜ୍ଞତାକୁ ପୁଞ୍ଜି କରି ନିଜ ସୃଷ୍ଟିର ପ୍ରତିଟି ପଦେ ପଦେ ମାନବିକ ସଂପ୍ରୀତିର ଉଦ୍‌ଗୀରଣ ଘଟାଇଛନ୍ତି, ମାନବବାଦର ଜୟଗାନ କରିଛନ୍ତି । ସମୂହ ଚେତନାକୁ ଦୀପ୍ତିମନ୍ତ କରିବା ନିମିତ୍ତ ସତତ ଏକାନ୍ତ ପଥିକ ହୋଇ ସାରସ୍ୱତ ଯାତ୍ରାରେ ନିରଳସ-ନିରବଚ୍ଛିନ୍ନ ଯାତ୍ରୀଟିଏ ହୋଇଯାଇଛନ୍ତି । ତାଙ୍କ ପ୍ରତ୍ୟେକଟି ରଚନାରେ ଘଟିଛି ପ୍ରଜ୍ଞା ମାନସିକତାର ଦୀପ୍ତ ପ୍ରକାଶ । ପ୍ରତ୍ୟେକଟିରେ ତାଙ୍କର ମାନବୀୟ ଦୃଷ୍ଟିକୋଣ ଓ ଜଗତକଲ୍ୟାଣର ଚିର ଓଁକାର ଧ୍ୱନି ନିନାଦିତ । ଭାଷା ବିନ୍ୟାସର ଆଡ଼ମ୍ବରକୁ ପ୍ରାଧାନ୍ୟ ନ ଦେଇ ମଣିଷ ହୃଦୟକୁ ଆକର୍ଷିଲା ପରି ସରଳତାର ଶାବ୍ଦିକ ପରିପ୍ରକାଶ ମାଧ୍ୟମରେ ସେ ସତେ ଯେପରି ମାୟାଜାଲ ବିଛେଇ ଦେଇଛନ୍ତି ! ସେଥିରେ ମଣିଷର ସାମାଜିକ, ରାଜନୈତିକ, ଦାର୍ଶନିକ, ସାଂସ୍କୃତିକ, ଧର୍ମୀୟ, ଜାତୀୟ ଓ ଜାଗତିକ ସକଳ ସମସ୍ୟା ସମ୍ପର୍କରେ ଆପଣାର ବିସ୍ତାରିତ ଚିନ୍ତା ଚୈତନରେ ଆଲୋକପାତ କରିଛନ୍ତି । ସେ ତାଙ୍କ ସାହିତ୍ୟ ସୃଷ୍ଟିରେ କୌଣସି ମତବାଦରେ ଭାସି ନଯାଇ ଆପଣାର ସ୍ୱତନ୍ତ୍ର ଚିନ୍ତାଧାରାକୁ ସମ୍ବଳ କରି ପାହାଚ ପରେ ପାହାଚ ଅତିକ୍ରମ କରି ଚାଲିଛନ୍ତି ଏଯାବତ୍ । ତାହାରି ମଧ୍ୟରେ ଇତି ରାଜ୍ୟ ଓ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର, ଶାରଳା ପୁରସ୍କାର, ବିଷୁବ ପୁରସ୍କାର, ସାହିତ୍ୟ ଭାରତୀ ସମ୍ମାନ ସହ ଉତ୍କଳଶ୍ରୀ ଉପାଧି ମଣ୍ଡିତ ମଧ୍ୟ ହୋଇଛନ୍ତି ।

କେଉଁଠି କେବେ ସେ ଥକି ପଡ଼ିନାହାନ୍ତି । ଭାଙ୍ଗିଯାଇ ନାହାନ୍ତି । ବରଂ ଜୀବନର ଘାତ ପ୍ରତିଘାତରେ ଇସ୍ପାତ ଭଳି ଦୃଢ଼ ପୁରୁଷାକାରକୁ ପ୍ରତିଷ୍ଠିତ କରି ସାରସ୍ୱତ ସାଧନା ମଧ୍ୟରେ ଆଗେଇ ଆଗେଇ ଚାଲିଛନ୍ତି । ପରିଣତ ବୟସରେ ବି ତାଙ୍କ ଲେଖନୀ ଅବାରିତ ଗତିରେ ଚାଲିଛି । ଏଇ ଲେଖନୀ ଚାଳନାରେ ମଣିଷ ଜୀବନର ବାସ୍ତବତାଗୁଡ଼ିକୁ ରୂପରେଖ ଦେଇ ମାନବିକ ମୂଲ୍ୟବୋଧକୁ ପ୍ରତିଷ୍ଠା କରିବାପାଇଁ ଚେତନଶୀଳ ହୋଇ ସେ ସତତ ଆହ୍ୱାନ ଦେଇଛନ୍ତି; ଏଇ ମଣିଷ ସାଂଗ ଉପରେ ଦୃଷ୍ଟି ନିକ୍ଷେପ କରିଛନ୍ତି । ସଂସ୍କୃତି କହିଲେ ସର୍ବପ୍ରଥମ ଓ ସର୍ବଶେଷରେ ମଣିଷକୁ ବୁଝାଏ । ମଣିଷ ସହ ମଣିଷକୁ ଯୋଡ଼ି ପାରୁଥିବା ଏକ ଅନୁଭୂତ ପ୍ରକ୍ରିୟାରେ ସଂହତି ସୃଷ୍ଟି ହୁଏ ଓ ଏଇ ସଂହତିରେ ଆପଣାର ଅର୍ନ୍ତନିହିତ ଶକ୍ତିର ବିନିମୟ ଆପେ ଆପେ ହୋଇଯାଏ ।

ତାଙ୍କ ମତରେ- ''ସଂସ୍କୃତି ଏକ ସଂପତ୍ତି ନୁହେଁ, ସଂସ୍କୃତି ଏକ ଯୋଗ୍ୟତା, ସଂସ୍କୃତି ଏକ ମଣ୍ଡନ ନୁହେଁ, ସଂସ୍କୃତି ହେଉଛି ଜୀବନ, ଯେଉଁଥିରେ ବି ବଞ୍ଚି ରହିବାର ଏକ ଜଳବାୟୁ ନିୟନ୍ତ୍ରିତ ହୋଇଥାଏ ।''

ଶ୍ରୀ ଦାସଙ୍କ ଲେଖାରେ ସମାଜ ଓ ଜୀବନର କଠୋର ବାସ୍ତବତା ସୃଜନଶୀଳ ଧର୍ମ ଦେଇ ଆଗେଇ ଆଗେଇ ଯାଏ । ବିତ୍ତଶାଳୀ କ୍ଷମତାସଂପନ୍ନ ବ୍ୟକ୍ତିମାନେ ଏବେ ସମାଜର ନିୟନ୍ତକ । ସକଳ ସୁଖ ସ୍ୱାଚ୍ଛନ୍ଦ୍ୟ କେବଳ ସେଇମାନଙ୍କ ଭାଗ୍ୟରେ । ମାତ୍ର ସବୁ ମଣିଷଙ୍କ ପାଇଁ ଏକ ସଂପନ୍ନ ଓ ସୁନ୍ଦର ପୃଥିବୀର ପ୍ରବେଶ ଦ୍ୱାର ଖୋଲିଦେବାପାଇଁ ଶ୍ରୀ ଦାସଙ୍କର ପ୍ରବନ୍ଧଗୁଡ଼ିକ ବୈପ୍ଲବିକ ଜାଗରଣ ସୃଷ୍ଟି କରିଛନ୍ତି । କୌଣସି ଗୋଷ୍ଠୀ ପ୍ରତି ତୋଷାମଦପୂର୍ଣ୍ଣ ସାଲିସ ମନୋଭାବ ନ ରଖି ସର୍ବାନ୍ତଃ କରଣରେ ସେ ଚେତନାର ମଞ୍ଜି ବୁଣି ବୁଣି ଯାଇଛନ୍ତି । ଏ ମଞ୍ଜିକୁ ଠିକ୍ ମାଟିରେ ଉତୁରାଇବା ପରିପ୍ରେକ୍ଷୀରେ ଅଙ୍ଗୀକାରବଦ୍ଧ ହେବା ପାଇଁ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି ।

ପ୍ରାବନ୍ଧିକ ଚିତ୍ତରଂଜନଙ୍କର ପ୍ରାୟ ସମସ୍ତ ସାରସ୍ୱତ କୃତିରେ ମଣିଷର ଅଭ୍ୟୁଦୟ କଥା ଉଦ୍‌ଘୋଷିତ । ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା ପାଇଁ ସେ ବ୍ୟାକୁଳ । ସେଇ ମାନବିକ ମୂଲ୍ୟବୋଧ କେବେ ସିଆଣିଆଙ୍କର ଚାମଚା ହେବନାହିଁ, କ୍ଷମତାସୀନ ହୋଇ ଅଯଥା ଯଶ ଲିପ୍‌ସାରେ ବ୍ୟସ୍ତ ରହିବନି; ଶସ୍ତା-ସୁନ୍ଦର-ରାଜନୀତିରେ ପଶି ହୀନସ୍ତା ହେବନି, କଜଳପାତିଆ ଭଦ୍ରଲୋକଙ୍କ କଥାକୁ ଆଶ୍ରାକରି ଅଲଗା ଉଜ୍ଜ୍ୱଳ ହୋଇ ଜଳଜଳ ଜଳିଉଠିବନି ବରଂ ନିର୍ଭୀକ ବ୍ୟକ୍ତିର ପରିପ୍ରକାଶ ପରିପ୍ରେକ୍ଷୀରେ ପରିପୂର୍ଣ୍ଣ ଅନୁଭବ ଓ ଅନୁରାଗକୁ ଭିତ୍ତିକରି ବାଟ କଢ଼େଇ ନେବ ସବୁ ମଣିଷଙ୍କର ଉନ୍ନୟନ ଆଡ଼କୁ ।

ନିକୁଞ୍ଜବିହାରୀ ଭଞ୍ଜ,
*ଶିକ୍ଷକ, ବାଗଲପୁର, ଜଗତ୍‌ସିଂହପୁର*

# ସୁହୃଦଂ ସର୍ବଭୂତାନାଂ

୧୯୮୬ରେ ମୁଁ ମ୍ୟାଟ୍ରିକ୍ ପାଶ୍ କଲି । ତା' ପୂର୍ବରୁ ମୁଁ ''ପ୍ରଗତି ମାତୃକେନ୍ଦ୍ର'' ଚାନ୍ଦପଲା ପାଠଚକ୍ରକୁ ଯାଉଥିଲି । ପାଠଚକ୍ରରେ ମୋତେ ପଢ଼ାପଢ଼ି କିମ୍ବା ଆଲୋଚନା ଭଲ ଲାଗୁନଥିଲା । ଖୁଡ଼ି ଓ କକେଇଙ୍କର ଶ୍ରଦ୍ଧା, ନାନୀର ଭଲ ପାଇବା ଏବଂ ବାବୁନି, ନିଲି ଓ ଜଲିର ସ୍ନେହ ମୋତେ ସେଠିକୁ ଟାଣି ନେଉଥିଲା । ନାନୀ, ବାବୁନି, ଜଲି ଓ ନିଲି ଏମାନଙ୍କ ସହ ମୋର କୌଣସି ପ୍ରଭେଦ ନଥିଲା । ଏପର୍ଯ୍ୟନ୍ତ

ମଧ୍ୟ ସେମାନେ ଓ ମୁଁ ଅଲଗା ବୋଲି ମୋର କେବେ ଅନୁଭବ ହୋଇନାହିଁ । ମୋର ମାମୁଙ୍କର ଗାଆଁରେ କଙ୍କେଇଙ୍କର ଗାଆଁ । ମୋର ମଝିଆଁ ଭାଇ ମାମୁଘରେ ରହି ସେଇ ପାଖ ହାଇସ୍କୁଲରେ ପଢୁଥିଲେ । ମୁଁ ଅଧିକାଂଶ ସମୟ ଆମେ ସମସ୍ତେ ମାମୁଘରକୁ ଦିନେ ଦୁଇ ଦିନରେ ଥରେ ଲେଖାଏଁ ଯାଉଥିଲୁ । ରମାଭାଇ (ମଝିଆଁ ଭାଇ) ମାମୁ ଘରେ ଥିବା ବେଳେ ପାଠଚକ୍ରକୁ ଯାଉଥିଲେ । ମାମୁଙ୍କ ପୁଅ ଓ ଝିଅମାନେ ସମସ୍ତେ ଭଲ ପଢୁଥିଲେ ଏବଂ ପାଠଚକ୍ରକୁ ଯାଉଥିଲେ । ରମାଭାଇଙ୍କ ସାଙ୍ଗରେ ଦିନେ ମୁଁ ପାଠଚକ୍ରକୁ ଯାଇଥିଲି । ସେଇଦିନ ଠାରୁ ପାଠଚକ୍ରର ବଳୟ ଭିତରକୁ ଆସିଲି । ପିଲାଦିନେ ମୁଁ ଖୁବ୍ ହତାଶ ହୋଇ ପଡୁଥିଲି । ମୋତେ ସବୁବେଳେ ଭୟ ଲାଗୁଥିଲା । ମୋ ଭିତରଟା ଯେପରି ଖାଁ ଖାଁ କରୁଥିଲା । ମୁଁ ଭଲ ପଢୁ ନଥିଲି, ତେଣୁ ସମସ୍ତଙ୍କ ଠାରୁ ନିଜକୁ ଛୋଟ ମନେ କରୁଥିଲି । ମୋ ଭିତରେ କିଛି ଅସନ୍ତୋଷ ରହୁଥିଲା ଏବଂ ମଝିରେ ମଝିରେ ମୁଁ ଚୁପ୍ ଚାପ୍ ନିରୋଳା ଜାଗାରେ ବସି ଗାଁ, ଘର, ବାପା, ବୋଉ, ବିଲ, ତାଳଗଛ, ପୋଖରୀ ଇତ୍ୟାଦିକୁ ମନେ ପକାଉଥିଲି ଏବଂ କାନ୍ଦି ପକାଉଥିଲି । ବହୁ ସମୟରେ ମୁଁ ନିଜକୁ ଦୂରେଇ ରଖୁଥିଲି । ମିନା ଦେଇ ହେଉଛି ମୋର ମାମୁ ଝିଅ । ସିଏ ମୋତେ ଖୁବ୍ ଭଲ ପାଉଥିଲା । ତା'ର କଥାବାର୍ତ୍ତା ମୋତେ ଖୁବ୍ ଭଲ ଲାଗୁଥିଲା । ପ୍ରତି ରବିବାର ଦିନ ପାଠଚକ୍ରକୁ ଯେତେବେଳେ ସେମାନେ ଯାଉଥିଲେ ମୁଁ ମଧ୍ୟ ସେମାନଙ୍କ ସାଙ୍ଗରେ ଯାଉଥିଲି । ଶ୍ରୀମା ଶ୍ରୀଅରବିନ୍ଦଙ୍କର ବଡ଼ ବଡ଼ ଫଟୋ କଙ୍କେଇଙ୍କର ଘରେ ଥିଲା ଏବଂ ତାଟିଆରେ ପାଣି ଦେଇ ଫୁଲ ସଜା ହେଉଥିଲା ଓ ଧୂପର ବାସ୍ନା ଖୁବ୍ ସୁନ୍ଦର ଲାଗୁଥିଲା । ନାନୀ ସେଇ ପାଠଚକ୍ରରେ ମୋ ପାଖରେ ବସିଲା ଏବଂ କେତେକଥା କହିଲା । ଜଲି ଓ ନିଲି ଗୀତ ଗାଇଲେ । ସେଦିନ କଙ୍କେଇ ଘରକୁ ଆସିଥିଲେ- ରବିବାର ସରକାରୀ ଛୁଟି ଥିବାରୁ । ମାତୃଭବନରେ ଯେଉଁ ପ୍ରୋଗ୍ରାମ ସବୁ ହୁଏ ସେଇ ଉପରେ ଆଲୋଚନା ହେଉଥିଲା । ମାଆଙ୍କ ବିଷୟରେ ଏବଂ କେତେକ ଆଲୋଚନା ବିଷୟରେ କଥା ହେଉ ହେଉ କଙ୍କେଇ ମନୋଜ ଦାସ ଏବଂ ଚିତ୍ତରଂଜନ ଦାସଙ୍କ ବିଷୟରେ କହିଲେ । ଚିତ୍ତରଂଜନ ଦାସଙ୍କର ଆଲୋଚନା କଙ୍କେଇଙ୍କୁ ଖୁବ୍ ଭଲ ଲାଗିଥିଲା । ତାଙ୍କଠାରୁ ମୁଁ ଚିତ୍ତରଂଜନଙ୍କ ବିଷୟରେ ଜାଣିଲି । କଙ୍କେଇ ସେଦିନ ଚିତ୍ତଭାଇଙ୍କ କେତେଖଣ୍ଡ ବହି ଉପରେ କହିଥିବାର ମୋର ମନେ ପଡୁଛି ।

ମ୍ୟାଟ୍ରିକ୍ ପାଶ୍ କଲାପରେ ଆଇ.ଟି.ଆଇ ଟ୍ରେନିଂ ନେବାକୁ ମୁଁ କଟକ ଆସିଲି । କଟକରେ ସେତେବେଳେ ଅଶୋକ ଭାଇ ରହୁଥିଲେ । ମୁଁ ଚାଲି ଚାଲି କେନାଲ୍ କୂଳେ କୂଳେ ଟ୍ରେନିଂକୁ ଗଲାବେଳେ ମାତୃଭବନକୁ ଦେଖୁଥିଲି । ଦିନେ ରମାଭାଇ ରାଉରକେଲାରୁ ଆସିଥିଲେ । ଅଶୋକ ଭାଇ ସେତେବେଳେ ତାଉଳିଆ ଗଡ଼ରେ

ରହୁଥିଲେ । ରବିବାର ଦିନ ମୁଁ, ମୋ ଭାଇ ଓ ଅଶୋକ ଭାଇ ମାତୃଭବନ ଗଲୁ । ସମାଧିକୁ ମୁହଁ କରି ଠିଆ ହେଲେ ଡାହାଣ ପାଖରେ ଯେଉଁ ଘରଟି ଅଛି ସେଥିରେ କେତେଜଣ କ'ଣ ସବୁ କରୁଥିଲେ । ସମାଧିରେ ପ୍ରଣାମ କରି ଆସିଲା ପରେ ଅଶୋକ ଭାଇ କହିଲେ, ଏଇଠି ଚିତ୍ତଭାଇ ରବିବାର ୪ରୁ ୬ଟା ଯାଏ କ୍ଲାସ କରନ୍ତି ଏବଂ ଏବେ କ୍ଲାସ ଚାଲିଛି । ସେଦିନ ଶୀଘ୍ର ପଳେଇ ଆସିଲୁ । ଆଉ ଥରେ ରବିବାର ଦିନ ଅଶୋକ ଭାଇଙ୍କ ଘରକୁ ବୁଲି ଆସିଥିଲି । ଅଶୋକ ଭାଇ ସେତେବେଳେ ମାତୃଭବନ ବାହାରିଥିଲେ ଚିତ୍ତଭାଇଙ୍କ କ୍ଲାସ କରିବାକୁ । ମୁଁ ମଧ୍ୟ ତାଙ୍କ ସାଙ୍ଗରେ ଆସିଲି । ସମାଧିରେ ପ୍ରଣାମ କରି ଫେରିଲା ବେଳେ ଅଶୋକ ଭାଇ ପ୍ରସାଦ ଭାଇ (ବାବୁଲି ଭାଇ)ଙ୍କ ସହ କ'ଣ କଥା ହେଲେ ଏବଂ କୌଣସି ଏକ ଜରୁରୀ କାମରେ ଚାଲିଗଲେ । ସମାଧି ସିନା ଆସୁଥିଲି କିନ୍ତୁ ଭିତରଟା ମୋଟେ ଖୁସି ହେଉନଥିଲା । ପଇସା ପତ୍ରର ଅଭାବ ମୋତେ ଖୁବ୍ କଷ୍ଟ ଦେଉଥିଲା । ପେଟରେ ଭୋକ ମୋତେ ଅନ୍ୟମନସ୍କ କରି ରଖୁଥିଲା । ଧୋବ ଧୋବଳିଆ ମଣିଷମାନଙ୍କ ପ୍ରତି ମୋର ରାଗ ଆସୁଥିଲା । ଅଶୋକ ଭାଇ ଗଲାବେଳେ କହିଗଲେ କ୍ଲାସ କରିବାକୁ । ଦୁଆର ମୁହଁରେ ଠିଆ ହୋଇ ପଚାରିଲି- ''ଭିତରକୁ ଯାଇପାରେ କି ?'' ବିଦ୍ୟାଳୟରେ ଶିଖିଥିଲି- କୌଣସି ଘରକୁ ପଶିବା ବେଳେ ଅନୁମତି ନେବା ଦରକାର । ଜଣେ କହିଲେ, ''ପଚାରୁଛ କ'ଣ ଚାଲି ଆସୁନ ଏବଂ ବସି ଯାଉନ, ନିଜ ଘରକୁ ଆସିଲା ବେଳେ କ'ଣ ଅନୁମତି ନେବାକୁ ହୁଏ ?'' କଥାଟା ମୋତେ ତାଉଁକିନା ଲାଗିଲା । ଆମ ଘର ଓ ପାଠଚକ୍ରକୁ ଛାଡ଼ି ଅନ୍ୟମାନେ ଯେ ନିଜର ଏକଥା ଆଗରୁ ବୁଝିନଥିଲି । ତେଣୁ ମୁଁ ଅନ୍ୟମାନଙ୍କ ଉପରେ ରାଗୁଥିଲି ଓ ସନ୍ଦେହ କରୁଥିଲି । କଟକକୁ ଆସିଲାବେଳେ ଗାଁରେ ମୋତେ ଅଧିକାଂଶ କହିଥିଲେ, 'କଟକରେ ଛିଡ଼ାଛିଡ଼ା କଛାକାଟି ନିଅନ୍ତି ।'' ତେଣୁ ହୁସିଆର ରହିବା ଭଲ । ସେଦିନ କ୍ଲାସରେ କ'ଣ ସବୁ ପଢ଼ା ହେଉଥିଲା ବୁଝିନାହିଁ କିମ୍ବା ମନେ ନାହିଁ । ପାଖାପାଖି ୨୦ ଜଣ ଯାଇଥିଲେ କ୍ଲାସରେ । ମୋର କ୍ଲାସ୍ ସାରା କେବଳ ମନକୁ ଆସୁଥିଲା, ''ନିଜ ଘରକୁ ଆସିଲା ବେଳେ କ'ଣ ଅନୁମତି ନେବାକୁ ହୁଏ ?'' କ୍ଲାସ ସରିବାକୁ କିଛି ସମୟ ଅଛି ଅଶୋକ ଭାଇ ଆସିଲେ । କ୍ଲାସ ସରିଲା ପରେ ଅଶୋକ ଭାଇ ଚିତ୍ତଭାଇଙ୍କ ସହିତ କଥା ହେଲେ । ମୋତେ ମଧ୍ୟ ତାଙ୍କ ସହିତ ପରିଚିତ କରାଇଲେ । ଯେଉଁ ଲୋକ ଏତେ ବହି ଲେଖିଛନ୍ତି, ଏତେ ସୁନ୍ଦର ଆଲୋଚନା କରନ୍ତି ସିଏ, ପୁଣି ଏତେ ବଢ଼ିଆ ଭାବରେ ମିଶିପାରନ୍ତି ଏହି କଥା ରାତି ସାରା ଭାବିଛି । ତା'ପରେ ରବିବାରକୁ ପୁଣି ଟାଣି ହୋଇ ଚାଲିଗଲି । ଆଲୋଚନା କ'ଣ ହେଉଥିଲା ସେଥିରେ ମୋର କିଛି ଭାଗ ନ ଥିଲା । କେବଳ ଚିତ୍ତଭାଇଙ୍କ ପଛପଟ ଟୁଲରେ ଯାଇ

ବସୁଥିଲି । ଖରାରେ ତାଳି ତାଳି ଯାଇ ବସିଗଲା ବେଳେ ଚିତ୍ତଭାଇ କେତେ ଆଦରରେ ଆଉଁସି ଦେଉଥିଲେ । ଯେତେ ଥର ଯାଇଛି ସବୁଥର ମୁଁ ପହଞ୍ଚିବା ପୂର୍ବରୁ ଚିତ୍ତଭାଇ ଏବଂ ଆଉ କେତେଜଣ ଭାଇ ବସିଥାଆନ୍ତି । ଯାହା ସବୁ ପଢ଼ାଯାଏ ତାହାକୁ ଆସି ମୁଁ ଖାତାରେ ଟିପି ଦେଉଥିଲି ଏବଂ ଆଠଦିନ ଯାଏ ସେଇଆକୁ ପଢୁଥିଲି । ମଝିରେ ମଝିରେ ଚିତ୍ତଭାଇ ଏମିତି ସବୁ କଥା ଆଲୋଚନା କରୁଥିଲେ ଯାହା ମୋତେ ଖୁବ୍ ଛୁଉଁଥିଲା ଏବଂ ଅନ୍ୟ ମଣିଷମାନଙ୍କ ଉପରେ ଯେଉଁ ସନ୍ଦେହ ଓ ରାଗ ଥିଲା ତାହା କମି କମି ଯାଉଥିଲା । ଗାଁ ପାଠଚକ୍ରରେ ଆଲୋଚନା ପୂର୍ବରୁ ସାଧନା ବିଷୟରେ କଥା ହେଲା ବେଳେ ଜଙ୍ଗଲକୁ ପଳାଇ ଯିବାର ମନୋବୃତ୍ତି ହିଁ ସାଧନା ବୋଲି ମୋର ଧାରଣା ଥିଲା । ପାଠଚକ୍ରକୁ ଆସିବା ପରେ ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କର ଫଟୋ ପାଖରେ ଫୁଲ ଦେବା, ପାଠଚକ୍ରରେ ଗୀତ ଗାଇବା ଇତ୍ୟାଦି ହିଁ ସାଧନା ବୋଲି ମୋର ପୂର୍ବପୋଷିତ ଧାରଣା ବଦଳିଲା । Letters on Yogaରେ ଶ୍ରୀଅରବିନ୍ଦ sadhana through work, sadhana through knowledge and sadhana through love and devotion ଇତ୍ୟାଦି ଏପରି କଥା ସବୁ କହିଛନ୍ତି ଯାହାକୁ ଚିତ୍ତଭାଇ ଏଭଳି ପ୍ରାଞ୍ଜଳ ଭାବରେ ଆଲୋଚନା କରୁଥିଲେ ଯେ ତାହା ମୋର ଦୃଷ୍ଟିର ପ୍ରସାରତା ଆଣି ଦେଉଥିଲା । ଚିତ୍ତଭାଇଙ୍କର କେତେ କେତେ ଉଦାହରଣ ମୋତେ ସାହସ ଦେଲା । ବହୁ ପ୍ରଶ୍ନ ମୋ ଭିତରକୁ ଆସୁଥିଲା । ପ୍ରଶ୍ନକୁ ମୁଁ ଚିତ୍ତଭାଇଙ୍କୁ ପଚାରିବା ପୂର୍ବରୁ କ୍ଲାସରେ ତାହା ଆଲୋଚନା ହେଉଥିଲା । ତେଣୁ ମୁଁ ବୁଝିପାରୁଥିଲି । ଆଗରୁ ଟିକିଏ ଟିକିଏ କଥାରେ ମୋର ଲୁହ ଛଳ ଛଳ ହେଉଥିଲା । ନିଜକୁ ଛୋଟ ମନେକରି ଭାବୁଥିଲି ଯେ ଭଗବାନ ସବୁଯାକ କଷ୍ଟ ଓ ଦୁଃଖ ବୋଧହୁଏ ମୋତେ ଦେଇଛନ୍ତି । ଦିନେ ଆଲୋଚନାରେ ଚିତ୍ତଭାଇ ରାମକୃଷ୍ଣଙ୍କର ଉଦାହରଣ ଦେଇ କହିଲେ, ''ରାମକୃଷ୍ଣ କହୁଥିଲେ ମାଆ ମୋତେ ଦୁଃଖ ଦେ, କଷ୍ଟ ଦେ, କିନ୍ତୁ ଦୁଃଖ ଓ କଷ୍ଟ ସହିବାକୁ ବଳ ଦେ ।'' ଆଉ ଦିନେ ଚିତ୍ତଭାଇ ରବୀନ୍ଦ୍ରନାଥଙ୍କର ଉଦାହରଣ ଦେଲେ ''ଦୁଃଖକୁ କାନ୍ଦି କାନ୍ଦି ବୁହାଇ ଦେବା କାହିଁକି ? ଦୁଃଖକୁ ଅନୁଭବ କରିବା ।'' ଚିତ୍ତଭାଇଙ୍କର ଉଦାହରଣ ମୋତେ ସାହସ ଦେଲା ଏବଂ ମୋର ଘୋଡଣିକୁ କାଢ଼ିବାରେ ସହାୟକ ହେଲା ଏବଂ ମୁଁ କାନ୍ଦୁରା ହେବାର ପ୍ରମାଦରୁ ରକ୍ଷା ପାଇଲି । ପଳାୟନ ପନ୍ଥୀ ହେବାର ଯେଉଁ ଶସ୍ତା ରାସ୍ତା ମୋ ପାଖରେ ଥିଲା ତାହା ଉପରେ ଚାବୁକ୍ ପାହାର ପଡ଼ିଲା । ବହୁ ସମୟରେ ଚିତ୍ତଭାଇ ମାଆଙ୍କର ''ବୀରଯୋଦ୍ଧା କରି ଗଢ଼ ଆମମାନଙ୍କୁ'' ପ୍ରାର୍ଥନା ଉପରେ କହୁଥିଲେ ଓ ଶ୍ରୀଅରବିନ୍ଦଙ୍କୁ ବୀରଯୋଦ୍ଧା ମଧ କହୁଥିଲେ ଏବଂ ବେଳେ ବେଳେ କହୁଥିଲେ- ଦେଖ, ଦେଖ,

କେଉଁଠି ପଳାଇ ଯିବାର କଥା ଅଛି ?'' I.T.I ପରେ Diploma in Mechanical Engineering କଲି କଟକ Engineering ସ୍କୁଲରେ । I.T.I ଦୁଇ ବର୍ଷ ଏବଂ Diploma ୩ ବର୍ଷ ଏହିପରି ପାଞ୍ଚବର୍ଷ ଅର୍ଥାତ୍ ୧୯୮୬ରୁ ୯୧ ଯାଏ ଚିତ୍ତଭାଇଙ୍କର ମାତୃଭବନ ପାଠଚକ୍ର ସଂଧ୍ୟା ୪ରୁ ୬ଟା ଯାଏ ଗୋଟିଏ ମଧ୍ୟ ଛାଡ଼ିନାହିଁ ।

ଶ୍ରୀଅରବିନ୍ଦଙ୍କୁ ଏବଂ ମାଆଙ୍କୁ ସିଧାସଳଖ ପଢ଼ିବାର ସାହସ ଚିତ୍ତଭାଇଙ୍କ ଠାରୁ ପାଇଲି । ସବୁବେଳେ କ୍ଲାସ୍‌ରେ ସିଏ କହୁଥିଲେ ''ସିଧା ସଳଖ ପଢ଼ିଲେ ନିଶ୍ଚୟ ବୁଝିପାରିବ ।'' ସମ୍ମୁଖୀନ ହେବାର ସାହସ ଶ୍ରୀଅରବିନ୍ଦଙ୍କର ବହିରୁ ମିଳେ । ମୂଳତଃ ସମସ୍ତେ ହିଁ 'ସେ' ଏହି କଥା ମାଆଙ୍କର ଓ ଶ୍ରୀଅରବିନ୍ଦଙ୍କ ଲେଖାରୁ ପାଇଛି । ତେଣୁ ଆମ ଭିତରର ଯେଉଁ ପ୍ରଭେଦ ସବୁ ରହିଛି ତାହା କେବଳ ଉପରି ଭାଗର । ଏଇ ପୃଥିବୀକୁ ନିଜର ଭାବି ପାରିଲେ ସବୁ ଭିତରେ 'ତାଙ୍କୁ' 'ସୁହୃଦଂ ସର୍ବ ଭୂତାନାଂ' ବୋଲି ଅନୁଭବ କରିହେବ ।

ଇସ୍ପାତ କାରଖାନାରେ କାମ ମିଳିଗଲା । ୧୯୯୨ରେ କାରଖାନାରେ ଯୋଗଦେଲି । ମଝିରେ ମଝିରେ ଚିତ୍ତଭାଇଙ୍କ ସହିତ ଚିଠିପତ୍ର ଦେବାନେବା ହୁଏ । ମୋର ଇଂରାଜୀ ଭଲ ହୁଏ ନାହିଁ । ଚିଠିରେ ଥରେ ଚିତ୍ତଭାଇ ଲେଖିଥିଲେ ''ଶ୍ରୀଅରବିନ୍ଦଙ୍କର ଲେଖାକୁ ପଢ଼, ଇଂରାଜୀ ଉପରେ ଦକ୍ଷତା ଆସିବ ।'' ଏକା ଜିଦ୍‌ରେ ସେଇଦିନୁ ଶ୍ରୀଅରବିନ୍ଦଙ୍କର ଏବଂ ଶ୍ରୀମାଙ୍କର ଲେଖାକୁ ପଢ଼ିଛି । ବୁଝେ ବା ନ ବୁଝେ ପଢ଼ିଛି । ଲକ୍ଷ୍ୟ କରୁଛି ଥରେ ପଢ଼ିଲାବେଳେ ଯାହା ବୁଝା ପଡୁଥିଲା ଏବେ ଅଧିକ ବୁଝା ପଡୁଛି । ଚିତ୍ତଭାଇଙ୍କର ସେହିସବୁ ଆଲୋଚନା ମୋର ଉପରର ଅସ୍ଥାୟୀ ପରଦାକୁ ଏପରି ହଟାଇ ଦେଇଛି ଯେ, ଏବେ ନିଜେ ମୁଁ ଇଚ୍ଛା କଲିଣି ମୋ ଭିତର ଆହୁରି ଅନେକ ପରଦା ହଟେଇବାକୁ । ମଣିଷର ଇଚ୍ଛା ଶକ୍ତି କିଛି ନୁହେଁ ବୋଲି ମୋର ପୂର୍ବ ଧାରଣା ତଥା ସବୁ କିଛିକୁ ଫୋପାଡ଼ି ଦେଇ ପଳାଇଯିବାର ଯେଉଁ ରୁଗ୍ଣ ମାନସିକତା ଥିଲା ତାହା ଆସ୍ତେ ଆସ୍ତେ ବଦଳିଗଲାଣି । ଆମର ଇଚ୍ଛାଶକ୍ତି ଯେ ଭଗବଦ୍‌ଦତ୍ତ ଏବଂ ପ୍ରକୃତିଦତ୍ତ ତାହା ନିଜ ଗଭୀରକୁ ନେବା ଦ୍ୱାରା ବୁଝା ପଡ଼ିଲାଣି । ମୋର ବଡ଼ ଅନୁଭବ ଏବେ ଯାଏ ହୋଇଛି- ଆମେ ସମସ୍ତେ ସେଇ ପରଦା ଯୋଗୁଁ ଅଲଗା ଅଲଗା । ମୋର ପରସ୍ତକୁ ପରସ୍ତ ଯେଉଁ ପରଦା ମାନ ରହିଛି ତାହାକୁ ଚିହ୍ନିବାରେ ଚିତ୍ତଭାଇଙ୍କର ଲେଖା, ଶ୍ରୀଅରବିନ୍ଦଙ୍କର ଲେଖା, ମାଆଙ୍କର ଲେଖା, ଜେ.କ୍ରିଷ୍ଣମୂର୍ତ୍ତିଙ୍କର ଲେଖା ଓ ମନୋଜ ଦାସଙ୍କର ଲେଖା ଖୁବ୍ ସହାୟକ ହୋଇଛି । ଆଧ୍ୟାତ୍ମିକ ଭୋକ ବଢ଼େଇବାରେ ଏବଂ ପୃଥିବୀର ସବୁ ଭିତରକୁ ପଶିଯିବାରେ ଏଇ ସବୁ ଲେଖା ମୋର ମୂଳଦୁଆ ଓ ଭୂମି । କ୍ଷଣକୁ କ୍ଷଣ ନବଜନ୍ମ ହେବାରେ ଏହା ମୋତେ

ଖୁବ୍ ସହାୟକ ହୋଇଛନ୍ତି ।

କୋହ୍ଲ ସୁହୃଦ୍ ଶିବିରକୁ ଯାଉଥିଲି । 'ମାନବ ଯୁଗଚକ୍ର' ଆଲୋଚନା ହେଉଥିଲା । ବ୍ୟକ୍ତି ଏବଂ ଗୋଷ୍ଠୀ ଉପରେ, ଶ୍ରୀଅରବିନ୍ଦଙ୍କର ସ୍ୱପ୍ନ ଉପରେ ଚିତ୍ତଭାଇ ଆଲୋଚନା କରୁଥିଲେ । ଛଅଟି ମୌଳିକ ଜିନିଷ ପ୍ରସଙ୍ଗରେ କଥା ପଡ଼ିଲା । ଚିତ୍ତଭାଇ ଆଲୋଚନା ଆରମ୍ଭ କରି ଛାଡ଼ିଦେଲେ । ସୁହୃଦ୍ ଶିବିରରେ ବିଭିନ୍ନ କାମ ଭିତରେ ସମସ୍ତେ ଚାଲିଥାଉ । ରାତିର ଆଲୋଚନାରେ ଚିତ୍ତଭାଇଙ୍କର ଗର୍ଜନ ମୋତେ ବ୍ୟସ୍ତ କରି ପକେଇଲା- "ଏଇ ଦଶ ଦିନ କ'ଣ ଏଠିକୁ ଆମେ ତାମସା କରିବାକୁ ଆସିଛନ୍ତି ନା ଏହି ଶିବିରକୁ ହୋଟେଲ୍ ବୋଲି ଭାବୁଛନ୍ତି ? ଏଇ ପାଖରେ ଲୋକେ ଖାଇବାକୁ ପାଉ ନ ଥିବା ବେଳେ ଆମେ ଏଠି କ'ଣ ପାଇଁ ଏକାଠି ହେଉଛନ୍ତି ?...." ଏହିପରି କେତେ କଥା କହିଗଲେ । ମୋତେ ଏହି କଥା ପୁଣି ଛୁଇଁଲା । ସତେ ତ ଆମେ କେତେଜଣ କ'ଣ ଏଠିକୁ ଏହିପରି ସମୟ ଉଡେଇବାକୁ ଆସିଛନ୍ତି ? ଏ ବିଷୟରେ କେତେ ଜଣଙ୍କ ସହିତ ମୋର ରାତିରେ ଆଲୋଚନା ହେଲା । "ପ୍ରତ୍ୟେକ ମଣିଷ ଯଦି ସେଇ ଏକ ଭୂତରୁ ସୃଷ୍ଟି ତେବେ ପ୍ରଭେଦ କ'ଣ ପାଇଁ ? ଆମମାନଙ୍କର ମୌଳିକ ଆବଶ୍ୟକତା ସବୁ କ'ଣ ?" ଏହିକଥା ମୋତେ ରାତିରେ ବ୍ୟସ୍ତ କଲା । ପ୍ରବଳ ଶୀତ ହେଉଥିଲେ ମଧ୍ୟ ରାତିରେ ମୋ ଦେହରୁ ସେଦିନ ଝାଳ ବୋହିଗଲା । ମୁଁ କିଛି କିଛି ଚିତ୍ତଭାଇଙ୍କୁ ଭୟ କରୁଥିଲି । ସେଦିନ ଆଲୋଚନାରେ - ଶ୍ରୀଅରବିନ୍ଦ ଯେଉଁ ମୌଳିକ ଆବଶ୍ୟକତା ବିଷୟରେ କହୁଛନ୍ତି ଚିତ୍ତଭାଇଙ୍କୁ ପଚାରିବାକୁ ସାହସ ହେଲାନି । ଯଦି କେହି ଜଣେ କୌଣସି କଥା ପଚାରୁ ଥିଲେ ଚିତ୍ତଭାଇ ଠୋ କରି କହି ଦିଅନ୍ତି "ମୁଁ କ'ଣ କୁଣ୍ଡା ଦେଇ ପାଠ ପଢ଼ିଛି, ତମେ ଯଦି ଜାଣିବାକୁ ଚାହୁଁଛ ତେବେ ନିଜେ ପଢୁନାହଁ କାହିଁକି ?" ବିରି ବାଡିଆ ଦେଖି କୋଳଥ ଚେପା । ମୋର ସାହସ ଚାଲିଯାଏ । ସେଦିନ ଝୁଡି ଦେଉ ଦେଉ ଚିତ୍ତଭାଇଙ୍କ ପାଖରେ ହଲ ହଲ ହେଲି । ମଝିରେ ମଝିରେ କହୁଥାଏ- "ଚିତ୍ତଭାଇ, ମୋର ଗୋଟିଏ କଥା କହିବାର ଅଛି ।" ସେଦିନ ଅନୁଭବ ହେଲା ଚିତ୍ତଭାଇ ସମସ୍ତଙ୍କୁ ଠୋ କରି କଥା କହନ୍ତି ନାହିଁ । ମଣିଷର ଛଅଟି ମୌଳିକ ଆବଶ୍ୟକତା ସବୁ କ'ଣ ବୋଲି ସିଏ କହିଲେ- ଖାଦ୍ୟ, ବସ୍ତ୍ର, ବାସଗୃହ, ସ୍ୱାସ୍ଥ୍ୟ, ଶିକ୍ଷା ଓ ବଳକା ସମୟ । ବଳକା ସମୟ ଉପରେ ଶ୍ରୀଅରବିନ୍ଦ ସୁନ୍ଦରଭାବରେ ଆଲୋଚନା କରିଛନ୍ତି । ଚିତ୍ତଭାଇ ଗଭୀରକୁ ବୁଝନ୍ତି, ଭିତରକୁ ଦେଖନ୍ତି । ଯେଉଁମାନେ ଉପରେ ଉପରେ ଉଡନ୍ତି ସେମାନଙ୍କୁ ଠୋ ଠା କରି କହି ସିଏ ଆଲୋଚନା ଭିତରକୁ ନେଇଆସନ୍ତି । ମଣିଷ ନିଜେ ନ ଚାହିଁଲେ ବଦଳିବାରେ ବିଳମ୍ବ ହେବ ଏବଂ ମୋଟେ ନ ହୋଇ ବି ପାରେ । କେବଳ ଭାଷଣ ଦ୍ୱାରା ଜଣେ ପ୍ରଭାବିତ ହୋଇପାରେ କିନ୍ତୁ

ଆଲୋକିତ (enlightened) ହୋଇ ପାରିବ ନାହିଁ । ଜଣେ ନ ହେଜିଲେ, ନ ଚାହିଁଲେ ଏବଂ ନିଜେ ନିଜ ଭୂମିକୁ ନ ଛୁଇଁଲେ କେବଳ ଉପର ଦେଖାଣିଆ ଛଳନା କରିବ ସିନା କିନ୍ତୁ ବଦଳିବ ନାହିଁ । ଅତିମାନସ ଆସିବାଯାଏ କିମ୍ବା ଉପରର କୌଣସି ଶକ୍ତି କାମ କରିବା ପୂର୍ବରୁ ମଣିଷର ଇଚ୍ଛାଶକ୍ତି ହିଁ ତାକୁ ଉପରକୁ ନେଇ ଚାଲିଥିବ । ଏହି ଯେଉଁ ଇଚ୍ଛାଶକ୍ତି ଓ ନିଜ ଉପରେ ଯେଉଁ ଆସ୍ଥା ଓ ବିଶ୍ୱାସ ତାହା ମୋତେ ବେଶୀ ମିଳିଛି ଚିତ୍ତଭାଇଙ୍କ ଠାରୁ ।

ଚିତ୍ତଭାଇଙ୍କ ଠାରୁ ପୃଥିବୀକୁ ତଥା ସବୁକିଛିକୁ ଜାଣିବାର ଯେଉଁ ପ୍ରବଳ ପ୍ରବୃତ୍ତି ତାହା ମିଳିଛି । ପଳାୟନ ପନ୍ଥୀଟିଏ ହେବାର ଯେଉଁ ଦୃଷ୍ଟି କୋଣ ମୋ ପାଖରେ ଥିଲା ତାହା ଆସ୍ତେ ଆସ୍ତେ କମିବାରେ ଲାଗିଛି । ଏବେ ସବୁ କିଛିକୁ ସମ୍ମୁଖୀନ ହେବାର ଏକ ତୀବ୍ର ସାହସ ମୋ ପାଖରେ ଥିବା ଭଳି ଲାଗିଲାଣି । ଚିତ୍ତଭାଇଙ୍କର ସେହି ଦିନର କଥା ମୋତେ ଏମିତି କରିଛି ଯେ ମୋର ସ୍ୱପ୍ନ ଗୁଡ଼ିକରେ ପର ଉଠିଛି ଏବଂ ସେମାନେ ପୁଣି ନବଜନ୍ମ ଲାଭ କରିବାରେ ଲାଗିଲେଣି । ସବୁ ଜିନିଷକୁ ମାନିଯିବାର ଯେଉଁ ଅସୁସ୍ଥ ମାନସିକତା ମୋ ଭିତରେ ଥିଲା ତାହା ଏବେ ବଦଳିବାକୁ ଲାଗିଛି । ପ୍ରଶ୍ନ ପଚାରିବାଟାକୁ ଏକ ଅସମ୍ମାନର କଥା ବୋଲି ମୋର ଯେଉଁ ଧାରଣା ଥିଲା ତାହା ବଦଳିଲାଣି । ଚିତ୍ତଭାଇ ଉପନିଷଦ, ବେଦ ଓ ଶ୍ରୀଅରବିନ୍ଦଙ୍କର ତଥା ମାଆଙ୍କର ଲେଖା ଭିତରେ ଯେଉଁ ଜିଜ୍ଞାସାର ଦୀପଶିଖା ସବୁକୁ ଆମକୁ ଦେଖାଇଛନ୍ତି ତାହା ଆମକୁ ଆଲୋକିତ କରିଛି । ଅଧିକାଂଶ ଉପନିଷଦରେ ଜିଜ୍ଞାସା ରହିଛି । ମଣିଷ ପଚାରୁ ବା ନ ପଚାରୁ ତା' ଭିତରେ ଜିଜ୍ଞାସା ସ୍ୱତଃ ଆସେ, କିନ୍ତୁ ବିଭିନ୍ନ ପ୍ରକାରର ଚଳଣିରେ ତାହା ଝରିପଡ଼େ ଅଥବା ଚାପି ହୋଇଯାଏ । ବହୁ ସମୟରେ ଚିତ୍ତଭାଇ ବଢେଇ କରି ନେବା କଥାଟିର ଉଦାହରଣ (ରାମକୃଷ୍ଣଙ୍କର) ଆମକୁ ଦିଅନ୍ତି । ବହୁ ସମୟରେ କୋହ୍ଲ ଶିବିର ପରେ- ମୋ ପାଖକୁ ଆସିଲା ଯେ ପଣ୍ଡିଚେରୀ ଆଶ୍ରମରେ ମାଆ ସବୁ ପ୍ରକାର ବ୍ୟବସ୍ଥା କରିଛନ୍ତି କାହିଁକି ? ଆଶ୍ରମକୁ ତ ସମସ୍ତେ ଯାଇଛନ୍ତି କିନ୍ତୁ ଏଇ ଦିଗପ୍ରତି କେହି ତ ନଜର ଦେଇନାହାନ୍ତି । ମାନବ ଯୁଗଚକ୍ରରେ ଶ୍ରୀଅରବିନ୍ଦ ଯେଉଁ ଛଅଟି ମୌଳିକ ଆବଶ୍ୟକତା ଉପରେ ଆଲୋଚନା କରିଛନ୍ତି ଏବଂ ବ୍ୟକ୍ତି ଓ ଗୋଷ୍ଠୀ ପରସ୍ପରର ସହଯୋଗୀ ବୋଲି ଲେଖିଛନ୍ତି ତାହା ଆଶ୍ରମରେ ମାଆ ପ୍ରତିଫଳିତ କରିଛନ୍ତି । ଆଶ୍ରମ ହେଉଛି ଆମ ସମସ୍ତଙ୍କ ପାଇଁ ଏକ ଛୋଟିଆ ଉଦାହରଣ ଓ ଗବେଷଣାଗାର । ପିଲାଦିନରୁ ମୋ ଭିତରେ ଯେଉଁ ସ୍ୱପ୍ନ କିଛି ଚାପି ହୋଇଥିଲା ତାହା ପୁଣି ପତ୍ର ଧରିଲା ଏହି ସବୁ ବିଷୟରେ ପଢୁ ପଢୁ ଏବଂ ମନନ କରୁକରୁ । ଶ୍ରୀଅରବିନ୍ଦଙ୍କର ନୈରାଜ୍ୟବାଦର କଥା ଭିତରେ ଆଲୋଚନା କରିବାକୁ ଏବଂ ସେହିପରି ବର୍ତ୍ତିବାକୁ

ଭିତରେ ପ୍ରବଳ ଆଗ୍ରହ ଆସିଲା । ନୈରାଜ୍ୟବାଦରେ ମୂଳଦୁଆ ବା ମଂଜି ହୋଇ ପାରନ୍ତେ ନାହିଁ ? କିଛି ଜମି ନେଇ, ଚାଷ ବାସ କରି, ସେଇଥିରୁ ଖାଦ୍ୟ ବସ୍ତ୍ର, ବାସଗୃହ, ସ୍ୱାସ୍ଥ୍ୟ, ଓ ଶିକ୍ଷା ପାଇଗଲା ପରେ ବଳକା ସମୟ ବାହାର କରି ଆମେ କଣ ନିଜ ଅନ୍ତରକୁ ଯାଇପାରିବା ନାହିଁ ? ଏହି ଭଳି ବିଭିନ୍ନ ସ୍ୱପ୍ନ ମୋତେ କିଛିଦିନ ଜ୍ୱରଗ୍ରସ୍ତ କରିଦେଲା । ବିଭିନ୍ନ ଶିବିରରେ ମୁଁ ଏହି କଥା କହିଲି । ଲକ୍ଷ୍ୟ କରିଛି ଯେ ମୋ ଭଳି ଆଉ କେତେଜଣ ମଧ ଏଇ ବିଷୟରେ କିଛି ସ୍ୱପ୍ନ ଦେଖୁଛନ୍ତି । ଏହା ପରେ ଥରେ ଚିତ୍ତଭାଇଙ୍କୁ ଡାକି ଆମେ କେତେଜଣ ବନ୍ଧୁ ବସିଲୁ ଏବଂ ଆଲୋଚନା ହେଲା । ପାଖାପାଖି ଚାରି ଘଣ୍ଟା ପର୍ଯ୍ୟନ୍ତ ଚିତ୍ତଭାଇ ଆମ ସାଙ୍ଗରେ ଥିଲେ । କଥାବାର୍ତ୍ତା ବେଳେ ଚିତ୍ତଭାଇ ମୋତେ ଚୁପ କରି ଦେଇ ଅନ୍ୟମାନଙ୍କ ଠାରୁ ଶୁଣିବାକୁ ଚାହୁଁଥିଲେ ଓ ଜାଣିବାକୁ ଚାହୁଁଥିଲେ ସମସ୍ତେ କେତେ ଭାବରେ ବୁଝିଛନ୍ତି । ''କିଛି କରିପକେଇବା ନୁହେଁ, ବୁଝିବାକୁ ଏବଂ ନିଜେ ହୋଇ ଉଠିବାକୁ ବାହାରିଲେ ତମେମାନେ ନିଶ୍ଚୟ ଆଗକୁ ଚାଲିବ'' ଏହା ଶେଷରେ ଚିତ୍ତଭାଇ କହିଲେ । ଆଉ ଗୋଟିଏ କଥା କହିଲେ '' ରାସ୍ତା ଚାଲୁଥିଲେ ଏବଂ ଦୃଷ୍ଟି ଖୋଲାଥିଲେ ସମଭାବନା ଓ ରାସ୍ତା ଚାଲୁଥିବା ମଣିଷ ନିଶ୍ଚୟ ଏକାଠି ହେବ ଏବଂ ଗୋଷ୍ଠୀ ସ୍ୱତଃ ହୋଇ ଉଠିବ ନଚେତ୍ କେବଳ ଗୋଷ୍ଠୀ ଗଢ଼ିବା ନାଆଁରେ ଜଣେ ମଣିଷର କିମ୍ବା କେତେ ଜଣ ମଣିଷର କର୍ତ୍ତୃତ୍ୱ ଅଥବା ଦୟା ଦ୍ୱାରା ମୋଟେ ନୈରାଜ୍ୟବାଦ ଭଳି ଗୋଷ୍ଠୀ ଗଢ଼ି ହେବ ନାହିଁ'' । ତା ପର ଠାରୁ ଆମେ ଯେତେ ଜଣ ସାଙ୍ଗ ହୋଇଥିଲୁ ସମସ୍ତେ ପାଠପଢ଼ାରୁ ଆରମ୍ଭ କଲୁ । ସମସ୍ତେ ଶ୍ରୀଅରବିନ୍ଦଙ୍କର ଲେଖାକୁ ପଢ଼ିବାକୁ ଆରମ୍ଭ କଲୁ ଏବଂ ତା ସହିତ ନିଜ ନିଜର ଆଉ ସବୁ ପାଠକୁ ମଧ ପଢ଼ିଲୁ ।

ଏହା ଭିତରେ ଆମେ ଗୋଟିଏ ପାଠାଗାର କରିଛୁ । ଯେଉଁ ବନ୍ଧୁମାନେ ଏକାଠି ହୋଇଛୁ ସବୁ ବିଷୟରେ ଆଲୋଚନା କରୁଛୁ । ପ୍ରତ୍ୟେକଙ୍କୁ ନିଜସ୍ୱ ରାସ୍ତାରେ ସହଯୋଗ କରୁଛୁ ଏବଂ ବର୍ଷକୁ ବର୍ଷ ଆମେ ଯୋଜନାମାନ କରୁଛୁ । ସମସ୍ତଙ୍କ ପାଇଁ ଏକ ସାଧାରଣ ନିୟମ କରିଛୁ ଯାହାକୁ କି ସମସ୍ତେ ମାନୁଛୁ ଓ ଆଲୋଚନା କରି ବଦଳାଉଛୁ । କୌଣସି କଥା ଆମ ଉପରେ ମୋଟେ ଚାପି ହେବ ନାହିଁ କିମ୍ବା ଆମେ ଜବରଦସ୍ତି କିଛି କରିବୁ ନାହିଁ । ଏହିପରି ସଂକଳ୍ପ ନେଇ ରାସ୍ତା ଚାଲିଛୁ । ଆମେ ଆମ ଭିତରେ ଶ୍ରୀଅରବିନ୍ଦଙ୍କୁ, ଶ୍ରୀମାଙ୍କୁ, ଚିତ୍ତଭାଇଙ୍କୁ ବନ୍ଧୁ ଭାବରେ ଏବଂ ପଣ୍ଡିଚେରୀ ଆଶ୍ରମକୁ ଆମ ସ୍ୱପ୍ନର ମୂଳଦୁଆ ଭାବେ ନେଇଛୁ । ମଝିରେ ମଝିରେ ଚିତ୍ତଭାଇଙ୍କ ସହିତ କଥା ହେଲାବେଳେ କେତେ କେତେ ଜାଗାରେ ଅଟକିଛି ବୋଲି ବୁଝି ହୋଇଯାଏ ଏବଂ ପୁଣି ମୁଁ ଆରମ୍ଭ କରେ । ଥରେ କଥାବାର୍ତ୍ତା ହେଉ ହେଉ

କହିପକେଇଲି, ''ବୋଝ ବଢ଼ି ବଢ଼ି ଯାଉଛି'' । କଥା ଛଳରେ ଚିତ୍ତଭାଇ କହିଥିଲେ, ''ବୋଝ ବଢ଼ିବା ସଙ୍ଗେ ସଙ୍ଗେ ରାସ୍ତାର କ୍ଷମତା ମଧ୍ୟ ବଢ଼ିବା ଦରକାର ଏବଂ ସେଇ ଅନୁସାରେ ଆମେ ଯଦି ରେଳ ଧାରଣା ହୋଇଯିବା ତେବେ କେତେ ବୋଝ ହେଉଛି ହେଉ ।'' ଏହି କଥା ଶୁଣି ମୋ ଭିତରେ ସେ ଦିନ ଗଦାଏ ବଳ ଆସିଥିଲା । ଜୀବନକୁ ଚିତ୍ତଭାଇ ଏକ ଯାତ୍ରା ଭଳି ଗ୍ରହଣ କରନ୍ତି । ତେଣୁ ନିଜ ଉପରେ ବିଶ୍ୱାସ ଆସିଥାଏ ଏବଂ ସବୁ ଭିତରକୁ ଯାଇ ସାଉଁଟିବାକୁ ମନ ବଳେ । ''ଯୋଗ୍ୟ ହେଉ ହେଉ ସ୍ୱତଃ ସବୁ କିଛି ହୋଇଯିବ, ଆଉ ଅଟକାଇ ହେବନି, ସବୁକିଛି ପାଇଁ ଭିତରୁ ମାଡ଼ିବ''- ଏହି କଥା ଗୋଟିଏ ଆଲୋଚନାରୁ ଆମେ ଶୁଣିଥିଲୁ । (ଆମେ ବାବୁନି ଓ ମୁଁ) ଏବେ ଏଇ ଛୋଟିଆ ଆଲୋଚନାରେ ଆମେ ତାହାହିଁ ଦେଖୁଛୁ । ଆମର ପାଠପଢ଼ିବାର ଶ୍ରଦ୍ଧା ଏବଂ ତତ୍ ସହିତ ଜୀବନ ବଂଚିବାର ଆଗ୍ରହ ଯେତେଯେତେ ବଢ଼ି ବଢ଼ି ଚାଲିଛି ସେଇ ଅନୁସାରେ ବିଭିନ୍ନ କାମ ପାଇଁ ଭିତରୁ ମାଡ଼ିବା ପରି ହିଁ ଲାଗୁଛି । ପୁଳାଏ ଗଦା କରି କିଛି କରି ପକେଇବାର ପଛରେ ମୋର ଯେଉଁ ଗ୍ରାସ କରିଯିବାର ମନୋବୃତ୍ତିଟି ରହିଥିଲା ତାହା ଏହା ଭିତରେ ବହୁ ମାତ୍ରାରେ ଚାଲି ଯିବାରେ ଲାଗିଲାଣି । ଆଉ ଥରେ ଆମ ଛୋଟିଆ ଆଲୋଚନା ଗୋଷ୍ଠୀଟି ଭୁବନେଶ୍ୱରରେ ଏକାଠି ହୋଇଥିଲୁ । ସେଇ ଏକାଠି ହେବା ଭିତରେ ଚିତ୍ତଭାଇଙ୍କର ଭୁବନେଶ୍ୱରର ପାଠଚକ୍ର ପଡ଼ିଲା । ଭାଗ୍ୟଧର ଭାଇ କହିଲେ ''ଆମେ ଯିବା ।'' ସମସ୍ତେ ଯାଇଥିଲୁ । ମୋତେ ଦେଖୁ ଦେଖୁ ଆରମ୍ଭ ହୋଇଗଲା ପାହାର । ଦୁଇଘଣ୍ଟା ଧରି କେବଳ ପାହାର । ପାହାର ଖାଇବା ବେଳେ ଖୁବ୍ ଆନନ୍ଦ ଲାଗୁଥିଲା ଏବଂ ପ୍ରତି ପାହାରର ପଛରେ ରହିଥିବା ସଂକେତ ସବୁକୁ ଖୁବ୍ ସତର୍କତାର ସହିତ ଦେଖୁଥିଲି । ଗୋଟିଏ କଥା ସେଦିନର ମନେ ଅଛି- ''ଅଭୀପ୍‌ସା ରୂପକ ଗଛରେ ଦାମଭାଇ କେବଳ ଗେଧ ହୋଇ ଏଇ ଡାଳରୁ ସେଇ ଡାଳ, ସେଇ ଡାଳରୁ ଏଇ ଡାଳ ଡେଇଁବାରେ ଲାଗିଥିବେ ।'' (ଗେଧ-ଅଣ୍ଡିରା ମାଙ୍କଡ଼) । ଏହି କଥା ଶୁଣି ଶୁଣି ନିଜକୁ ବିଶ୍ଳେଷଣ କଲି । ସତେ ତ ! ବୈଠକରେ ମୁଁ କେବଳ ମୋରି କଥାକୁ ତ କହୁଛି । ଗୋଟିଏ ପରସ୍ତ କାଟି ଛାଡ଼ିଲା ଏବଂ ଶୁଣିବାକୁ ଚେଷ୍ଟା କଲି । ଶୁଣିବାରେ ପୁଣି ଏତେ ଆନନ୍ଦ ଅଛି ? ଗୋଟିଏ ମଣିଷ ଉପରେ ନିୟମ, କାନୁନ ଇତ୍ୟାଦି ଲଦିଦିଆ ଯାଇପାରେ ଏବଂ ଏମିତି ଚଳିବା ଦରକାର କିମ୍ବା ସେମିତି ଚଳିବା ଦରକାର କୁହାଯାଇ ପାରେ, କିନ୍ତୁ ଯେପର୍ଯ୍ୟନ୍ତ ଜଣେ ଆଲୋଚନା କରିବାକୁ ସୁଯୋଗ ପାଇନି କିମ୍ବା ରାଜି ହୋଇନି ସେତେବେଳ ଯାଏ କିଛି ସ୍ୱତଃ ବଦଳିବା ହୁଏ କି ? ସମସ୍ତେ ସବୁ କଥାକୁ ନିଜ ନିଜ ସ୍ତରରେ ଭାବି ପାରିଲେ ଏବଂ କହି ପାରିଲେ ତା'ଦ୍ୱାରା ପ୍ରତ୍ୟେକଙ୍କର ସଂଶ୍ଳିଷ୍ଟ ହେବାର ଏବଂ ଦାୟିତ୍ୱ ନେବାର ଏକ ସୁଯୋଗ ଆସେ ।

ଅଧିକାଂଶ ଆମେ ଦାୟିତ୍ୱବୋଧକୁ ଭୟ କରି ସବୁ କ୍ଷେତ୍ରରୁ ଦୂରେଇ ରହୁ ଏବଂ କେବଳ ଭାଟ ହୋଇ ଜୟଗାନ କରୁ । ଏହାଦ୍ୱାରା ନିଜର କ୍ଷତି ହୁଏ ତଥା ଆଉ ଆଗକୁ ଯାଉଥିବା ମଣିଷମାନଙ୍କର ମଧ କ୍ଷତି ହୁଏ । ଚିତ୍ତଭାଇଙ୍କ କ୍ଷେତ୍ରରେ ମୁଁ ଲକ୍ଷ୍ୟ କରିଛି- କେତେ କଥାକୁ ସିଏ ନିଜର ଭାବି ଚିନ୍ତା ନ କରୁଛନ୍ତି ? ଯେବେ ତାଙ୍କ ସହିତ ଭେଟ ହୋଇଛି ସବୁବେଳେ ଗାଁ, ଭାଇ, ବାପାବୋଉ, ଅଭୀପ୍ସା, କାରଖାନାର ବିଭିନ୍ନ Unit ବିଷୟରେ କଥା ହୋଇଛନ୍ତି । ଚିତ୍ତଭାଇଙ୍କର ଗୋଟିଏ ବହି- ହଠାତ୍ ସେଦିନ ଗୌତମଭାଇ ଉତ୍କଳମଣି ଇସ୍ପାତ ପାଠାଗାରରୁ ଆଣି ଦେଲେ । ବହିଟିକୁ କେତେଥର ଏପଟ ସେପଟ କରି ଦେଖିଲି- ''ସମାଜ- ପରିବର୍ତ୍ତନ ଓ ବିକାଶ'' । ବ୍ୟକ୍ତି ଓ ଗୋଷ୍ଠୀ ଉପରେ କେତେ ସୁନ୍ଦର ସ୍ୱପ୍ନ ସବୁ ତା' ଭିତରେ ରହିଛି । ମୂଳରୁ ଶେଷଯାଏ ପଢ଼ିଗଲି । ଚିତ୍ତଭାଇଙ୍କର ବହିଟିଏ ପାଇଲେ ଆଉ ସବୁ କିଛିକୁ ଆଡ଼େଇ ଦେଇ ଶେଷ କରିବାକୁ ଲାଗିଯାଏ । ବହିଟିକୁ ପଢ଼ିଲା ପରେ ଥୟ ହୋଇ ରହି ହେଲାନି । ପାଣି ପଡ଼ିଲେ ଯେପରି ଶୁଖିଲା ଗଛରେ ପତର କଅଁଳେ ସେହିପରି ସ୍ୱପ୍ନ ମାନେ ମୋତେ ଖୁବ୍ ବ୍ୟସ୍ତ କରନ୍ତି ଏବଂ କିଛି ଦିନ ପାଇଁ ମାତିଯିବାକୁ ଇଚ୍ଛା ହୁଏ ।

ମୋ ଜୀବନରେ ବେଶୀ ପ୍ରଭାବ ପକେଇଛି ''ରୋହିତର ଡାଏରୀ'' । ଏହି ଡାଏରୀ ମୋର ନିଜ ସହିତ କଥା ହେବାର ସୁଯୋଗ ଦେଇଛି । ମାତୃଭବନରେ ଚିତ୍ତଭାଇଙ୍କ ସହ ମିଶିବା ପୂର୍ବରୁ ଡାଏରୀ ଲେଖୁଥିଲି, କିନ୍ତୁ ନିୟମିତ ଭାବରେ ନୁହେଁ । ଆତ୍ମ ସମୀକ୍ଷା ପାଇଁ ଦିନ ଲିପି ଲେଖିବା ମୋ ପାଇଁ ଏକ ମାଧ୍ୟମ ହୋଇଛି ଏବଂ ଅଟକି ଯିବା ମୋତେ ସମ୍ଭବ ହେଉନି । ଅଲଗା ପ୍ରକାରର ମୁଁ ଅବଶ୍ୟ ଲେଖୁଛି । ଶ୍ରୀଅରବିନ୍ଦଙ୍କର ମା' ବହି ମୋତେ ଆଉ ଏକ ବାଟ ଦେଇଛି । ଅଭୀପ୍ସା, ପ୍ରତ୍ୟାଖ୍ୟାନ ଓ ସମର୍ପଣ- ଏହି ତିନୋଟିକୁ ଆଧାର କରି ପ୍ରତ୍ୟେକ ଦିନ ମୁଁ କ'ଣ ସବୁ ସଂକଳ୍ପ କରୁଛି ଏବଂ ମୋତେ କେମିତି ବିଭିନ୍ନ ପ୍ରଲୋଭନ ଅଟକାଉଛନ୍ତି ଇତ୍ୟାଦିକୁ ଆତ୍ମସମୀକ୍ଷା ଦ୍ୱାରା ଜାଣି ହେଉଛି । ତିନୋଟି ଖାତା ପ୍ରଥମେ କରିଥିଲି । ମୋ ଭିତରେ କ'ଣ ସବୁ ସଂକଳ୍ପ ଆସୁଛି ତାହାକୁ ଗୋଟିଏ ଖାତାରେ ଲେଖୁଥିଲି । ଦ୍ୱିତୀୟ ଖାତାରେ ମୁଁ କେମିତି ମୋ ଭିତରର ବିଭିନ୍ନ ବଳୟ ସହିତ ସୀମା ସହିତ ସାକ୍ଷାତ୍ କରୁଛି ତାହାକୁ ଲେଖୁଥିଲି ଏବଂ ତୃତୀୟ ଖାତାରେ ନିଜର ଭାବନାକୁ ଓ ସବୁକିଛିକୁ ସମର୍ପଣ କରୁଥିଲି । ଏହି ତିନୋଟି ଖାତା ବଦଳରେ ଏବେ ଗୋଟିଏ ଖାତାରେ ଲେଖୁଛି- ଅନୁଭବ ହୋଇଛି ଯେ ଅଭୀପ୍ସା, ପ୍ରତ୍ୟାଖ୍ୟାନ ଓ ସମର୍ପଣକୁ ମୋତେ ଅଲଗା କରି ହେବନି । ଗୋଟିଏ ଆରମ୍ଭ ହେଲେ ଆଉ ଦୁଇଟି ପାଖାପାଖି ରହିଥିବେ । ନିଜକୁ ଯାତ୍ରୀଟିଏ ଭାବିଛି ତେଣୁ ଏବେ ମୋର ଅନୁଭୂତିଗୁଡ଼ିକୁ 'ଯାତ୍ରୀ ସିଦ୍ଧାର୍ଥ' (ମୋ

ଦିନଲିପିର ନାଆଁ)ରେ ଲେଖୁଛି । ଚିତ୍ତଭାଇ ବହୁବାର କହୁଥିବାର ଶୁଣିଛି- ଶ୍ରୀଅରବିନ୍ଦ ଭୂମିରୁ ଆରମ୍ଭ କରି ଅସୀମ ଆଡ଼କୁ ବ୍ୟାପ୍ତ ହୋଇଛନ୍ତି । ମୋତେ ମୋର ସବୁ କାମକୁ ନିଜ ଭୂମିରୁ ଆରମ୍ଭ କରିବାକୁ ହେଉଛି । ନିଜର ବଂଚିବାରେ ମୁଁ ଏବେ ନିଜକୁ ପ୍ରତ୍ୟେକ କ୍ଷଣରେ ଦେଖୁଛି । ବେଶ୍ କିଛି ଦିନ ହେବ ଲକ୍ଷ୍ୟ କଲିଣି । ସବୁ ଜିନିଷକୁ ଗଭୀରରେ ଜାଣିବାକୁ ଇଚ୍ଛା ହେଲାଣି । ଏଇଟା ମାଆଙ୍କ କାମ କିମ୍ବା ସେଇଟା ମାଆଙ୍କ କାମ ନୁହେଁ ବୋଲି ଆଉ ଦ୍ୱନ୍ଦ୍ୱ ନାହିଁ । ସବୁର ଭିତରକୁ ଯାଇ କାରଣ ସବୁକୁ ଦେଖିବାକୁ ଏବଂ ବୁଝିବାକୁ ମନ ବଳିଲାଣି । ଥରେ ଥରେ ମୋତେ ଲାଗେ- ଦିବ୍ୟ ଜନନୀ ବୋଧହୁଏ ଚିତ୍ତଭାଇଙ୍କ ରୂପରେ ମୋତେ ସେହି ଅନନ୍ତଙ୍କ ଆଡ଼କୁ ନେଉଛନ୍ତି । ଚିତ୍ତଭାଇଙ୍କର ସେଇ ଗୋଟିଏ କଥା- ''ଆମେ ମନ କଲେ ନିଶ୍ଚୟ ପାରିବା, ଆମେ ଶ୍ରୀଅରବିନ୍ଦଙ୍କୁ ସିଧା ପଢ଼ି ବୁଝିପାରିବା''- ମୋର ଜୀବନକୁ ଆଜି କେତେ ରଙ୍ଗରେ ରଙ୍ଗୀନ କରି ଦେଇଛି । ଶ୍ରୀଅରବିନ୍ଦଙ୍କୁ ଓ ମାଆଙ୍କୁ ପଢ଼ିବା ସଙ୍ଗେ ସଙ୍ଗେ ଜୀବନ ବଂଚିବାକୁ ମୋତେ ନିଜକୁ ବାଧ କରିବାକୁ ହୋଇନାହିଁ । ସ୍ୱତଃ ସବୁକିଛି ହୋଇ ଚାଲୁଛି । ପଇସାପତ୍ର କ୍ଷେତ୍ରରେ ଶ୍ରୀଅରବିନ୍ଦ 'ମା' ବହିରେ ଯେଉଁ କଥା ସବୁ ଲେଖିଛନ୍ତି ତାହାକୁ ମୁଁ ଚିତ୍ତଭାଇଙ୍କ କ୍ଷେତ୍ରରେ ଦେଖିଛି । ପଇସାପତ୍ର, କ୍ଷମତା ଓ ସବୁକିଛି ଥାଇ ମଧ କେତେ ସୁନ୍ଦର ଭାବରେ ସେ ମାଆଙ୍କ ପାଇଁ ଜୀବନ ବଂଚିଛନ୍ତି । 'ବିଶ୍ୱକୁ ଗବାକ୍ଷ' ଯେତେବେଳେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଲା ତା' ପରେ ପରେ ମୁଁ ଭୁବନେଶ୍ୱର ଯାଇଥାଏ । ସକାଳୁ ଚାଲି ଚାଲି ଯାଉଥିବା ବେଳେ କହି ପକେଇଲି- ଯେଉଁ ବହିସବୁ ଆଗରୁ ପୁରସ୍କାର ପାଇଛନ୍ତି ସେଗୁଡ଼ିକ ଆପଣଙ୍କ ବହି ତୁଳନାରେ କିଛି ନୁହେଁ, ଆପଣଙ୍କର ସବୁ ବହି ପୁରସ୍କୃତ ହେବାର ଯୋଗ୍ୟ । ଉତ୍ତର ଯାହା ପାଇଲି ତାହା ଆଉ କ'ଣ କହିବି ? ମୁଣ୍ଡ ନଇଁ ଗଲା । ସଙ୍ଗେ ସଙ୍ଗେ ଚିତ୍ତଭାଇ କହିଲେ- ''ମୁଁ କ'ଣ ପୁରସ୍କାର ପାଇଁ ଲେଖୁଛି କି ? ତାହା କ'ଣ ଆମର ରାସ୍ତା ? ଆମେ ପରା ମାଆଙ୍କୁ ପଢୁଛନ୍ତି, ତାହା କ'ଣ ଆମର ରାସ୍ତା ?'' ସେଇଠାରୁ ଧାରଣା ହେଲା ଜଣେ ସୃଜନଶୀଳ ମଣିଷ ଯାହା କରିବ ସବୁକିଛି ସୃଜନାତ୍ମକ ହେବ । ଗଢ଼ିବାରେ ଯାହାର ଆନନ୍ଦ, ମାଆଙ୍କ କାମରେ ହିଁ ଯାହାର ଆନନ୍ଦ ସିଏ ଫଳ ପାଇଁ କାହିଁକି ବ୍ୟାକୁଳ ହେବ ? ସବୁଠାରୁ ଅତି କମ୍‌ରେ ଯାହା ମୋ ପାଇଁ ଦରକାର ସେଇ ଅନୁସାରେ ମୁଁ ଯାହା ରୋଜଗାର କରୁଛି- ଖରଚ କରୁଛି । ଆଉ ସବୁ କିଛି ମାଆଙ୍କର, ତେଣୁ ଗୋଟିଏ ଖାତା କରିଛି ''ମୁଁ ରକ୍ଷକ, ମାତ୍ର ମାଲିକ ନୁହେଁ ।'' 'ମାନବ ଯୁଗଚକ୍ର'ରୁ ଜାଣିଛି ଯେ ଶିକ୍ଷାକ୍ଷେତ୍ରରେ ଜଣେ ମଣିଷକୁ ବେଶୀ ସହଯୋଗ କରିହେବ । ତେଣୁ ମୋର ଅର୍ଥକୁ ମୁଖ୍ୟତଃ ଶିକ୍ଷାକେନ୍ଦ୍ରରେ ଖରଚ କରିବି । ଗୋଟିଏ ପଇସା ମଧ

ମାଆଙ୍କର, ତେଣୁ ସବୁ କିଛିକୁ ରକ୍ଷକ ଭାବରେ ମୋତେ ଖରଚ କରିବାକୁ ହେଉଛି । ବେଳେ ବେଳେ କୃପଣ ବୋଲି ମୋ ନାଆଁରେ ବେଶ୍ କୁଖ୍ୟାତି ଅଛି । କୌଣସି ଅଡୁଆ ଆସିଲେ ଚିତ୍ତଭାଇଙ୍କର ସେଦିନର କଥା "ଏହା କ'ଣ ଆମର ରାସ୍ତା ?" କୁ ମନ ପକେଇଲେ ଦ୍ୱନ୍ଦ କେଉଁ ଆଡ଼କୁ ଅବଶ୍ୟ ଚାଲିଯାଉଛନ୍ତି ଏବଂ ପୁଣି ରାସ୍ତା ସଫା ଦେଖାଯାଉଛି । କାରଖାନା ଜୀବନରେ ମଧ୍ୟ ମୁଁ ସଚେତନ ହୋଇପାରିଛି । କାମ କରିବାର ଆନନ୍ଦ ପାଇଁ ଏଠିକୁ ଅଧିକାଂଶ ଆସନ୍ତି ନାହିଁ । କାମ କଲା ବେଳେ ମଝିରେ ମଝିରେ ମୋର ମନ ତୁଳନା କରିବସେ । କାରଖାନାରେ ମଧ୍ୟ ଡାଏରୀଟିଏ ଅଛି । ପ୍ରତ୍ୟେକ ଦିନ କ'ଣ ସବୁ କରୁଛି ଏବଂ ପ୍ରତ୍ୟେକ କାମ ଭିତରୁ କ'ଣ ସବୁ ଶିଖୁଛି ତାହାକୁ ଅବଲୋକନ କରୁଛି । ଯେତେବେଳେ ତୁଳନା ଆସେ ସେତେବେଳେ ମନକୁ ଚିତ୍ତଭାଇଙ୍କର ସେଦିନର କଥା ଆସିଯାଏ "ତାହା କ'ଣ ଆମର ରାସ୍ତା ?" ସବୁ କିଛି ଠିକ୍ ହୋଇଯାଏ ଏବଂ ପୁଣି ଆନନ୍ଦର ସହିତ କାମରେ ମାତିଯାଇ ହୁଏ ।

ଶ୍ରୀଅରବିନ୍ଦଙ୍କୁ ନିଜର ପ୍ରତ୍ୟେକ କ୍ଷଣରେ କେମିତି ବଂଚିହେବ ବୋଲି ଯଦି ମୋତେ କେହି ପଚାରେ ତେବେ ମୁଁ କହିବି ଯେ ଚିତ୍ତଭାଇଙ୍କର ଲେଖା ଏବଂ ଜୀବନକୁ ଦେଖିନେଇ ପାରିଲେ ଜାଣିପାରିବ ଏବଂ ନିଜେ କେମିତି ବଂଚିପାରିବ ତାହାର ଏକ ଜୀବନ୍ତ ଦୃଷ୍ଟାନ୍ତ ମିଳିଯିବ ଏବଂ ଅସମ୍ଭବ ବୋଲି ଯେଉଁ ଶବ୍ଦ ଆମ ପାଖରେ ରହିଛି ତାହାର ଗୁରୁତ୍ୱ ମଧ୍ୟ କମିଯିବାରେ ଲାଗିବ ଏବଂ ଖୁବ୍ ଉତ୍ସାହ ମିଳିପାରିବ । ଭୟ କରିବା ମୋର ଗୋଟିଏ ସ୍ୱାଭାବିକ ଗୁଣ । ଟିକିଏ ଟାଣ କରି କହିଲେ ମୁଁ ଆଖି ଛଳ ଛଳ କରେ ଏବଂ ଭିତରେ ପ୍ରବଳ ଭୟ କରେ । "ଜଙ୍ଗଲ ଚିଠି"ରେ ପିଲାମାନଙ୍କ ବିଷୟରେ ବର୍ଣ୍ଣନା କରି ଚିତ୍ତଭାଇ ଯେଉଁସବୁ କଥା ଲେଖିଛନ୍ତି ତାହା ମୋତେ ନିଜ ପାଖକୁ ଯିବାରେ ଏବଂ ଭୟ ଦୂରେଇବାର ଏକ ବାସ୍ତବ ରୂପକୁ ମୋ ପାଖରେ ପହଞ୍ଚେଇବାରେ ସହଯୋଗ କରିଛି । କଥା କହୁ କହୁ ମୁଣ୍ଡ କୁଣ୍ଡେଇବା, ନଖକୁ ମାଟିରେ ଆମ୍ପୁଡ଼ିବା ଇତ୍ୟାଦି ଯେଉଁ ସବୁ ଭୟ ମୋ ପାଖରେ ଥିଲା ତାହାକୁ ଏବେ ଦେଖିବାରେ ଲାଗିଛି । ଏଠି କାରଖାନାରେ ଯୋଗ ଦେବା ଦିନଠାରୁ ଲକ୍ଷ୍ୟ କରିଛି - ସମସ୍ତେ ଯେପରି ଭୟ କରିବାକୁ ବାଧ୍ୟ । ଯେଉଁମାନେ ବରିଷ୍ଠ କାରିଗର ସେମାନଙ୍କୁ ଏଠି 'ସାହେବ' ବୋଲି ଡକାଯାଏ । ଏହା ମୋଟେ ମୋର ପସନ୍ଦ ହୋଇନାହିଁ । ମୁଁ ଆସିବା ପରେ ପରେ ସମସ୍ତଙ୍କୁ 'ଭାଇ' ଡାକୁଛି । ମଣିଷ ମଣିଷ ଭିତରେ ଦୂରତା ଅବଶ୍ୟ କିଛିଟା ଆମ କାର୍ଯ୍ୟାଳୟରେ କମିଛି । ମିତ୍ରଟିଏ ନ ହେବା ଯାଏ କାରଖାନାର ସମସ୍ୟାକୁ ଆପଣାର ଭାବରେ ମୋଟେ ଆଲୋଚନା କରି ହେବନାହିଁ । ଏବେ ସବୁ ସମସ୍ୟାକୁ ସିଧାସଳଖ ଟିପି

ରଖୁଛି ଏବଂ ଦରକାର ବେଳେ ଭାଇମାନଙ୍କ ସହିତ ଆଲୋଚନା କରି ହେଉଛି । ଆଗରୁ ଜଣେ କହୁଥିଲା ଏବଂ ସମସ୍ତେ ବାଧ ହୋଇ କରୁଥିଲେ ଏବଂ ନିଜର ମୋଟେ ଭାଗ ରହୁ ନଥିଲା । ଏବେ ସମସ୍ତେ ଆଲୋଚନା କରିବା ଦ୍ୱାରା ସବୁ କ୍ଷେତ୍ରରେ ସହଯୋଗ ବଢ଼ିଛି । ଯେତେବେଳେ ଏଠି ଜଣେ ନିଜର କ୍ଷମତା ଦେଖେଇବାକୁ ବାହାରେ ଏବଂ ତା'ର ସବୁ କଥାକୁ ଅନ୍ୟ ମଣିଷମାନଙ୍କ ଉପରେ ଚାପି ଦେବାକୁ ବସେ ସେତେବେଳେ ମୁଁ ରହିପାରେନା, ସଙ୍ଗେ ସଙ୍ଗେ ଆଲୋଚନା କରେ ଏବଂ କହେ ''ଜଣେ ମଣିଷକୁ ଚାପିଦେଇ କାରଖାନା ମୋଟେ ଆଗକୁ ଯିବନି ଏବଂ କାରଖାନାର ଉନ୍ନତି ହିଁ ଆମର ଏଠିକାର ଲକ୍ଷ୍ୟ, ନିଜର ଅହଂକାରର ପ୍ରୟୋଗ ମୋଟେ ଆମର ଲକ୍ଷ୍ୟ ନୁହେଁ''। ଏତିକି କଥା କହିବା ପରେ ଆମେ ପୁଣି ଆଲୋଚନା ଭିତରକୁ ଆସିପାରୁଛୁ । ସିଧା ସଳଖ ମୁଣ୍ଡ ଉଠାଇ କଥା କହିବାର ଯେଉଁ ସାହସ ତାହା ଚିତ୍ତଭାଇଙ୍କ ଠାରୁ ବେଶୀ ପାଇଛି ।

କାଦବରାଙ୍କ ଶିବିରରେ ଚିତ୍ତଭାଇ ଗୋଟିଏ ବିଷୟରେ ଆଲୋଚନା କରୁଥିଲେ- ଆଗାମୀ ପାଞ୍ଚ ବର୍ଷରେ ଆମର ଯୋଜନା । ଅବଶ୍ୟ ପୂର୍ବରୁ ମୁଁ ଗୋଟିଏ ବର୍ଷପାଇଁ ମୋର କାର୍ଯ୍ୟକ୍ରମ କ'ଣ ସବୁ କରିବି ତାହାକୁ ସ୍ଥିର କରୁଥିଲି ଏବଂ ନିଜକୁ ସେଇ ଅନୁସାରେ ଗାଇଡ୍ କରୁଥିଲି । ଯୋଜନା ନିଜେ ନ କଲେ ଜଣେ କେତେବେଳେ କ'ଣ କରିବ ଜାଣିବ କେମିତି ? ଯୋଜନା ବ୍ୟତିରେକେ ଜଣେ ଏକ ପାଖିଆ ପ୍ରଗତି କରିପାରେ କିନ୍ତୁ ସବୁ ଦିଗକୁ ଦେଖିବ କେମିତି ? କାରଖାନାରେ କାମ କରିବା ସମୟକୁ ବାଦ ଦେଲେ ଜଣେ ଯଦି ନିଜର କିଛି ଯୋଜନା ନ କରିଥାଏ ତେବେ ସମୟ କେବଳ ଟି.ଭି କିମ୍ବା ସିନେମା ଦେଖାରେ ଚାଲିଯାଏ । ଚିତ୍ତଭାଇଙ୍କର 'ଗ୍ରନ୍ଥ ମନ୍ଥନ' ମୋତେ ଖୁବ୍ ସହଯୋଗ କରିଛି ନିୟମିତ ଭାବରେ ପଢ଼ିବା ସହିତ ଭଲ ଭଲ ବହି ସଂଗ୍ରହ କରିବାରେ । ଆଗରୁ ଯେଉଁ ବହିସବୁ ପଢୁଥିଲି, କିଛି କିଛି- ମୋତେ ଭଲ ଲାଗୁଥିବା ଅଂଶରୁ ସଂଗ୍ରହ କରୁଥିଲି । କିନ୍ତୁ ଏବେ ପ୍ରତ୍ୟେକ ବହିକୁ ପଢ଼ିବା ସଙ୍ଗେ ସଙ୍ଗେ ସେଥିରୁ ଯାହା କିଛି ମୋତେ ଛୁଉଁଛି ତାହାକୁ ''ଶ୍ରଦ୍ଧାବାନ୍ ଲଭତେ ଜ୍ଞାନମ୍''ର ନାଆଁ ଦେଇ ଗୋଟିଏ ଖାତା କରିଛି, ସେଇଥିରେ ସଂଗ୍ରହ କରୁଛି । ଏବେ ପଢ଼ିବା ସହିତ ଲେଖିବା ମଧ୍ୟ ହେଇଯାଉଛି । ଯୋଜନା କରିବା ଦ୍ୱାରା ମୋର ବେଶି ଲାଭ ହୋଇଛି କାରିଗରୀ ପାଠ ପଢ଼ିବାରେ । ଚିତ୍ତଭାଇଙ୍କ ସହ କଥା ହେଲାବେଳେ ଅନୁଭବ ହୁଏ ଜଣେ ବହୁତ କିଛି ପଢିଲେ ଦୃଷ୍ଟି ନିଶ୍ଚୟ ପ୍ରସାରିତ ହେବ । ଏବେ ସଂସ୍କୃତ ଶିଖିବା ସହିତ ଉପନିଷଦ ମଧ୍ୟ ପଢ଼ା ଚାଲିଛି । ଏଇ କିଛି ଦିନ ହେବ ଉପନିଷଦର ଶ୍ଳୋକ ସବୁକୁ ମୁଖସ୍ଥ କରୁଛି ଏବଂ ଲେଖୁଛି ।

ଏହା ଭିତରେ ଗୀତାକୁ ୩ଥର ପଢ଼ିବା ସହିତ ଲେଖିବି ସାରିଲିଣି । ସଂସ୍କୃତ ଶ୍ଳୋକ ସବୁକୁ ସବୁବେଳେ ମନେ ରଖିବାକୁ ମୋର ଖାତାମାନଙ୍କର ନାଆଁ ମଧ ଗୀତା ଓ ଉପନିଷଦକୁ ସଂଗ୍ରହ କରିଛି ଯଥା- ଶ୍ରଦ୍ଧାବାନ ଲଭତେ ଜ୍ଞାନଂ, ଯୋଗଃ କର୍ମସୁ କୌଶଳମ୍, ଅଭ୍ୟାସ ଯୋଗ ଯୁକ୍ତେନ, ସ୍ୱାଧ୍ୟାୟ ଜ୍ଞାନ ଯଜ୍ଞାଶ୍ଚ, ଅସକ୍ତୋ ହ୍ୟାଚରନ୍ କର୍ମ, ଜ୍ଞାନ ସଂଛିନ୍ନ ସଂଶୟମ୍, ହିରଣ୍ମୟେନ ପାତ୍ରେଣ ସତ୍ୟସ୍ୟାପିହିତଂ ମୁଖମ୍ ।

ଥରେ ରମେଶ ପରୀକ୍ଷା ଦେବାକୁ ଏଠିକୁ ଆସିଥିଲା । ଦୁହେଁ ଇନ୍ଦିରା ଗାନ୍ଧୀ ପାର୍କ ଯାଇଥିଲୁ । ଚିଉଭାଇଙ୍କ ବିଷୟରେ କଥା ହେଉଥିଲୁ ସିଏ କହିଲା ଦାମଭାଇ ଏତେ ଦ୍ୱନ୍ଦରେ ରହିବା ଅପେକ୍ଷା ଚିଉଭାଇଙ୍କ ପାଖକୁ ଚିଠି ଦିଅ, ମୁଁ ନେଇଯିବି । ମୁଁ ଚିଠି ଲେଖିଲି । ପାଖା ପାଖି ଚାରିପୃଷ୍ଠାର ଚିଠି । ରମେଶ ଚିଠି ନେଇ ଗଲା । ଅପେକ୍ଷା କରିଛି ଚିଉଭାଇଙ୍କ ପାଖରୁ ଉତ୍ତର ଆସିବ । କିନ୍ତୁ ଉତ୍ତର କାହିଁ ? କିଛି ଦିନ ପରେ ଭୁବନେଶ୍ୱର ଯାଇଥାଏ । ଯେବେ ଭୁବନେଶ୍ୱର ଯାଏ ଚିଉଭାଇଙ୍କୁ ଦେଖିବାକୁ ମନହୁଏ, ତେଣୁ ତାଙ୍କର ବସା ଘରକୁ ଯାଏ । ସେଦିନ ଚିଉଭାଇ ମୋତେ ଦେଖି ଦେଇ ସଙ୍ଗେ ସଙ୍ଗେ କହିଲେ- ''ଏମିତି ସବୁ ଚିଠି ଲେଖାଯାଏ ? ପୁରା ଘରଟିକୁ ଖୋଲି ଦେଇ ଚିଉଭାଇଙ୍କୁ ଘରକୁ ନିମନ୍ତ୍ରଣ କଲାଭଳି ଚିଠିଟି । ଆଜି କ୍ଲାସ୍‌ରେ ରହିବ ତ ? ତେବେ କ୍ଲାସ୍‌ରେ କଥା ହେବା ।'' ବାବୁନି ଓ ମୁଁ ଦୁହେଁ କ୍ଲାସକୁ ଗଲୁ । ଚିଉଭାଇ ଭାଗ୍ୟଧରଭାଇ ସାଙ୍ଗରେ ଗଲେ । କ୍ଲାସ୍‌ରେ ସେଦିନ ଦିବ୍ୟଜୀବନ ଆଲୋଚନା ହେବାର ଥିଲା । ଅଳ୍ପ କିଛି ରବିଭାଇ ପଢ଼ିଲେ । ଚିଉଭାଇ ଉଦାହରଣ ଦେବା ବେଳେ ମୋ ଉପରେ ନଜର ପଡ଼ିଲା, ତା'ପରେ ତ କଥା ସରିଲା, ମୁଁ ଆଉ ମୁକୁଳୁଛି କୋଉଠୁ ? ମୁଁ ଭୟରେ ଲୁଚିକରି ବସିଥିଲି କୁମୁଦିନୀ ଅପାଙ୍କ ପଛରେ, କିନ୍ତୁ ଚିଉଭାଇ ଛାଡୁଛନ୍ତି କୋଉଠୁ ? କେବଳ ତ ଗାଳି, ଆଉ ଗାଳି । ସମସ୍ତେ ଅନାଉଥାଆନ୍ତି । ମୋତେ ଲାଜ ଲାଗୁଥାଏ । ଚିଉଭାଇ ମୋର ନାଆଁ ନ ନେଇ କହୁଥାନ୍ତି ''ମଣିଷ ଏମିତି ସବୁ ଖୋଲା ହୁଅନ୍ତି ? ଜଣେ ବାହା ହେବ କି ନାହିଁ, ନିଜ ଜୀବନରେ କ'ଣ ସବୁ କରିବ, କେମିତି ଜୀବନ ବଂଚିବ ତାହା ନିଜେ ସିନା ସ୍ଥିର କରିବ, ନିଜ ଜୀବନର କଥାକୁ ନିଜେ ସିନା ବଂଚିବ, ଦ୍ୱନ୍ଦ୍ୱରେ ରହିବ କାହିଁକି ? ବିଚାର ବଢୁଥିଲେ ଦ୍ୱନ୍ଦ୍ୱ କଟି କଟି ଯାଉଥିବ, ବାପା କହି ଦେଲେ ବୋଲି ଜଣେ ରାଜି ହୋଇଯିବ କାହିଁକି, କୋଡିଏ ବର୍ଷ ତଳେ ଜଣେ ଅନ୍ୟମାନଙ୍କ କଥାରେ ରାଜି ହେଉଥିଲା କିନ୍ତୁ ଏବେ ରାଜି ହେବ କାହିଁକି ? ନିଜେ ରାସ୍ତାଟିଏ ବାଛିବ ନାହିଁ କାହିଁକି ? ନିଜେ ବାହା ହେବାପାଇଁ ବାଛିବନି କାହିଁକି ? ଇତ୍ୟାଦି ଇତ୍ୟାଦି ।'' ପ୍ରକୃତରେ କହିବାକୁ ଗଲେ ମୁଁ ବାହା ହେବା କଥା ମୋଟେ ଲେଖି ନଥିଲି, କିନ୍ତୁ

ମୋର ଦ୍ୱନ୍ଦ୍ୱର କାରଣ ଲେଖିଥିଲି । ଚିତ୍ତଭାଇ ତ ମଞ୍ଜିଟିକୁ-ମାଗୁରମାଛ ପଙ୍କରେ ଅଣ୍ଡାଳି ଧରିଲାଭଳି-ଠିକ୍‌ରେ ଧରିନେଇ ଥାଆନ୍ତି । ମୁଁ ସିନା ଲୁଚାଇବାକୁ ଚେଷ୍ଟା କରିଥିଲି କିନ୍ତୁ ପୁରା ଧରାପଡ଼ି ଗଲି । ସେଦିନ ଖୁବ୍ ଅନୁଭବ ହେଲା- ଜଣେ ଯେତେବେଳେ ଭୂମିରେ ଥାଏ ସେତେବେଳେ ଏହା ହିଁ କରିପାରେ, ଜଣେ ଯେତେବେଳେ ରାସ୍ତା ଚାଲୁଥାଏ ସେତେବେଳେ ଅନ୍ୟ ପଥିକକୁ ରାସ୍ତା ଚାଲିବାରେ ଉତ୍ସାହ ଦେଇପାରେ । ସେଦିନ ମୋର ଆହୁରି କେତେ ଅଂଧାର ଅଂଶ ଆଲୋକିତ ହେଲା । ରାସ୍ତାଟି ଯେତେ ଅସୁବିଧାଜନକ ହେଉ ପଛକେ ଜଣେ ଯେତେବେଳେ ଚାଲିବାକୁ ଆରମ୍ଭ କରେ ଏବଂ ସେହି ରାସ୍ତାଟିକୁ ବାଛିଥାଏ ସେତେବେଳେ ସବୁକିଛି ତା'ପାଇଁ ହୋଇଯାଏ ଆନନ୍ଦମୟ । ମୋର ନିଜ ପ୍ରତି ଯେଉଁ ନ୍ୟୁନ ଭାବନା ଥିଲା ତାହା ଆସ୍ତେ ଆସ୍ତେ କଟିବାରେ ଲାଗିଛି । ଚିତ୍ତଭାଇଙ୍କର ବହି ଭିତରେ ଆହୁରି ଅଧିକ ବହିର Reference ମିଳିଥାଏ । ମୋ ଜୀବନର ଶୈଳୀରେ ନିଜକୁ ବୁଝିବାକୁ ଏବଂ ମୋର ଯେ କେତେକେତେ ଅଂଶମାନ ଅଛନ୍ତି ତାହାକୁ ଜାଣିବାକୁ ଶ୍ରୀଅରବିନ୍ଦଙ୍କର ଲେଖା ସହାୟକ ହୋଇଛି ଏବଂ ଶ୍ରୀଅରବିନ୍ଦଙ୍କୁ ନିଜ ଅନ୍ତରର ଜଣେ ବନ୍ଧୁ ଓ ସଖା ଭାବରେ ଚିତ୍ତଭାଇ ଚିହ୍ନେଇଛନ୍ତି । ଶ୍ରୀଅରବିନ୍ଦଙ୍କୁ ବାବାଜୀଟିଏ କରି ମୋଠାରୁ ଦୂରେଇ ରଖିବାର ପ୍ରମାଦ ଭିତରୁ ଚିତ୍ତଭାଇ ମୋତେ ରକ୍ଷା କରିଛନ୍ତି । ସେଥିପାଇଁ ତାଙ୍କ ପାଖରେ କୃତଜ୍ଞତା ଜଣାଉଛି । ପରିବାରଠାରୁ ଆରମ୍ଭ କରି ସବୁ ଜାଗାରେ ସମସ୍ତଙ୍କୁ ମଣିଷ ବୋଲି ଭାବିବାର ଯେଉଁ ଦୃଷ୍ଟିଟି ତାହା ବୋଧହୁଏ ଚିତ୍ତଭାଇଙ୍କର । ନଚେତ୍ କାଇଁ ମୁଁ ଗାଁର ନିଜକୁ ଛୋଟ ମନେ କରୁଥିବା ପିଲା, କାଇଁ ଇସ୍ପାତ କାରଖାନା ରାଉରକେଲାର ଏକ କାରିଗର ? ଆଗରୁ ଭାଗ୍ୟ ଭାଗ୍ୟ ବୋଲି କହି ନିଜକୁ ଏତେ ଶସ୍ତା କରି ଦେଉଥିଲି ଯେ ମୋର କିଛି କରିବାର ନାହିଁ ବୋଲି ଏକ ପ୍ରକାରର ଜଡ଼ତା ଭିତରକୁ ଯାଇ ଦାୟିତ୍ୱହୀନ ହେବାର ଏକ ସୂକ୍ଷ୍ମ ମନୋବୃତ୍ତି ମୋତେ ଘୋଡ଼ାଇ ପକାଉଥିଲା । ଚିତ୍ତଭାଇଙ୍କର ବହି ଯେଉଁ ପାହାର ଦେଲା ଏବଂ ଜଣେ ଚାହିଁଲେ ସୃଜନଶୀଳ ହୋଇ ପାରିବାର ଯେଉଁ ଆଶା ଦେଲା ସେଥିପାଇଁ ମୁଁ ଚିତ୍ତଭାଇଙ୍କୁ ମୋ ଜୀବନର ଏକ ଅଂଗ ଭାବରେ ବୁଝି ପାରିଲି ।


ଦାମଭାଇ

*ମେକାନିକାଲ୍ ସପ୍*

*ରାଉରକେଲା ଇସ୍ପାତ କାରଖାନା, ରାଉରକେଲା-୧୧*

# ମାନବପ୍ରେମୀ ଚିତ୍ତଭାଇ

ମଣିଷକୁ ବାହାରୁ ଆମେ ଯେତିକି ଦେଖୁଛୁ, ସିଏ ମୋଟେ ସେତିକି ନୁହେଁ । ତା ଭିତରେ ବିରାଟ ସମ୍ଭାବନାଟିଏ ଅପେକ୍ଷା କରି ରହିଛି । ସେ ଚାହିଁଲେ ସମଗ୍ର ବିଶ୍ୱ ଚେତନାର ଅଧିକାରୀ ହୋଇପାରିବ; ଆହୁରି ଆଗକୁ କହିବାକୁ ଗଲେ, ବିଶ୍ୱାତୀତ ଚେତନାର ମଧ୍ୟ ଅଧିକାରୀ ହୋଇପାରିବ । ପୁଣି ଜ୍ଞାନରେ ପରିପକ୍ୱ ହୋଇଥିବା ମଣିଷଟିଏ ସ୍ୱତଃସ୍ଫୂର୍ତ୍ତ ଭାବରେ ତଳକୁ ନଇଁ ଆସେ । ଏହିପରି ଉତ୍ତୁଙ୍ଗ ହିମାଳୟ ସଦୃଶ ବିଶାଳ ଜ୍ଞାନର ଅଧିକାରୀ ହୋଇଥିବା ଅସାଧାରଣ ବ୍ୟକ୍ତି ହେଉଛନ୍ତି ଆମ ସମସ୍ତଙ୍କର ଅତି ପ୍ରିୟ ଚିତ୍ତଭାଇ । ତାଙ୍କ ବନ୍ଧୁତ୍ୱର ପରିସର ଖୁବ୍ ବ୍ୟାପକ । ସିଏ ପୃଥିବୀର ଅନେକ ଦେଶ ଭ୍ରମଣ କରି ବହୁତ ବଡ଼ ବଡ଼ ଦାର୍ଶନିକ, ମନସ୍ତତ୍ତ୍ୱବିତ୍ ଓ ସମାଜଶାସ୍ତ୍ରୀମାନଙ୍କ ସହିତ ବନ୍ଧୁତ୍ୱର ଡୋର ବାନ୍ଧି ସାରିଛନ୍ତି । ଏହା ବ୍ୟତୀତ ଓଡ଼ିଶାର ପୁରପଲ୍ଲୀ ତଥା ନିହାତି ମଫସଲମାନଙ୍କରେ ବାସ କରୁଥିବା ସାଧାରଣ ମଣିଷମାନଙ୍କ ପାଖରେ ନିଜକୁ ଗୋଟାସୁଦ୍ଧା ଦେଇଦେଇଛନ୍ତି ।

ସାଧାରଣତଃ କୌଣସି ବ୍ୟକ୍ତି ବୃହତ୍ତର ଚେତନା ବା ଶକ୍ତିର ଅଧିକାରୀ ହେଲେ , ସାଧାରଣ ମଣିଷଠାରୁ ଦୂରରେ ଯାଇ ଅସାଧାରଣ ହୋଇ ରହିଥାଆନ୍ତି । ମାତ୍ର ଚିତ୍ତଭାଇ, ଚେତନାର ସୋପାନରେ ଯେତିକି ଊର୍ଦ୍ଧ୍ୱକୁ ଉଠିଛନ୍ତି, ତଦନୁରୂପ ମଣିଷ ସହିତ ସେତିକି ଅଧିକରୁ ଅଧିକ ଯୁକ୍ତ ହୋଇ ରହିଛନ୍ତି । ମଣିଷର ସୁଖ ଦୁଃଖରେ ସହଭାଗୀ ହୋଇଛନ୍ତି ।

୧୯୯୨ ମସିହାର ଡିସେମ୍ବର ୨୨ରୁ ୩୧ ପର୍ଯ୍ୟନ୍ତ କଳାହାଣ୍ଡି ଜିଲ୍ଲାର ଧର୍ମଗଡଠାରେ ଶ୍ରମ ଶିବିର ହେବାର ଥାଏ । ଆମର ଏଠିକାର କେତେଜଣ ବନ୍ଧୁମାନଙ୍କ ସହିତ ସେଠାରେ ଯୋଗଦେବାର ନିଷ୍ପତ୍ତି ନେଲୁ । ନିର୍ଦ୍ଧାରିତ ଦିବସରେ ଶିବିର ଆରମ୍ଭ ହେବାର ପୂର୍ବଦିନ ସନ୍ଧ୍ୟାରେ ସେଠାରେ ଆମେ ପହଞ୍ଚିଲୁ । ଶିକ୍ଷାକେନ୍ଦ୍ରର ଏକ କୋଠରୀରେ କେତେଜଣ ବନ୍ଧୁଙ୍କ ସହିତ ଚିତ୍ତଭାଇ ହାସ୍ୟରସରେ ନିମଗ୍ନ ଥାଆନ୍ତି । ଆମେ ମଧ୍ୟ ସେଥିରେ ସାମିଲ ହୋଇଗଲୁ । ସେଠିକାର ପ୍ରତ୍ୟେକ ମଣିଷ ଅତି ଆପଣାର ମନେ ହେଲେ । ଏମାନେ ସତେ ଯେପରି ଜନ୍ମ ଜନ୍ମର ସତୀର୍ଥ ବନ୍ଧୁ ପରି ଲାଗିଲେ । ଶିବିରରେ ହେଉଥିବା ରବୀନ୍ଦ୍ର ସଂଗୀତ, ଅଧ୍ୟୟନ, କର୍ମ ଓ ବନ୍ଧୁମାନଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନ ଆଦି ପ୍ରତ୍ୟେକ କାର୍ଯ୍ୟକ୍ରମ ଆତ୍ମୀୟତାର ଭାବ ଉଦ୍ରେକ କରିବାରେ ବେଶ୍ ସହାୟକ । ସେଉଠି ଚିତ୍ତଭାଇଙ୍କ

ସହିତ ମୋର ପ୍ରଥମ ପରିଚୟ ହୁଏ । ଅଧ୍ୟୟନ ସମୟରେ ଦୁର୍ବୋଧ ତତ୍ତ୍ୱଗୁଡ଼ିକ ସହଜ ଓ ସରଳ ଭାବରେ ସମସ୍ତଙ୍କ ଆଗରେ ସେ ବାଢ଼ି ଦେଉଥିଲେ । ସେଠି ଉପସ୍ଥିତ ଥିବା ପ୍ରତ୍ୟେକ ବ୍ୟକ୍ତିଙ୍କ ଭିତରକୁ ପଶିଯାଇ ଗଣ୍ଠିଗୁଡ଼ିକ ଉନ୍ମୋଚନ କରି ଦେଉଥିଲେ । ଶ୍ରୀଅରବିନ୍ଦ, ଗାନ୍ଧୀ ଓ ରବୀନ୍ଦ୍ରନାଥଙ୍କ ଜ୍ଞାନ, କର୍ମ ଓ ଭକ୍ତିର ସ୍ୱରୂପକୁ ଏକାଧାରରେ ତାଙ୍କ ମଧ୍ୟରେ ଉପଲବ୍ଧ କରିହୁଏ ।

ପୁନଶ୍ଚ ୧୯୯୫ ମସିହା ମାର୍ଚ୍ଚ ମାସରୁ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ଭୁବନେଶ୍ୱର ଠାରେ ତିନିମାସିଆ ଶିକ୍ଷକ ପ୍ରଶିକ୍ଷଣ ଶିବିର ଆରମ୍ଭ ହେଲା । ସେହି ଶିକ୍ଷକ ପ୍ରଶିକ୍ଷଣ କାର୍ଯ୍ୟକ୍ରମରେ ଯୋଗଦେବା ସମୟରେ ଚିତ୍ତଭାଇଙ୍କ ସହିତ ସମ୍ପର୍କ ଆହୁରି ଘନିଷ୍ଠ ହୁଏ । ଗୁରୁବାର ଓ ରବିବାର ପାଠଚକ୍ରରେ ରବୀନ୍ଦ୍ର ସଂଗୀତ ବୋଲିବା, ସମ୍ମିଳନୀମାନଙ୍କରେ ସାଙ୍ଗ ହୋଇ ଖାଇବା ଆଦିର ଅନୁଭୂତି ଅବର୍ଣ୍ଣନୀୟ ।

ପ୍ରକୃତରେ ମଣିଷ ଭିତରେ ଯାହା, ବାହାରେ ମଧ୍ୟ ସେଇଆ ହେବା ଉଚିତ୍ । ଛଳନା ଓ ଅଭିନୟକୁ ସେ ମୋଟେ ପସନ୍ଦ କରନ୍ତି ନାହିଁ । କୌଣସି ବ୍ୟକ୍ତିଠାରେ ବା ନିଜ ବନ୍ଧୁମାନଙ୍କଠାରେ ମଧ୍ୟ ଏପରି ଆଚରଣ ଦେଖିଲେ ତତ୍‌କ୍ଷଣାତ୍ ଆବରଣ ଛିନ୍ନ କରିଦିଅନ୍ତି । ମାତ୍ର ଏହି ତାତ୍ପର୍ଯ୍ୟକୁ ନ ବୁଝି କେତେକ ବନ୍ଧୁ ତାଙ୍କ ପ୍ରତି ବିମୁଖ ହୁଅନ୍ତି ।

ଶ୍ରୀଅରବିନ୍ଦ ତାଙ୍କ ମୂଳ ଗ୍ରନ୍ଥମାନଙ୍କରେ ଯାହା ସବୁ ଲେଖି ଯାଇଛନ୍ତି, ତାହାକୁ ଅଧ୍ୟୟନ କରି ଖୁବ୍ କମ୍ ବ୍ୟକ୍ତି ସେହି ଭଳିଆ ଜୀବନଟିଏ ବଞ୍ଚୁଛନ୍ତି । ଏହି ଆଦର୍ଶକୁ ଗ୍ରହଣ କରିଥିବା ଅଧିକାଂଶ ଅନୁଗାମୀ ତାହା ନ କରି ପୂଜା, ବିଧି ଓ ବାହ୍ୟ ଉପଚାରର ଆଡ଼ମ୍ବରରେ ମାତି ରହୁଛନ୍ତି । ପ୍ରତୀକ ପୂଜାରେ ହିଁ ଅର୍ଥ ଓ ଶକ୍ତିର ଅଜସ୍ର ବିନିଯୋଗ ହେଉଛି । ସେ ସବୁ ମଣିଷ ସମାଜର ଅଗ୍ରଗତିରେ ଓ ଶିକ୍ଷାର ନବୀକରଣ ନିମନ୍ତେ ବ୍ୟବହୃତ ହେଲେ, ଭଗବତ୍ କାର୍ଯ୍ୟ ତ୍ୱରାନ୍ୱିତ ହୋଇପାରନ୍ତା । ମଣିଷ ଭିତରେ ବ୍ୟବସାୟିକ ପ୍ରବୃତ୍ତି ପଶିଯିବା ଫଳରେ ଅସଲ ଉଦ୍ଦେଶ୍ୟଟି ସାଧିତ ହେବାରେ ବ୍ୟାଘାତ ଘଟୁଛି ।

ଆଜିକାର ସମାଜରେ ପ୍ରତ୍ୟେକ ମଣିଷକୁ ମଣିଷର ସମ୍ମାନ ମିଳିନାହିଁ । ବଡ଼ମାଛ ଯେମିତି ସାନ ମାଛକୁ ଗିଳି ପକାଏ, ସେମିତି ମଣିଷ ନିଜ ଅଧୀନସ୍ଥ ସତୀର୍ଥକୁ ନ୍ୟୂନ ବା ହେୟ ଦୃଷ୍ଟିରେ ଦେଖୁଛି । ଦେଶର କ୍ଷମତା ଶକ୍ତି ଓ ଅର୍ଥ ଅଳ୍ପ ଲୋକଙ୍କ ଦ୍ୱାରା ଅଧିକୃତ ହୋଇ ରହିଛି । ଅଧିକାଂଶ ମଣିଷ ଏଥିରୁ ବଞ୍ଚିତ ହୋଇଛନ୍ତି । ଏଥିପାଇଁ ଚିତ୍ତଭାଇଙ୍କ ହୃଦୟରେ ଗଭୀର ଦୁଃଖ । ମାତ୍ର ଏହା ବେଶୀ ଦିନ ରହିପାରିବ ନାହିଁ । ପରିବର୍ତ୍ତନ ଅବଶ୍ୟମ୍ଭାବୀ ।

ଆମ ଓଡ଼ିଶାବାସୀଙ୍କ ପରମ ସୌଭାଗ୍ୟ ଯେ ଏ ଦରଦୀ ବନ୍ଧୁଜଣକ ଆମ ସଭିଙ୍କ ଭିତରେ ଅଗ୍ନିଟିଏ ସଂଯୋଗ କରିଦେଇଛନ୍ତି। ଆମେ ନିଜ ନିଜର କ୍ଷୁଦ୍ର ପରିସର ଭିତରେ ଆଉ ଆରାମରେ ନିଶ୍ୱାସ ମାରି ପାରିବା ନାହିଁ। ଆମେ ପରସ୍ପରକୁ ଲୋଡ଼ିବାକୁ ବାଧ୍ୟ ହେବା।

ତାଙ୍କ ଲେଖାମାନଙ୍କରେ ପ୍ରତ୍ୟେକ ଅଞ୍ଚଳର କଥିତ ଭାଷାଗୁଡ଼ିକ ପ୍ରୟୋଗ କରିବାର ଦେଖାଯାଏ। ତେଣୁ ସେ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳ ବା ପ୍ରାନ୍ତର ବୋଲି ଅନୁଭୂତ ହୁଅନ୍ତି ନାହିଁ। ପୃଥିବୀର ଯେଉଁ ଦେଶକୁ ସେ ଯାଇଛନ୍ତି ସେଠିକାର ଶିଶୁମାନେ କହନ୍ତି ଯେ- ''ଇଏତ ଆମରି ଭଳି କଥା କହୁଛି, ପୋଷାକ ପିନ୍ଧିଛି, ଭୋଜନ କରୁଛି, ଇଏ ଆମରି ଦେଶର ହିଁ ଲୋକ।''

କଥାରେ ଅଛି ମହାପୁରୁଷମାନଙ୍କର ଦର୍ଶନ ଲାଭ କରିବା ମଧ୍ୟ ବହୁ ତପସ୍ୟାର ଫଳ। ମହର୍ଷି ବଶିଷ୍ଠଙ୍କ ସହିତ କେତେକ ମୁହୂର୍ତ୍ତର ସାକ୍ଷାତ୍ ଫଳରେ ବିଶ୍ୱାମିତ୍ର ଯେଉଁ ପୁଣ୍ୟଫଳ ଓ ଶକ୍ତିର ଅଧିକାରୀ ହୋଇଥିଲେ, ତା' ଫଳରେ ପୃଥିବୀର ଭାରକୁ ବହନ କରିପାରିଥିଲେ। ମହାପୁରୁଷ ମାନଙ୍କ ଦର୍ଶନ କଲେ ନିଜ ମଧ୍ୟରେ ଉଦାର ଭାବ ଓ ପ୍ରସାରତାର ଭାବ ଜାଗ୍ରତ ହୁଏ। ନିଜ ଭିତରେ ଥିବା ଗ୍ରନ୍ଥିଗୁଡ଼ିକର ଉନ୍ମୋଚନ ହୋଇଯାଏ। ଜଣେ ଚେତନାବନ୍ତ ବ୍ୟକ୍ତିର ଗଭୀରତାର ଓ ବିଶାଳତାର ପରିମାପ କରିବା ସାଧାରଣ ବ୍ୟକ୍ତିର ପରିସର ବାହାରେ। ଚିତ୍ତଭାଇଙ୍କ ପରି ମହାମାନବ ଏତେ ସହଜ ଭାବରେ ଆମ ସମସ୍ତଙ୍କର ପରମ ବନ୍ଧୁ ହୋଇପାରିଛନ୍ତି, ତାହାହିଁ ଆମ ପାଇଁ ଗୁରୁତ୍ୱପୂର୍ଣ୍ଣ ତଥା ଗୌରବମୟ କଥା।

**ସୁରେନ୍ଦ୍ର ନାୟକ**
*ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର*
*କୁଚିଦା, ବରଗଡ଼*

# ଏକ ଚିତ୍ତାକର୍ଷକ ଅନୁଭୂତି

ଚିତ୍ତଭାଇଙ୍କ ସ୍ମୃତି ଏକ ଚିତ୍ତାକର୍ଷକ ଅନୁଭୂତି କହିଲେ ଅତ୍ୟୁକ୍ତି ହେବନାହିଁ। ତାଙ୍କ ସମ୍ପର୍କରେ କେଉଁଠୁ ଆରମ୍ଭ କରି କେଉଁଠି ଶେଷ କରିବି ଭାବିପାରୁନି। ଭୁବନେଶ୍ୱର ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ଗୋଟିଏ ଟ୍ରେନିଙ୍ଗ ଚାଲିଥାଏ, ଓଡ଼ିଶାର ସମସ୍ତ ଶିକ୍ଷାକେନ୍ଦ୍ରରୁ କିଛି ଶିକ୍ଷକ ଓ କିଛି ଶିକ୍ଷୟିତ୍ରୀ ଟ୍ରେନିଙ୍ଗ ନେଇପାରିବାର ସୁବ୍ୟବସ୍ଥା ଥାଏ। ସେଇ ସମୟ ଯେ କେମିତି କଟିଯାଏ ନିଜେ ଅନୁଭବ କଲେ ବୁଝିହେବ।

ପ୍ରକୃତରେ ଟ୍ରେନିଙ୍ଗ ନେବାର ସୁବର୍ଣ୍ଣ ସୁଯୋଗ ପାଇଥିଲି ବାପାଙ୍କ ପାଇଁ । ବି.ଏ ପରୀକ୍ଷା ପରେ ବାପା ଯେତେବେଳେ ପଚାରିଲେ 'ତୁ କ'ଣ ଚାହୁଁ ଏ ଟ୍ରେନିଙ୍ଗ ନେବାକୁ ? ମୁଁ ସେତେବେଳକୁ ମନକୁ ଦୋଦୁଲ୍ୟମାନ ନ କରି ସଂଗେ ସଂଗେ ହଁ କରି ଦେଇଥିଲି । ବି.ଏ ପଢ଼ିବା ସମୟରେ ଓଡ଼ିଆ ଅନର୍ସ ଥିବା ହେତୁ ବିଭିନ୍ନ ବହି ପଢ଼ିବାର ସୁଯୋଗ ମିଳିଥାଏ । ତା'ଛଡ଼ା ଆଶ୍ରମର ବହୁ ପତ୍ରିକା ଘରକୁ ମଗାହୁଏ । ସେ ମଧ ଆଉ ଗୋଟିଏ ସୁଯୋଗ । ଏମିତି ବହି ପଢୁ ପଢୁ ଗୋଟେ ଦିନ ଆସେ ଯେଉଁଦିନ ହାତରେ ପଡ଼ିଯାଏ ଚିତ୍ତଭାଇଙ୍କ ଲେଖାଟିଏ । ମୁଁ ତାଙ୍କ ଲେଖା ଯେତେ ସବୁ ପଢ଼େ ଲାଗେ ସମାଲୋଚନାରେ ପୂର୍ଣ୍ଣ । ଆଉ ବି ଲାଗେ ସାରା ପୃଥିବୀଟା କ'ଣ ତାଙ୍କ ଆପଣାର !! କି' ଆନ୍ତରିକତା ଓ ଆକୁଳତା ଭରି ରହିଥାଏ ସାରା ମଣିଷ ସମାଜ ପାଇଁ ! ସେଇ ସମୟରେ ଛୋଟ ପିଲାପରି ବାପାଙ୍କୁ ପୁଣି ପଚାରେ । ଯଦିଓ ଚିତ୍ତଭାଇଙ୍କ ଲେଖାରେ ସକରାତ୍ମକତା ଭରି ରହିଛି କିନ୍ତୁ ମୋତେ ପୂରା ନକାରାତ୍ମକ ସମାଲୋଚନା ପରି ଲାଗୁଛି । କିନ୍ତୁ ବାପା ଜୋରଦେଇ କୁହନ୍ତି ମୋର ଧାରଣା ଯଥାର୍ଥ ନୁହେଁ । ତାଙ୍କର ଅଗାଧ ପାଣ୍ଡିତ୍ୟ ଯୋଗୁଁ ମା' ଶ୍ରୀଅରବିନ୍ଦଙ୍କର ଅନେକ ବହି ଆଜି ଆମ ଓଡ଼ିଆ ଭାଷାରେ ଅନୁବାଦିତ ହୋଇଛି, ଯାହା ଆଜି ସାରା ଓଡ଼ିଶାବାସୀଙ୍କ ପାଇଁ ଅମୂଲ୍ୟ । ସେ ସବୁ ବହି ଭିତରେ ପଶି, ତନ୍ନ ତନ୍ନ କରି ଦେଖି ତାକୁ ଭଲ ଭାବରେ ନିଜ ଭିତରେ ବୁଝି, ତା'ପରେ ଅନୁବାଦ କରିବାର ପ୍ରୟାସ କରିଥାନ୍ତି । ତେଣୁ ତାଙ୍କର ଲେଖାକୁ ଏକ ସହଜ ଜିନିଷ ବୋଲି ମନେ କରିବା ଠିକ୍ ନୁହେଁ । ଚିତ୍ତଭାଇଙ୍କୁ ଜାଣିବାର ଏ ହେଲା ମୋର ପଢ଼ା ସମୟର ଅନୁଭୂତି ।

ପୁଣି ତାଙ୍କ ସଂସ୍ପର୍ଶରେ ଆସିବାର ଏକ ସୁଯୋଗ ଜୁଟିଯାଏ ଟ୍ରେନିଙ୍ଗ୍ ନେବା ସମୟରେ । ହଠାତ୍ ମୋ ଶରୀର ଅସୁସ୍ଥତା ଚିତ୍ତଭାଇଙ୍କ ସଂସ୍ପର୍ଶରେ ଆସିବାର ଏକ କାରଣ ହେଲା । ତାଙ୍କର ଆତ୍ମୀୟତାଭରା ସେବା, ଯତ୍ନ ପାଇ ମୁଁ ମାନସିକ ସ୍ତରରେ ପ୍ରଥମେ ସୁସ୍ଥ ହୋଇଯାଇଥିଲି । ପରେ ପରେ ଶାରିରୀକ ସ୍ତରରେ ମଧ ଖୁବ୍ ଶୀଘ୍ର ସୁସ୍ଥ ହୋଇଗଲି । ନିଜ ପରିବାର ବାହାରେ ବି କେହି ଜଣେ ଅତି ଆପଣାର ହୋଇ ସେବା, ଯତ୍ନ ଏବଂ ସାନ୍ତ୍ୱନା ଦେଇପାରେ, ଔଷଧ ପଥି ପରି, କଥା, ବାର୍ତ୍ତା, ଉପଦେଶ ଦେଇପାରେ ଏକଥା ମୁଁ ଭାବି ପାରୁନଥିଲି । ସେଦିନର ସେଇ ଅନୁଭୂତି ମୋର ଅଭୁଲା । ଗତ କାଲିର ସମାଲୋଚକ ଆଜି ମୋର ପାଖରେ ଅତି ଆପଣାର ସେହି ଅନନ୍ୟ ଚିତ୍ତଭାଇ ।

ଠିକ୍ ବର୍ଷେ ପରେ ମୁଁ ଚାଲିଆସେ ଆଶ୍ରମକୁ । କିନ୍ତୁ ଚିତ୍ତଭାଇଙ୍କ ସହ ପତ୍ରାଳାପ ରହିଥାଏ (ଏବଂ ଏବେ ବି ରହିଛି) । ଚିଠିଟିଏ ଦେଲେ ତାହାର ଉତ୍ତର

ପାଇବା ପାଇଁ ଏତେ ଟିକେ ବି ବିଳମ୍ବ ହୁଏନାହିଁ । ସେ ତାଙ୍କର ମୂଲ୍ୟବାନ କର୍ମରତ ଜୀବନ ଭିତରୁ ସମୟ ଟିକେ ବାହାର କରି ସମସ୍ତଙ୍କୁ ଆଗକୁ ଆଗେଇବାର ଉସାହଟିଏ ବାଢ଼ିଦିଅନ୍ତି ।

୨୦୦୧ ମସିହା ମାର୍ଚ୍ଚ ମାସର ସେଇ ପ୍ରଥମ ଦିନରେ ମୁଁ ପାଇଥିଲି ଆତ୍ମୀୟତାଭରା ହୃଦୟସ୍ପର୍ଶୀ ଚିଠିଟିଏ ଚିତ୍ତଭାଇଙ୍କର । ଏପର୍ଯ୍ୟନ୍ତ ସାଇତି ରଖିଛି ତାକୁ, କାରଣ ଯେତେଥର ମୁଁ ସେଇ ଚିଠିଟି ପଢ଼େ ସେଇ ମୁହୂର୍ତ୍ତରେ ଖୁବ୍ ଆନନ୍ଦ ଅନୁଭବ କରେ । ଚିଠିର ଦୁଇ, ତିନି ଧାଡ଼ି ଲେଖିବାର ପ୍ରବଳ ଇଛାକୁ ଦବେଇ ନ ଦେଇ ତଳେ ଲେଖୁଛି । କାରଣ ମୋର ବିଶ୍ୱାସ ଏଇ ଦୁଇ ତିନି ଧାଡ଼ି ମା' ଶ୍ରୀଅରବିନ୍ଦଙ୍କର ପଥର ପଥିକ ମାନଙ୍କୁ ଆହୁରି ନିଜର କରିନେବ ଏବଂ ମା'ଙ୍କ ବାହୁ ଛାୟାତଳେ ସମସ୍ତଙ୍କୁ ଏକତାବଦ୍ଧ ହୋଇ ଯିବାର ଅନୁଭବଟି ନିଶ୍ଚିତ ରୂପରେ ମିଳିପାରିବ । ଚିତ୍ତଭାଇଙ୍କ ଚିଠିର କିଛି ଅଂଶ :

''ଦୀର୍ଘ ୬ବର୍ଷ ହେଲା ଆଶ୍ରମକୁ ସିନା ଯାଇନାହିଁ, କିନ୍ତୁ ସମସ୍ତଙ୍କୁ ସେହିପରି ନିକଟରେ ଅନୁଭବ କରିପାରୁଛି, ଏହି ସବୁର ଜନନୀ ଜଣେ, ଏତିକି ସତ୍ୟ ନିଜ ଭିତରେ ପ୍ରବେଶ କଲେ ଆମେ ସମସ୍ତେ ନିଜକୁ ଗୋଟିଏ ପରିବାରର ବୋଲି ଅନୁଭବ କରିବାରେ ଆଉ କୌଣସି ବାଧା ରହିବ ନାହିଁ ।''

ଏଇ ଆମ ଚିତ୍ତଭାଇ, ଆମ ଦିବ୍ୟ ଜନନୀଙ୍କର ଦିବ୍ୟ ସନ୍ତାନ ।

ମା' ଙ୍କ ପାଖରେ ମୋର ପ୍ରାର୍ଥନା ଚିତ୍ତଭାଇଙ୍କ ପାଇଁ । ସେ ଆହୁରି ତାଙ୍କୁ ଦୀର୍ଘାୟୁ କରି ରଖନ୍ତୁ, ସୁସ୍ଥ ସବଳ ରଖନ୍ତୁ । ପ୍ରସ୍ଫୁଟିତ ହେଉ ତାଙ୍କ କଲମ ମୁନରେ ଅନେକ ଅନେକ ଅପ୍ରକାଶ୍ୟ ଲେଖା, ଯେଉଁ ଲେଖା ଖାଲି ଓଡ଼ିଶାବାସୀଙ୍କ ପାଇଁ ନୁହେଁ, ସାରା ପୃଥିବୀବାସୀଙ୍କ ଚଲାପଥର ପ୍ରେରଣା ହେଉ ।

ହେ ଭାରତ ଜନନୀ, ଆହୁରି ଏମିତି ବୀରପୁତ୍ର ଧରାବକ୍ଷରେ ଗଢ଼ିତୋଳ, ଯେଉଁମାନେ ଠିକ୍ ଚିତ୍ତଭାଇଙ୍କ ପରି ପରକୁ ଆପଣାର କରିପାରିବେ; ଦୁଃଖର ସାଥୀ ହୋଇପାରିବେ, ବିପଦରେ ସାହାରା ବନିଯିବେ । ଓଡ଼ିଶାରେ ନୁହେଁ, ଭାରତରେ ନୁହେଁ ସାରା ପୃଥିବୀର ଲୋକଙ୍କ କଲ୍ୟାଣ ପାଇଁ ପ୍ରାର୍ଥନା କରିପାରୁଥିବେ ।

ଲିପିକା ଦାସ

*ଶ୍ରୀଅରବିନ୍ଦ ଆଶ୍ରମ (ପ୍ରେସ୍)*

*ପଣ୍ଡିଚେରୀ*

# ପ୍ରଜ୍ୱଳିତ ଅଗ୍ନିଶିଖା

ଆଜି ଦୀପାବଳୀର ଉତ୍ସବ ମୁଖରିତ ସନ୍ଧ୍ୟାରେ 'ପରାର୍ଥ ପଥିକ' ଚିତ୍ତଭାଇଙ୍କ ପ୍ରତି ବିନମ୍ର ପ୍ରଣତି ଜଣାଉଛି।

ଚିତ୍ତଭାଇଙ୍କ ରଚନାଗୁଡ଼ିକ ଦ୍ୱାରା ମୁଁ ଅନୁପ୍ରାଣିତ ହୋଇଛି ବୋଲି ଅନୁଭବ କରିଛି। ତଥାପି କେଉଁଠୁ ଆରମ୍ଭ କରିବି ଓ ଶେଷ କରିବି କେଉଁଠି ? ଦ୍ୱନ୍ଦରେ ପଡ଼ିଯାଇଛି। ଶବ୍ଦଗୁଡ଼ିକ ସଜାଇବାର କଳାଟିରେ ମୋର ଦକ୍ଷତା ଯେ ନାହିଁ। ତଥାପି ଲେଖିବାକୁ ଯଥାସାଧ ପ୍ରୟାସ କରୁଛି।

ପିଲାଦିନେ ପାଠ୍ୟପୁସ୍ତକ, ଖବର କାଗଜରେ ତାଙ୍କ ଲେଖା ଦେଖିଥିବା ଝାପ୍‌ସା ଝାପ୍‌ସା ମନେ ପଡୁଛି। ମାତ୍ର ଝିଅ, ପୁଅ ମାତୃଭବନ, କଟକରେ ପଢ଼ିବା ପରେ ଅନେକଥର ତାଙ୍କ ମୁହଁରୁ ଚିତ୍ତଭାଇଙ୍କ ନାଁ ଶୁଣିଥିଲି। ପ୍ରତି ରବିବାର ଦିନ ଚିତ୍ତଭାଇ ମାତୃଭବନରେ ଆଲୋଚନାଚକ୍ର କରାନ୍ତି ବୋଲି ମଧ ଶୁଣିଥିଲି। ମାତ୍ର ଯେତେଥର ତାଙ୍କୁ ଦେଖିଛି ଆଡ଼ହୋଇ ଚାଲିଯାଇଛି। ଏପ୍ରିଲ୍ ସମ୍ମିଳନୀ ବେଳେ ଥରେ ଅଧେ ତାଙ୍କ ବକ୍ତୃତା ଶୁଣିଛି। ସେତେବେଳେ ଏସବୁ ବିଷୟରେ ଏତେ ଉତ୍କଣ୍ଠା ନଥିଲା। କେବଳ ସମାଧିରେ ପ୍ରଣାମ କରି 'ତମେ ଯାହା ଭଲ ମୋ ପାଇଁ ତାହା ହିଁ କର,' କହେ। ଘରକାମ ଓ ପିଲାମାନଙ୍କ ପାଠପଢ଼ା ଦାୟିତ୍ୱ ବ୍ୟତୀତ କିଛି ବହି ପଢ଼ାପଢ଼ି କରେ।

୧୯୯୮ ମସିହା ଏପ୍ରିଲ୍ ସମ୍ମିଳନୀରେ 'ସୁହୃଦ୍' ତରଫରୁ ବହି ଦୋକାନ ମାତୃଭବନ ପରିସରରେ ଖୋଲିଥାଏ। ମୁଁ ମନୋଜ ଦାସଙ୍କର ବହି ପଢ଼ିବାକୁ ଭଲପାଏ। ତେଣୁ ସେଠାରେ ତାଙ୍କର ବହି ଗୁଡ଼ିଏ ସଜା ହୋଇଥିବାର ଦେଖି ଅଟକି ଗଲି। ବହି ଦେଖିବା ଓ କିଣିବା ଭିତରେ କେତେ ଜଣ ସୁହୃଦ୍ ଭାଇ ଓ ଭଉଣୀଙ୍କ ସହ ପରିଚିତ ହେଲି। ସେଦିନ ଚିତ୍ତଭାଇଙ୍କର ଗୋଟିଏ ବି ବହି କିଣି ନଥିଲି। ତାଙ୍କ ବହି ଗୁଡ଼ିକ ପଢ଼ିବାର ଆଗ୍ରହ ମଧ ନଥିଲା। ୬ ତାରିଖ ସନ୍ଧ୍ୟା ଅଧିବେଶନ ପରେ ଘରକୁ ଫେରିବା ବେଳେ ଫକୀରଭାଇ 'ସବାମୂଳରେ ମଣିଷ' ଓ 'ରୋହିତର ଡାଏରୀ'ରୁ (ଖଣ୍ଡେ) ଦୁଇଟି ବହି ପୁଅ ଝିଅଙ୍କ ପାଇଁ କହି ଉପହାର ଦେଲେ। ଘରେ ପହଞ୍ଚି ଜାଣିଲି ଦୁଇଟି ଯାକ ବହି ଚିତ୍ତଭାଇଙ୍କ ରଚନା। ବହିଟିଏ ପାଇଲେ ବହିର ବିଷୟବସ୍ତୁ ଜାଣିବାକୁ ଶୀଘ୍ର ଓଲଟାଇ ପକାଏ ପୃଷ୍ଠା ପରେ ପୃଷ୍ଠା। ମାତ୍ର ସେଦିନ ଯେଉଁ ବହି କିଣିଥିଲି ତାକୁ ନ ଦେଖି ପାଇଥିବା ବହି ଦୁଇଟା ଓଲଟାଇଲି। କାରଣ

କୌତୁହଳ ଥିଲା ଯେ ଫକୀରଭାଇ ଅନ୍ୟ ଲେଖକଙ୍କର ବହି ନ ଦେଇ ଦୁଇଖଣ୍ଡ ଯାକ ଚିତ୍ତରଂଜନ ଦାସଙ୍କର ବହି କାହିଁକି ଦେଲେ ?

ଅନେକ ଗପ ବହିର ପ୍ରଥମରୁ କେତୋଟି ପୃଷ୍ଠା, ମଝିରୁ ମଝିରୁ ଓ ଶେଷରୁ କିଛି ପଢ଼ି ଦେଲେ ବହି ବିଷୟରେ ଏକ ପ୍ରକାର ଧାରଣା ଆସି ଯାଇଥାଏ । ମାତ୍ର ଏ କି ପ୍ରକାର ବହି, ଯେଉଁ ପୃଷ୍ଠା ପଢୁଥାଏ ଭଲ ଲାଗୁଥାଏ । ରୋହିତର ଭିନ୍ନ ଭିନ୍ନ ଅନୁଭୂତି ଯେମିତି ମୋ ଭିତରେ ରହିଛି । ପ୍ରଥମରୁ ପଢ଼ିଲି ଓ ପଢ଼ି ଚାଲିଲି । ମୋନିଜକୁ ମୁଁ ସଂପୂର୍ଣ୍ଣ ସେଇ ବହି ଭିତରେ ଦେଖୁଥାଏ । ପ୍ରତିଟି ବାକ୍ୟ ପ୍ରାୟ ମୋର ଅନ୍ତର ଗ୍ରହଣ କରି ନେଉଥାଏ । କୌଣସି ଗୋଟିଏ ପୃଷ୍ଠା ମୁଁ ନ ପଢ଼ି ଓଲଟାଇ ପାରିଲି ନାହିଁ । ବାହାର ଖୋଳପାଟା ଏଡ଼େ ମୋଟା ହୋଇ ରହିଥିଲେ ମଧ ଅନ୍ତରଟା ସଂପୂର୍ଣ୍ଣ ତରଳି ଲାର୍ଭା ଅବସ୍ଥାରେ ପହଞ୍ଚି ସାରିଥାଏ । ଚିତ୍ତଭାଇଙ୍କର କଥା 'ଅସଲ ସ୍ପର୍ଶ ଭିତରେ ହୁଏ, ଭିତରେ ହିଁ ମିଳେ । ବାହାରେ ହାତ ବଢ଼ାଇ ବହିଃସ୍ଥ ଆଉ କୌଣସି ବସ୍ତୁକୁ ସ୍ପର୍ଶ କରୁଥିବା ପରି ମୋଟେ ମନେହୁଏ ନାହିଁ । ଯେଉଁ ବସ୍ତୁକୁ ସ୍ପର୍ଶ କରାଯାଏ ତାହାକୁ ସେଇ ଭିତରେ ହିଁ ସ୍ପର୍ଶ କରାଯାଏ ଏବଂ ଭିତରେ ଯଥାର୍ଥ ସ୍ପର୍ଶଟି ଘଟିପାରିଲେ ତଥାକଥିତ ବାହାରେ ସକଳ ଗତିଶୀଳତା ଓ ସକଳ ଆବେଦନ ମଧରେ ସେଇ ବସ୍ତୁଟି ଏକାବେଳକେ ପୂରି ରହିଥିବା ପରି ମନେହୁଏ ।'' ଏହା ମୋ ଜୀବନର ମୋଡ ବଦଳାଇ ଦେଲା । ତାଙ୍କର ଆଉ ଗୋଟିଏ ଧାଡି ମୋତେ ବଞ୍ଚିବାର ଶୈଳୀ ଶିଖାଇ ଥିଲା । ''ମଣିଷ ମଣିଷର ବନ୍ଧୁ ହେବାକୁ ମନ କଲେ ତା' ନିଜ ଭିତରେ ପ୍ରକୃତରେ କେତେ କ'ଣ ଦ୍ୱାର ଉନ୍ମୋଚିତ ହୋଇଯାଏ ।'' ମୁଁ ପଢୁଥାଏ ଓ ଭାବୁଥାଏ ବୋଧହୁଏ ଏସବୁ ମୋରି ପାଇଁ ଲେଖା ହୋଇଛି । ବହି ଦୁଇଟି ପଢ଼ି ସାରିବା ପରେ ତାଙ୍କ ବହି ପାଖରେ ବନ୍ଧା ପଡ଼ିଗଲି । ଦୀର୍ଘ ୪୦ ବର୍ଷ ପରେ ମୋ ନିଜକୁ ମୁଁ ପ୍ରଥମ କରି ଦେଖିଲି । ସମ୍ମିଳନୀ ସରିବାର ଅବ୍ୟବହିତ ପୂର୍ବରୁ ଚିତ୍ତଭାଇଙ୍କର ଅନେକ ଗୁଡ଼ିଏ ବହି କିଣି ପକାଇଲି । ସେ ବର୍ଷଟି ମୋର ଚିତ୍ତଭାଇଙ୍କର ବହିପଢ଼ାରେ କଟିଗଲା । ବହି ଗୁଡ଼ିକ ପଢ଼ିବା ଦ୍ୱାରା ମୋର ଆତ୍ମବଳ ବୃଦ୍ଧି ପାଉଥାଏ । ୧୯୯୯ ଜାନୁୟାରୀ ମାସରେ ମହିଳା ପାଠଚକ୍ର ସମ୍ମିଳନୀ ବେଳେ ତାଙ୍କର 'ଶବ୍ଦଶତକ' ବହିଟି ପାଇଲି । ସେ ବହିକୁ ମାଧ୍ୟମ କରି ଶ୍ରୀମା ଶ୍ରୀଅରବିନ୍ଦଙ୍କ ପୁସ୍ତକ ସବୁ ପଢ଼ିବା ଆରମ୍ଭ କଲି । ସେଇବର୍ଷ 'ବିଶ୍ୱନୀଡ଼' ଆଲୋଚନାଚକ୍ର 'The Universe' ରେ ହେବାର ଅଛି ବୋଲି ବରେନ୍ ଭାଇ କହିଲେ । (ତେଣୁ ଆମେ ଦୁଇଜଣ ସେଠାକୁ ଯାଇଥିଲୁ ।) କେବଳ ଦୂରରେ ବସି ମୁଁ ଚିତ୍ତଭାଇଙ୍କୁ ଦେଖୁଥାଏ ।ସେ ପୂରା ୨ ଘଣ୍ଟା ସ୍ଥିର ଭାବରେ ଚଉକି ଉପରେ ତଳକୁ ମୁହଁ କରି ବସିରହିଥାନ୍ତି । ଏକ ନିଶ୍ଚଳ ମୂର୍ତ୍ତିଭଳି । କେମିତି

ଏତେ ସ୍ଥିର ଭାବରେ ବସିଛନ୍ତି ଭାବି ଆଶ୍ଚର୍ଯ୍ୟ ଚକିତ ହୋଇଥିଲି । ସେଦିନ କିନ୍ତୁ କିଛି କଥା ବାର୍ତ୍ତା କରିପାରି ନଥିଲି । ବରେନ୍ ଭାଇଙ୍କ ଠାରୁ ଗୋପୀନାଥପୁର ସ୍କୁଲରେ କଥାବାର୍ତ୍ତାର ରେକଡିଂ କ୍ୟାସେଟ୍ ଆଣି ଶୁଣିଥିଲି । ମା'ଙ୍କ କାମ ଓ ମା'ଙ୍କ ଚେତନା କ'ଣ ? ନିଜେ ପଚାରିଛନ୍ତି । ସମସ୍ତେ କିଛି କିଛି କହିବା ପରେ ପୁଣି ଭଲ କରି ବୁଝାଉଛନ୍ତି । ମା'ଙ୍କର କାମ କରିବା ମାନେ, ମା'ଙ୍କର ସଂପୂର୍ଣ୍ଣ ରୂପେ ହୋଇଯିବା । ଯାହା ପୃଥିବୀ ଯାକ ପାଇଁ ସତ୍ୟ, ତାହାହିଁ ପ୍ରକୃତ ସତ୍ୟ ।

ଆଉ ଥରେ ୯ ଡଃ ସୁଧାକର ଆଚାର୍ଯ୍ୟଙ୍କ ଦ୍ୱାଦଶ ଦିବସରେ ମାତୃଭବନକୁ ଚିରଭାଇ ସସ୍ତ୍ରୀକ ଆସିଥାନ୍ତି । ତାଙ୍କ ବହି ଗୁଡିକର ଆକର୍ଷଣ ମୋତେ ତାଙ୍କ ନିକଟକୁ ଟାଣି ନେଲା । ପରିଚୟ ନଥାଇ ମଧ ସେ ମୋତେ ଅତି ପରିଚିତ ପରି ଲାଗିଲେ । ନଲାଗିବବା କେମିତି ? ତାଙ୍କ ସହିତ ବହି ମାଧ୍ୟମରେ ତ ପ୍ରତିଦିନ ସାକ୍ଷାତ ହେଉଥିଲା । ମୁଁ ବାଟ ଚାଲିଲା ବେଳେ ସେ ମୋ ପାଖେ ପାଖେ ରହିଥିବା ପରି ଅନୁଭବ ହେଉଥିଲା । ତେଣୁ ଦେଖୁ ଦେଖୁ ବିନା ଉପକ୍ରମରେ 'ଶବ୍ଦଶତକ'ରେ ସଙ୍ଗତି ଶବ୍ଦ ନେଇ କାହିଁକି କିଛି ଲେଖିନାହାଁନ୍ତି ବୋଲି ପ୍ରଶ୍ନ କରିଥିଲି । ସେ ପ୍ରଶ୍ନଟି ଶୁଣି ଅତି ତୀକ୍ଷ୍ଣ ଭାବେ କହିଲେ, ''ଆପଣ ଲେଖିନାହାନ୍ତି, ଯାହା ଭାବୁଚନ୍ତି ଲେଖନ୍ତୁ ।'' ସ୍ୱଭାବ ସୁଲଭ ହସଟିଏ ତାଙ୍କ ମୁହଁରେ ଲାଗି ରହିଥିବାରୁ ମୋର ମଧ ମୁହଁଟିରେ ହସ ରହିଥାଏ । କିନ୍ତୁ ମୁଁ ଅପ୍ରସ୍ତୁତ ହୋଇଗଲି । ମୋ ନିଜ ଉପରେ ମୁଁ ବିରକ୍ତ ହେଉଥାଏ । ବୟସରେ,ଶିକ୍ଷାରେ, ମାନ୍ୟତାରେ ସେ କେତେ ବଡ଼ । ମୁଁ କ'ଣ ତାଙ୍କୁ ଅପ୍ରାସଙ୍ଗିକ କିଛି ପ୍ରଶ୍ନ କଲିକି ? ଯେତେ ହେଲେ ସେତ ମୋତେ ଭଲରେ ବୁଝାଇ ପାରିଥାନ୍ତେ । ସେ ବୋଧହୁଏ ମୋ ଶୁଷ୍କ ହସର କାରୁଣ୍ୟ ଅନୁଭବ କରି ପାରିଲେ । ହସଟି ମିଳାଇଯିବା ପୂର୍ବରୁ ସେ କିନ୍ତୁ 'ସଂଗତି'ର ଅର୍ଥ ବୁଝାଇ ଦେଇଥିଲେ । ''କେଉଁଠି କିଛି ସଙ୍ଗତି ନାହିଁ ବୋଲିତ ଦୁନିଆଁରେ ସବୁ ବିପର୍ଯ୍ୟସ୍ତ ହୋଇପଡ଼ିଛି । ଭିତରର ଓ ବାହାରର ସଙ୍ଗତି ରକ୍ଷା ହୋଇପାରିଲେ ସିନା ସୌନ୍ଦର୍ଯ୍ୟ ଫୁଟି ଉଠିବ । ଯାହା ସୁନ୍ଦର ତାକୁ ସିନା ସୁନ୍ଦର କହିବା ।'' କେତେ ସରଳ ଓ ସହଜରେ ସେ ମୋତେ ବୁଝାଇ ଦେଲେ ଅଥଚ ଟିକିଏ ଆଗରୁ ମୁଁ ତାଙ୍କୁ କ'ଣ ଭାବୁଥିଲି । କିଛି ସମୟ ପରେ ସେ ମାତୃଭବନ ସମାଧି ଚାରିପଟେ ଦୂରତା ରଖି ପୂରାଟାଯାକ କଥାବାର୍ତ୍ତା କରି କରି ଆମ ସଙ୍ଗେ ବୁଲିଗଲେ । ସେଇ ଭିତରେ ଲୀଳା ଅପା, କାଶୀଭାଇ, ବାବୁଲିଭାଇ ଆଉ ସ୍କୁଲ କଥା ସବୁ ପଚାରି ଚାଲିଥା'ନ୍ତି । 'ମାତୃରଚନାବଳୀ' ସବୁ ଗୁଡ଼ିକ ତାଙ୍କ ଦ୍ୱାରା ଅନୁବାଦ ହୋଇଛି । ଶ୍ରୀଅରବିନ୍ଦଙ୍କ 'ଦିବ୍ୟ ଜୀବନ' ଓ ଆହୁରି କେତେକ ବହି ସେ ଅନୁବାଦ କରିଛନ୍ତି । ମାତ୍ର ସମାଧିକୁ ପ୍ରଣାମ କରିବାକୁ ସେ ଗଲେନି, ଅଥଚ ସେ ଆମ

ସମସ୍ତଙ୍କୁ ହାତ ଯୋଡ଼ି ଦେଉଥିବା ଦେଖିଛି । ଅଦ୍ଭୁତ ଲାଗିଲା । ଆମ ସାଙ୍ଗରେ ପଛ ବେଞ୍ଚରେ ସେ ବସିଥାନ୍ତି । ଯେତେ କହିଲେ ମଧ ସେ ଆଗକୁ ଗଲେ ନାହିଁ । କଥାରେ ଅଛି 'ଚିହ୍ନା ବ୍ରାହ୍ମଣର ପଇତା ଲୋଡ଼ା ନାହିଁ ।' ସେ ଯେଉଁଠି ଥିଲେ, ଯେଉଁ ବେଶ ପୋଷାକରେ ରହିଲେ ମଧ ସେ 'ଚିତ୍ତଭାଇ', ଶ୍ରୀଯୁକ୍ତ ଚିତ୍ତରଂଜନ ଦାସଙ୍କ ବ୍ୟତୀତ ଆଉ କିଛି ହୋଇଯିବେକି ? ମୋତେ ଏହା ଖୁବ୍ ଭଲ ଲାଗିଲା ।

ତାଙ୍କ ସହିତ ବାରମ୍ବାର ସାକ୍ଷାତ୍ ଘଟିବା ପରେ ମୋ ଭିତରେ କିଛି ସାହସ ବଢ଼ି ଚାଲିଥିବାର ଅନୁଭବ କଲି । ଆଉ ମୁଁ ପଛକୁ ଚାହିଁନି । କଟକରେ ମଧବର୍ତ୍ତୀ କାଳୀନ ଶିବିରକୁ ଯାଇଥିଲି ତାଙ୍କ ସହ ଟିକିଏ ଖାଲି ଦେଖା କରିବା ପାଇଁ । ଆମ ପାଠଚକ୍ରକୁ ଥରେ ଆସିବାକୁ ଅନୁରୋଧ କଲି । ସେ ନାହିଁ କରିନାହାଁନ୍ତି ମାତ୍ର ମୁଁ ତାଙ୍କୁ ଆଣି ପାରିନି ବୋଲି କଷ୍ଟ ଲାଗିଲା । ଅନେକ ଦିନ ପରେ କୁମୁଦିନୀ ଅପାଙ୍କ ସହିତ ବାପୁଜୀ ନଗର ସ୍ଥିତ ତାଙ୍କ ବାସଭବନକୁ ଯାଇଥିଲି । ଦିନ ସାରା ବ୍ୟସ୍ତ ରହି କ୍ଳାନ୍ତ ଜଣା ପଡୁଥିଲେ ମଧ ସେ ଆମ ସହିତ ବଗିଚାକୁ ଓହ୍ଲାଇ ଆସିଥିଲେ । ମାତୃଭବନ ଖବର ପଚାରିଥିଲେ । ମାତୃଭବନରେ ୪ ମହଲା ଛାତ ପଡୁଛି ଶୁଣି ଖୁସି ହେଲେ । ପାଠଚକ୍ର କାହିଁକି ଭଲରେ ଚାଲୁନି ? ଧିରେ ଧିରେ ସଭ୍ୟସଂଖ୍ୟା କମିଯାଉଛି କାହିଁକି ? ପଚାରି ଦେଲି ମୁଁ । ସେ କହିଲେ 'ଆମେ ଖାଇବାକୁ ପିନ୍ଧିବାକୁ ପାଉଛେ ବୋଲି ପାଠଚକ୍ର କରୁଛେ' ନୁହେଁ ? ଏହି ସଂକ୍ଷିପ୍ତ ଉତ୍ତରରେ ମୁଁ ସ୍ତବ୍ଧ ହୋଇଗଲି । କେତେ ନିଛକ ସତ୍ୟ ସତେ ! ପୂର୍ବରୁ ଏହା ବୁଝିପାରି ନଥିଲି ବୋଲି ଲାଜ ଲାଗିଲା । ଯେଉଁମାନେ ଖାଇବାକୁ ପିନ୍ଧିବାକୁ ଦିନରାତି ସଂଘର୍ଷ କରୁଛନ୍ତି ସେମାନେ ପାଠଚକ୍ର କେତେ ବେଳେ କରିବେ ? ମଣିଷର ମୌଳିକ ଆବଶ୍ୟକତା ପୂରଣ ହୋଇ ପାରୁନି, ମାତ୍ର ଆମେ ସେମାନଙ୍କ ପାଇଁ କ'ଣ କରୁଛୁ ? ମୁଁ କିଛି ସମୟ ଚୁପ୍ ହୋଇ ବସି ଆଉ କିଛି ପଚାରିବାର ପ୍ରସ୍ତୁତି କରୁଥିଲି । ପ୍ରଶ୍ନଟିଏ ପଚାରିବାର ଓ ଉତ୍ତରଟିଏ ଦେଇପାରିବାର ଯଥାର୍ଥ ଦକ୍ଷତା ମୋର ନାହିଁ ବୋଲି ମୁଁ ଜାଣିଛି । ପ୍ରକୃତରେ କ'ଣ ଜାଣିବାକୁ ଚାହେଁ ପ୍ରକାଶ କରିପାରେ ନାହିଁ । ପ୍ରଥମ ଥର ତ ପ୍ରଶ୍ନ ପଚାରି ସମାଲୋଚିତ ହୋଇ ସାରିଲିଣି । ତେଣୁ ଭୟ କ'ଣ ? ମୋର ଦ୍ୱିତୀୟ ପ୍ରଶ୍ନ : ଆମେ ପାଠଚକ୍ର ପାଇଁ ଉପଯୁକ୍ତ ପରିବେଶ ପାଉନୁ କାହିଁକି । ସେ କହିଲେ, 'ପରିବେଶ କ'ଣ ପାଠପଢ଼ା ପାଇଁ ? ମୁଁ ଭୁବନେଶ୍ୱରରୁ ବସ୍‌ରେ ଯାଇ ଲିଙ୍କ୍ ରୋଡରେ ଓହ୍ଲାଇ ୪ଟା ପୂର୍ବରୁ ମାତୃଭବନରେ ପହଞ୍ଚୁଥିଲି । ଆମ୍ବଗଛ ମୂଳେ ଆମେ ବସିଥିଲୁ । ଏବେ ମୁଁ ରହିବିନି, କିନ୍ତୁ ପଟେଲ ହଲ୍‌ରେ ପାଠଚକ୍ର ବନ୍ଦ ହେବନି ।'' ଅନ୍ୟାନ୍ୟ ଗଳ୍ପରୁ ତାଙ୍କର ଉଦ୍ଦେଶ୍ୟ ବୁଝିଲି । ସେ ମାତୃଭବନ ଆସିବା ବନ୍ଦ କରିବା ଦିନ ଠାରୁ ଯେ ରବିବାର

ବ୍ଲାସ୍ ବନ୍ଦ ହେଇଯାଇଥିଲା ଜାଣିଲି । ତାଙ୍କ ପାଖରୁ ସେଦିନ ଚାଲି ଆସିଲି । ମାତ୍ର ତାଙ୍କର ସଦିଚ୍ଛାକୁ ମୋର ମନ, ପ୍ରାଣ ଓ ହୃଦୟ ଗ୍ରହଣ କରିନେଇଛି । ଖାଲି ପଢ଼ିବା ଭିତରେ ନିଜକୁ ସୀମିତ ନରଖି ସାମୂହିକ କର୍ମ ପାଇଁ ଗୋଡ଼ କାଢ଼ିଲି । ଏବେ ମାତୃଭବନକୁ ରବିବାର ଦିନ ରବି ଦାସ ଭାଇ, ନରେଶ ଓ ବିଜୟ ନିୟମିତ ଭାବେ ଆସୁଛନ୍ତି । ଗୀତ ବୋଲୁଛନ୍ତି । ଆଲୋଚନା କରୁଛନ୍ତି । ମୁଁ ସେଠାକୁ ସବୁଥର ନ ଯାଇ ପାରିଲେ ମଧ ଦୂରରେ ଥାଇ ପାଠଚକ୍ର କଥା ଚିନ୍ତା କରେ ।

ଥରେ ସୁଦର୍ଶାବ୍ରତ ଗୁରୁବାର ଦିନ ଚିତ୍ତଭାଇଙ୍କ ପାଖରେ ପାଠଚକ୍ରରେ ବସିଥିଲି । 'କ୍ଷୀର ଚୁଲିରେ ବସିଲେ ନିଶ୍ଚେ ଉତୁରିବ, ଏହା ମନକୁ ମନ ହୋଇଥାଏ ।' ସେମିତି ନିଜେ ସବୁବେଳେ ଇଚ୍ଛା କରୁଥିଲେ ସେ ମୁହୂର୍ତ୍ତ ନିଶ୍ଚୟ ଆସିବ ଓ ସେଇଟା ହିଁ ''ଦେବ ମୁହୂର୍ତ୍ତ ।'' ସବୁ କିଛି ହରାଇବା ପରି ଲାଗୁଥିବା ବେଳେ ଅନେକ କିଛି ମୁଁ ପାଇଛି । ନିଜକୁ ନିଜେ ସାଥୀ କରୁଛି ବୋଲି ବାଟ ଚାଲିବାରେ ଆନନ୍ଦ ମିଳୁଛି । ଅଧିକରୁ ଅଧିକ ଜାଣିବାର ଇଚ୍ଛାକୁ ସଫଳ କରିବାରେ ଚିତ୍ତଭାଇଙ୍କ ବହିଗୁଡ଼ିକ ସହାୟକ ହେଉଛନ୍ତି । ଅନେକଟା ଅବୁଝା ରହିଯାଉଛି, ଦିବ୍ୟ ପରମସତ୍ତାଙ୍କ ଉପରେ ବିଶ୍ୱାସ ରଖିଛି । ପଥିକବନ୍ଧୁମାନେ ଏ ପଥରେ ସହାୟକ ହେଉଥିବାରୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ ।

**ଆରତୀ ମିଶ୍ର**

*ଉତ୍କଳ ଆପାର୍ଟମେଣ୍ଟ, ଫ୍ଲାଟ-ଏ, ୩୦୧*

*କଲ୍ୟାଣୀ ନଗର, କଟକ-୧୩*

# ଚିତ୍ତଭାଇ

୧୯୫୫ ମସିହା, ଅପ୍ରେଲ୍ ମାସ ଶେଷାଂଶ, ତାରିଖଟା ଅବଶ୍ୟ ଠିକ୍ ମନେ ପଡୁନାହିଁ । ଭୂ-କ୍ରାନ୍ତିର ଜନ୍ମଦାତା ପୂଜ୍ୟ ଆଚାର୍ଯ୍ୟ ବିନୋବା ଭାବେଙ୍କର ଓଡ଼ିଶାରେ ପ୍ରଥମ ପଦଯାତ୍ରା ଚାଲିଥାଏ । ସେହି ଅବସରରେ ପୁରୀରେ ନିଖିଳ ଭାରତ ସର୍ବୋଦୟ ସମ୍ମିଳନୀ ନିମିତ୍ତ ବିପୁଳ ଆୟୋଜନ ଚାଲିଥାଏ । ସେତେବେଳେ ମୁଁ 'ବାଣୀଶ୍ରୀ' ରାମଚନ୍ଦ୍ରପୁରରୁ ଅଷ୍ଟମ ସୋପାନରେ ଅନ୍ତିମ ପରୀକ୍ଷା ଦେଇ ସାରିଥାଏ । ସର୍ବୋଦୟ ସମ୍ମିଳନୀ କାର୍ଯ୍ୟରେ ଯୋଗଦେବା ନିମିତ୍ତ ସମ୍ମିଳନୀର ପନ୍ଦର ଦିନ ପୂର୍ବରୁ ଆମ ବିଦ୍ୟାଳୟରୁ ଯେଉଁ ଦଶ ଜଣ ଛାତ୍ରଛାତ୍ରୀଙ୍କୁ ସ୍ୱେଚ୍ଛାସେବକ ଭାବେ ମନୋନୀତ କରି ପୁରୀକୁ ପଠାଯାଇଥିଲା ସେମାନଙ୍କ ମଧ୍ୟରେ ମୋ ନାମ

ରହିଥିଲା ।

ସେହି ସର୍ବୋଦୟ ସମ୍ମିଳନୀ କାର୍ଯ୍ୟରେ ସକ୍ରିୟ ସହଯୋଗ କରିବା ଉଦ୍ଦେଶ୍ୟରେ ପ୍ରାୟ ଏକମାସ ପୂର୍ବରୁ ସେବାଗ୍ରାମ (ୱାର୍ଦ୍ଧା, ମଧ୍ୟପ୍ରଦେଶ)ରେ ଅଧ୍ୟୟନରତ ଥିବା ଓଡ଼ିଶାର ଉତ୍ତମ ବୁନିୟାଦୀ ଛାତ୍ରମାନେ ଏବଂ ଚମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟର ଛାତ୍ରଛାତ୍ରୀମାନେ ମଧ୍ୟ ଚିତ୍ତଭାଇଙ୍କ ନେତୃତ୍ୱରେ ଆସି ସ୍ୱେଚ୍ଛାସେବକ ଭାବେ ବିଭିନ୍ନ ବିଭାଗରେ କାର୍ଯ୍ୟ କରୁଥାଆନ୍ତି । ସେହିଠାରେ ମୁଁ ଚିତ୍ତ ଭାଇଙ୍କୁ ସର୍ବପ୍ରଥମ ଦେଖିଥିଲି । ମୁଁ ପ୍ରଦର୍ଶନୀ ବିଭାଗରେ କାର୍ଯ୍ୟ କରୁଥିବା ବେଳେ ସେ ନିବାସ ବିଭାଗରେ ସ୍ୱେଚ୍ଛାସେବକ ଭାବେ କାର୍ଯ୍ୟ କରୁଥିଲେ । ଦେଶର ବିଭିନ୍ନ ପ୍ରାନ୍ତରୁ ଆସୁଥିବା ସର୍ବୋଦୟ କର୍ମୀ ଓ ସର୍ବୋଦୟ ପ୍ରେମୀ ନେତୃବୃନ୍ଦଙ୍କୁ ପାଛୋଟି ଆଣିବା ଉଦ୍ଦେଶ୍ୟରେ ନିବାସ ବିଭାଗର ସ୍ୱେଚ୍ଛାସେବକମାନେ ପୁରୀ ରେଳଷ୍ଟେସନ ପର୍ଯ୍ୟନ୍ତ ଯାଇ ସାଥିରେ ଅତିଥିମାନଙ୍କର ବିଛଣାପତ୍ର ଇତ୍ୟାଦି ବୋହି ଆଣୁଥିବାର ମୁଁ ନିଜେ ଦେଖିଛି । ଚିତ୍ତଭାଇ ମଧ୍ୟ ଅତି ଆଗ୍ରହରେ ସେହି କାର୍ଯ୍ୟ କରୁଥିଲେ ।

ଚମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟରୁ ଯେଉଁ ଛାତ୍ରଛାତ୍ରୀମାନେ ସ୍ୱେଚ୍ଛାସେବକ ହୋଇ ଆସିଥିଲେ ସେମାନଙ୍କ ମଧ୍ୟରେ କେତେ ଜଣ ଆମ 'ବାଣୀଶ୍ରୀ' ରାମଚନ୍ଦ୍ର ପୁରର ଆମ ପୂର୍ବବର୍ଷର ଛାତ୍ରଛାତ୍ରୀ ଥିଲେ । ସେହିମାନଙ୍କଠାରୁ ଚିତ୍ତଭାଇଙ୍କ ପରିଚୟ ଓ ଚମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟ ସଂପର୍କରେ ଅନେକ କଥା ଶୁଣି ସେହିଦିନରୁ ମନସ୍ଥ କରି ନେଇଥିଲି ଯେ ମୁଁ ଚମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟରେ ହିଁ ନିଶ୍ଚୟ ଅଧ୍ୟୟନ କରିବି ।

ସେତେବେଳେ 'ବାଣୀଶ୍ରୀ' ରାମଚନ୍ଦ୍ରପୁରରେ ଅଷ୍ଟମୋତ୍ତର ଅଧ୍ୟୟନ କରିବାର ସୁଯୋଗ ନଥିଲା । ତେଣୁ ଅଷ୍ଟମ ସୋପାନରୁ ଉତ୍ତୀର୍ଣ୍ଣ ହେବାପରେ ଉଚ୍ଚଶ୍ରେଣୀରେ ଅଧ୍ୟୟନ କରିବା ନିମିତ୍ତ ମୋ ପାଇଁ ସେବାଗ୍ରାମ (ୱାର୍ଦ୍ଧା) ଏବଂ କୁମାର ବାଗ (ବିହାର ପ୍ରଦେଶ) ରେ ସ୍ଥାନ ବ୍ୟବସ୍ଥା ହୋଇ ସାରିଥିଲା । କିନ୍ତୁ ମୁଁ ଅନ୍ୟତ୍ର ନ ଯାଇ ଚମ୍ପତିମୁଣ୍ଡା ଯିବାକୁ ନିଜ ଇଚ୍ଛାରେ ନିଷ୍ପତ୍ତି ଗ୍ରହଣ କରିଥିଲି ।

ସେତେବେଳେ ଜୀବନ-ବିଦ୍ୟାଳୟରେ ଅଧ୍ୟୟନେଚ୍ଛୁ ଛାତ୍ରଛାତ୍ରୀମାନେ ପ୍ରବେଶ ପୂର୍ବରୁ ପ୍ରଧାନ ଶିକ୍ଷକଙ୍କ ନିକଟକୁ ସ୍ୱହସ୍ତ ଲିଖିତ ଆବେଦନ ପତ୍ର ପ୍ରେରଣ କରିବାର ବିଧି ଥିଲା । ତଦନୁସାରେ ମୁଁ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଚିତ୍ତରଂଜନ ଦାସଙ୍କ ନିକଟକୁ ଯେଉଁ ଆବେଦନ ପତ୍ର ପଠାଇ ଥିଲି ସେଥିରେ ବିଦ୍ୟାଳୟରେ ଛାତ୍ରାବାସରେ ରହି ଅଧ୍ୟୟନ କରିବାକୁ ହେଲେ ସାଥିରେ କ'ଣ କ'ଣ ନେବାକୁ ହେବ ଏବଂ ବିଦ୍ୟାଳୟର ନାମ ଲେଖା ପ୍ରବେଶିକା ଶୁଳ୍କ କେତେ ପଡ଼ିବ ତାହା ଜାଣିବାକୁ

ଇଚ୍ଛା କରିଥିଲି ।

ପ୍ରଧାନ ଶିକ୍ଷକ ନିଜ ହାତରେ ଯେଉଁ ପତ୍ର ଲେଖିଥିଲେ ସେଥିରୁ ଅବଗତ ହେଲି ଯେ, ସେହି ବିଦ୍ୟାଳୟରେ ପ୍ରବେଶିକା ଶୁଳ୍କ ବା ନାମ ଲେଖା ଫିସ୍ କିଛି ଦେବାକୁ ପଡ଼େନାହିଁ । ଛାତ୍ରାବାସରେ ରହିବା ନିମିତ୍ତ ସାଥିରେ ବ୍ୟବହାର୍ଯ୍ୟ ପୋଷାକ ପତ୍ର, ବିଛଣା ପତ୍ର, ବାସନ, ମଶାରି, ଲଣ୍ଠନ ପ୍ରଭୃତି ସହିତ ଖଣ୍ଡିଏ କଟୁରୀ ନେଇ ଯିବାକୁ ହେବ । ପଢ଼ି ଆଶ୍ଚର୍ଯ୍ୟ ଲାଗିଲା, ନାମ ଲେଖା ଫିସ୍ ନାହିଁ, ଖଣ୍ଡିଏ କଟୁରୀ ! ଏହା କିପରି ବିଦ୍ୟାଳୟ ? ଯାହା ହେଉ ନିଜ ଇଚ୍ଛାରେ ସ୍ଥିର କରି ସାରିଛି ଯେତେବେଳେ ନିଶ୍ଚୟ ଯିବି । ସେହି ୧୯୫୫ ମସିହା, ଜୁଲାଇ ମାସ, ତାରିଖଟା ଅବଶ୍ୟ ମନେ ପଡୁନାହିଁ । ଆବଶ୍ୟକ ମତେ ନିଜର ସମସ୍ତ ବ୍ୟବହାର୍ଯ୍ୟ ପୋଷାକ ପରିଚ୍ଛଦ, ବିଛଣା, ମଶାରି, ଲଣ୍ଠନ, ବାସନ-କୁସନ ଓ ଟ୍ରଙ୍କ୍ ଇତ୍ୟାଦି ସହିତ ମୋତେ ସେଠାରେ ଛାଡ଼ି ଦେଇ ଆସିବାକୁ ମୋ ବାବା ୵ଗଦାଧର ପାଳିତ୍ ଯାଇଥିଲେ । ଆମେ ପ୍ରଥମେ ଯାଇ ଅନୁଗୁଳ ପୁରୁଣା ବସ୍‌ଷ୍ଟାଣ୍ଡ ନିକଟସ୍ଥ ଆମର ଜଣେ ସଂପର୍କୀୟଙ୍କ ସରକାରୀ ବାସଭବନରେ ପହଞ୍ଚିଲୁ । ସେଠାରେ ମଧ୍ୟାହ୍ନ ଭୋଜନ ଓ ବିଶ୍ରାମ ପରେ ଅପରାହ୍ନରେ ବାହାରି ପଡ଼ିଲୁ ଅନୁଗୁଳସ୍ଥ ବାଜିରାଉତ ଛାତ୍ରାବାସ ଦେଖିବା ଉଦ୍ଦେଶ୍ୟରେ ।ସେଠାରେ ମୋର ଜନୈକ ବାଲ୍ୟ ଶିକ୍ଷକ ଶ୍ରୀ ଋଷି ବେହେରା (ବଡ଼ଗୁରୁଜୀ ନାମରେ ପରିଚିତ) ଆମକୁ ବୁଲାଇ ସବୁ ଦେଖାଇଲେ । ତତ୍‌ପରେ ଆମେ ଫେରି ଆସିଲୁ ଆମ ବନ୍ଧୁ ଘରକୁ ।

ସେଦିନ ସେଠାରେ ରାତ୍ରି ଯାପନ ପରେ ତତ୍‌ପର ଦିନ ପୂର୍ବାହ୍ନରେ ନିଜର ନିତ୍ୟକର୍ମ ସାରି ବାହାରି ପଡ଼ିଲୁ ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟ ଅଭିମୁଖେ । କଟକ-ସମ୍ବଲପୁର ରାସ୍ତାରେ ବସ୍‌ରେ ବସି ଆସି ଓହ୍ଲାଇଲୁ ବଡ଼କେରାଛକରେ । ନିକଟସ୍ଥ ବଡ଼କେରା ନିମ୍ନ ମୌଳିକ ବିଦ୍ୟାଳୟରେ ଟ୍ରଙ୍କଟି ରଖିଦେଇ ପାଦରେ ଚାଲି ଚାଲି ଗଲୁ ଚଂପତିମୁଣ୍ଡା । (ପୁରାତନ କଟକ ଓ ସମ୍ବଲପୁର ରାସ୍ତାରେ) ଚଂପତିମୁଣ୍ଡାରେ ପହଞ୍ଚିବା ବେଳକୁ ସମୟ ପୂର୍ବାହ୍ନ ନଅଟା ହେବ ।

ସ୍ଥାନଟି ଚତୁର୍ଦ୍ଦିଗରେ ପ୍ରାଚୀର ସଦୃଶ ଉଚ୍ଚ ପର୍ବତମାଳାବେଷ୍ଟିତ । ଅସନ, ଶାଳ, ପିଆଶାଳ, ପଳାଶ, ଧାତୁକୀ, କାଞ୍ଚନ, ଗଙ୍ଗଶିଉଳୀ, କନିଅର ପ୍ରଭୃତି ବୃକ୍ଷପୂର୍ଣ୍ଣ ସବୁଜ-ଶ୍ୟାମଳ ବନଭୂମି ମଧ୍ୟରେ ଏଗାରଗୋଟି ଛଣଛପର, ଝାଟିମାଟି କାନ୍ଥରେ ନିର୍ମିତ କୋଠରୀଗୁଡ଼ିକ ହେଉଛି ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟ । ଜଙ୍ଗଲର କିୟଦଂଶ ପରିଷ୍କାର କରି ବିଦ୍ୟାଳୟ ଉଦ୍ୟାନରେ ଲାଗିଥିଲା ଜହ୍ନି, ଭେଣ୍ଡି, ବୋଇତାଳୁ, କାକୁଡ଼ି ଓ ମକା ପ୍ରଭୃତି ପନିପରିବା ଫସଲ । ସେତେବେଳେ ଅନୁଭବ

କଲୁ କଟୁରୀର ଆବଶ୍ୟକତା ଏଠାରେ ଜଙ୍ଗଲ ସଫାକରିବା ଉଦ୍ଦେଶ୍ୟରେ ।

ପ୍ରଧାନଶିକ୍ଷକ ଶ୍ରୀ ଚିତ୍ତରଂଜନ ଦାସଙ୍କୁ ଦେଖାକଲୁ । ସେତେବେଳକୁ ବିଦ୍ୟାଳୟ ଶ୍ରେଣୀ ଶିକ୍ଷାଦାନ କାର୍ଯ୍ୟ ସମୟ ହୋଇ ଆସୁଥାଏ । ସେ ଆମକୁ ଖାଇବାକୁ ପଠାଇ ଦେଲେ ଛାତ୍ରାବାସକୁ ଜଣେ ଛାତ୍ରଙ୍କ ସହିତ । ମୋତେ ସେଠାରେ ଛାଡ଼ିଦେଇ ମୋ ବାବା ଫେରି ଆସିଲେ ।

ବିଦ୍ୟାଳୟରେ ନିର୍ଦ୍ଦିଷ୍ଟ ଶ୍ରେଣୀ କୋଠରୀ ନଥିଲା । ପ୍ରଚଳିତ ବିଦ୍ୟାଳୟ ପରି ସେଠାରେ ଡେସ୍କ, ବେଞ୍ଚ୍, ଚେୟାର, ଟେବୁଲ୍ ଇତ୍ୟାଦି ନଥିଲା । ମୁକ୍ତ ଆକାଶ ତଳେ, ଶିଳା ମଞ୍ଚ ଉପରେ ଗଙ୍ଗଶିଉଳି, ମାଧବୀ, ମଧୁମାଳତୀ ଲତା ଘେରା ସ୍ଥାନରେ ଶ୍ରେଣୀ କାର୍ଯ୍ୟ ହେଉଥିଲା ।

ବିଦ୍ୟାଳୟର ପରିବେଶ ଗୃହ ଇତ୍ୟାଦି ମନରେ ଯେତିକି ବିସ୍ମୟ ସୃଷ୍ଟି କରିଥିଲା ତତୋଧିକ ବିସ୍ମିତ କଲା ବିଦ୍ୟାଳୟର ପ୍ରଧାନଶିକ୍ଷକ ଚିତ୍ତଭାଇଙ୍କ ରୀତିନୀତି ଦେଖି । ପ୍ରଚଳିତ ବିଦ୍ୟାଳୟ ଗୁଡ଼ିକରେ ଶିକ୍ଷକମାନଙ୍କୁ ଛାତ୍ରଛାତ୍ରୀମାନେ ସାର୍ ବୋଲି ସମ୍ବୋଧନ କରନ୍ତି । ଆମେ ପ୍ରଥମରୁ ଗାନ୍ଧିଜୀଙ୍କ ପରିକଳ୍ପିତ ମୌଳିକ ବିଦ୍ୟାଳୟ ମାନଙ୍କରେ ଅଧ୍ୟୟନ କରିଥିବାରୁ ଶିକ୍ଷକମାନଙ୍କୁ ଗୁରୁଜୀ ବୋଲି ସମ୍ବୋଧନ କରି ଆସୁଥିଲୁ । କିନ୍ତୁ ଆଶ୍ଚର୍ଯ୍ୟର କଥା ଜୀବନ ବିଦ୍ୟାଳୟର ପ୍ରଧାନ ଶିକ୍ଷକଙ୍କୁ ସାର୍ କିମ୍ବା ଗୁରୁଜୀ ବୋଲି ଡାକିଲେ ସେ ଶୁଣିଲେ ନାହିଁ । ସେଦିନ ସଂଧ୍ୟା ପ୍ରାର୍ଥନା ସଭାରେ ସେ କହିଲେ "ଏହି ବିଦ୍ୟାଳୟରେ ନୂତନ ଭାବେ ପ୍ରବେଶ କରିଥିବା ଛାତ୍ରଛାତ୍ରୀମାନେ ମୋତେ ସାର୍ ବୋଲି ସମ୍ବୋଧନ କରୁଛନ୍ତି । ଆଉ କେତେ ଜଣ ଗୁରୁଜୀ ବୋଲି ଡାକୁଛନ୍ତି । ସେମାନେ ମୋତେ ଗୁରୁବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଭାବି ଭକ୍ତି ଅଜାଡ଼ି ଦେଉଛନ୍ତି । ବାଲେଶ୍ୱର ଜିଲ୍ଲାର ତୁଡି ଗଡ଼ିଆ ଉଚ୍ଚ ମୌଳିକ ବିଦ୍ୟାଳୟରୁ ଆସିଥିବା ଛାତ୍ରମାନେ ଆମ ପାଦଛୁଇଁ ପ୍ରଣାମ କରିବାରେ ଭାରି ବ୍ୟସ୍ତ । ଏସବୁ ଅଭ୍ୟାସ ତାଙ୍କ ପୂର୍ବ ବିଦ୍ୟାଳୟର ।" ପରେ ବୁଝିଲୁ ଯେ ସେ ସାର୍ କିମ୍ବା ଗୁରୁଜୀ ନୁହଁନ୍ତି । ଯଥାର୍ଥରେ ଜଣେ ବୟୋଜ୍ୟେଷ୍ଠ ବଡ଼ଭାଇ । ବିଶ୍ୱ କବି ରବୀନ୍ଦ୍ରନାଥଙ୍କ ଦ୍ୱାରା ପ୍ରତିଷ୍ଠିତ ବିଶ୍ୱଭାରତୀ ବା ଶାନ୍ତିନିକେତନରେ ଶିକ୍ଷକମାନଙ୍କୁ ଛାତ୍ରଛାତ୍ରୀମାନେ ବଙ୍ଗଳାରେ 'ଦାଦା' ବୋଲି ସମ୍ବୋଧନ କରନ୍ତି, ଯାହାର ପ୍ରକୃତ ଅର୍ଥ ବୟୋଜ୍ୟେଷ୍ଠ ଅଭିଜ୍ଞ ବଡ଼ଭାଇ ।

ଆଧୁନିକ ଶିକ୍ଷା ବିଜ୍ଞାନ ଶିକ୍ଷକମାନଙ୍କୁ ଛାତ୍ରମାନଙ୍କର ଫ୍ରେଣ୍ଡ, ଫିଲୋସଫର୍ ଏଣ୍ଡ୍ ଗାଇଡ୍ ଭାବେ ପରିଚିତ କରାଇ ସାରିଛି । ସେହିଦିନ ଠାରୁ ଆମେ ତାଙ୍କୁ ଡାକିଲୁ 'ଚିତ୍ତଭାଇ' । ଆମ ପୂର୍ବ ବର୍ଷର ଛାତ୍ରଛାତ୍ରୀମାନେ ବର୍ଷକ ପୂର୍ବରୁ ଚିତ୍ତଭାଇ

ଡାକିବାରେ ଅଭ୍ୟସ୍ତ ହୋଇ ସାରିଥିଲେ । ଚିତ୍ତଭାଇଙ୍କ ପରି ଅନ୍ୟାନ୍ୟ ଶିକ୍ଷକମାନଙ୍କୁ ମଧ୍ୟ ଆମେ ଭାଇ ଡାକୁ ଥିଲୁ । ସେମାନେ ହେଲେ ବିନୋଦ ଭାଇ, ଅନ୍ତର୍ଯ୍ୟାମୀ ଭାଇ, ସୁରଭାଇ, ସତ୍ୟବାଦୀ ଭାଇ ଓ ବାସୁଭାଇ । ହିନ୍ଦୀ ଶିକ୍ଷୟିତ୍ରୀ- ଲବଙ୍ଗଲତା ବର୍ମା ହେଲେ ଆମର ଲବଙ୍ଗଅପା ।

ପ୍ରତିଦିନ ପୂର୍ବାହ୍ଣ ଦଶଟାରେ ଶ୍ରେଣୀ କାର୍ଯ୍ୟ ଆରମ୍ଭ ହେବା ପୂର୍ବରୁ ଶ୍ରେଣୀକୁ ଯିବା ଘଣ୍ଟା ବାଜିଉଠେ । ବିଦ୍ୟାଳୟର ସମସ୍ତ ଶିକ୍ଷକ, ଶିକ୍ଷୟିତ୍ରୀ, ଛାତ୍ରଛାତ୍ରୀ ଧାଡ଼ି ହୋଇ ବିଦ୍ୟାଳୟ ସମ୍ମୁଖ ପ୍ରାଙ୍ଗଣରେ ଠିଆ ହୁଅନ୍ତି । ଚିତ୍ତଭାଇ ଲେଖିଆଣିଥିବା ଗୋଟିଏ ବା ଦୁଇଟି ପୃଷ୍ଠା ପଢ଼ି ଶୁଣାଇ ଦିଅନ୍ତି । ତାହା ହିଁ ଥାଏ ସେଦିନର ବା ଅନୁଚିନ୍ତା । ସେହି ଲେଖା ଲେଖିବା ପାଇଁ ଚିତ୍ତଭାଇଙ୍କ ଭିତରେ ଯେତିକି ଆଗ୍ରହ ଥାଏ ତତୋଧିକ ଆଗ୍ରହ ଥାଏ ଶ୍ରୋତା-ଛାତ୍ରଛାତ୍ରୀ ଓ ଶିକ୍ଷକମାନଙ୍କ ମଧ୍ୟରେ । ଆମ ଭିତରୁ କେତେଜଣ ଚିତ୍ତଭାଇଙ୍କର ଏହି ଲେଖିବା ଅଭ୍ୟାସକୁ ଏକ 'ଖୋଇ' ବୋଲି ନାମ ଦେଲେ । ପରବର୍ତ୍ତୀ ସମୟରେ ଏହି ନିୟମିତ ଦୈନିକ ଖୋଇ ଗୁଡ଼ିକ ଏକତ୍ରିତ ହୋଇ ଆତ୍ମପ୍ରକାଶ କଲେ 'ଜୀବନ ବିଦ୍ୟାଳୟ' ପୁସ୍ତକ ଆକାରରେ, ଏହା ପ୍ରଥମ ଓ ଦ୍ୱିତୀୟ ଦୁଇଭାଗରେ ଦୁଇଖଣ୍ଡ ହୋଇ ଆତ୍ମପ୍ରକାଶ କରିବା ପରେ ପ୍ରବନ୍ଧ ବିଭାଗରେ ଉପାଦେୟ ସୃଷ୍ଟି ନିମିତ୍ତ ଏହା ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିସାରିଛି ।

ପ୍ରତ୍ୟେହ ସକାଳେ ଚିତ୍ତଭାଇ ଆମମାନଙ୍କ ସହିତ ମିଶି ବଗିଚା କାମ କରନ୍ତି । ଭୋଜନ ସମୟରେ ଏକତ୍ର ବସି ଭୋଜନ କରନ୍ତି । ଅପରାହ୍ଣରେ ଏକ ସଙ୍ଗେ ଭଲି କିମ୍ବା ବର୍ଷା ହେଲେ କ୍ୟାରମ୍ ଖେଳ ଚାଲେ । ପ୍ରାର୍ଥନା ସମୟରେ ଏକତ୍ର ପ୍ରାର୍ଥନା, ବର୍ଷା କାଳରେ ରବୀନ୍ଦ୍ର-ସଂଗୀତ ସମବେତଗାନ ଓ ପ୍ରତି ସପ୍ତାହରେ ପଦ୍ୟାନ୍ତ ପ୍ରତିଯୋଗିତାରେ ମଧ୍ୟ ସମଭାଗୀ ହୁଅନ୍ତି । ଅନେକ ସମୟରେ ସେ ମୋର ପ୍ରତିପକ୍ଷରେ ରହି ପଦ୍ୟାନ୍ତ ପ୍ରତିଯୋଗିତାକୁ ଜୋର୍‌ଦାର୍ କରି ଚଳାନ୍ତି । ଏହା ତାଙ୍କ ଫ୍ରେଣ୍ଡ, ଫିଲୋସଫର୍ ଓ ଗାଇଡ୍ ଭାବର ପରାକାଷ୍ଠା ପ୍ରଦାନ କରିବା ନୁହେଁ ତ ଆଉ କ'ଣ ?

ଥରେ ଅବସର ସମୟରେ ଆମେ କେତେଜଣ ଛାତ୍ର ଓ ଶିକ୍ଷକ ଏବଂ ଚିତ୍ତଭାଇ ମିଶି ସ୍ଥାନୀୟ କେତେକ ଗ୍ରାମକୁ ଭ୍ରମଣ ଉଦ୍ଦେଶ୍ୟରେ ଯାଇଥାଉଁ । ଫେରିଲା ବେଳେ ଖୋଲା ପଡ଼ିଆରେ ବିଲ ପାଖରେ ଦଳେ ଯାଯାବର ଜାତୀୟ ବାରବୁଲା କେଳା ସେଠାରେ ଅସ୍ଥାୟୀ ଘର (ପଲା) କରି ରହୁଥିବା ଦେଖି ଆମର ଜନୈକ ଶିକ୍ଷକ ଶ୍ରୀ ବାସୁଦେବ ଦାସ ହଠାତ୍ କହି ଉଠିଲେ, "ପ୍ରକୃତରେ ଏହିମାନେ

ହିଁ ଖୁବ୍ ସୁଖୀ । କାରଣ ଏମାନେ ରାଜାର ପ୍ରଜା ନୁହଁନ୍ତି କି ମହାଜନର ଖାତକ ନୁହଁନ୍ତି ।'' ଏହା ଶୁଣି ତତ୍‌କ୍ଷଣାତ୍ ଚିତ୍ତଭାଇ କହିଉଠିଲେ, ''ବାସୁଭାଇ ! ଆପଣ ଏପରି ରହିପାରିବେ ନା ? ଆପଣଙ୍କୁ ଏପରି ଜୀବନ ଖୁବ୍ ଭଲ ଲାଗିବ ନିଶ୍ଚୟ ?'' ବାସୁବାବୁ ଏହା ଶୁଣି ନୀରବ ରହିଗଲେ । ଚିତ୍ତଭାଇ ପୁଣି କହି ଚାଲିଲେ, ''ଯାହା ଆମ ନିଜକୁ ଭଲ ଲାଗିବ ନାହିଁ, ସେପରି ଜୀବନ ଅନ୍ୟକୁ କିପରି ସୁଖଦାୟକ ହେବ ବୋଲି ଆମେ ଭାବିବା ? ଘରଦ୍ୱାରହୀନ ନିଃସ୍ୱ ଯାଯାବର ଜୀବନ ଯେଉଁମାନେ ବିତାଉଛନ୍ତି ସେମାନେ କ'ଣ ତାଙ୍କ ନିଜ ଇଚ୍ଛାରେ ବିତାଉଛନ୍ତି ନା ପରିସ୍ଥିତିର ତାଡ଼ନାରେ ଏପରି ଜୀବନ ବିତାଇବାକୁ ବାଧ ହେଉଛନ୍ତି ?'' ଏହା ଚିତ୍ତଭାଇଙ୍କର ବାସ୍ତବବାଦିତାର ପ୍ରମାଣ ଦେଲା ବୋଲି ଆମେ ସମସ୍ତେ ଉପଲବ୍ଧି କଲୁ ସେଦିନ ।

୧୯୫୬ ମସିହା କଥା । ଡକ୍ଟର ମାୟାଧର ମାନସିଂହ ଥାଆନ୍ତି ସେତେବେଳେ ସମ୍ବଲପୁର ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ । ସେ ଚିତ୍ତଭାଇଙ୍କର ଖୁବ୍ ପରିଚିତ ଓ ବନ୍ଧୁ । ସେହିବର୍ଷ ସେହି କଲେଜର ଛାତ୍ର ସଂସଦର ବାର୍ଷିକ ଉତ୍ସବକୁ ସେ ଚିତ୍ତଭାଇଙ୍କୁ ମୁଖ୍ୟ ଅତିଥି ଭାବେ ଯୋଗ ଦେବାକୁ ନିମନ୍ତ୍ରଣ କରିଥିଲେ । ଚିତ୍ତଭାଇ ଉକ୍ତ ଅନୁରୋଧ ରକ୍ଷା କରି ଯଥାସମୟ ପୂର୍ବରୁ ଯାଇ ଉପସ୍ଥିତ ହେଲେ । ଅତିଥି ଚର୍ଚ୍ଚାରେ ତ୍ରୁଟି ହେଲାନାହିଁ । ସଭାମଞ୍ଚକୁ ଯିବା ଅବ୍ୟବହିତ ପୂର୍ବରୁ ଅଧ୍ୟକ୍ଷ ଚିତ୍ତଭାଇଙ୍କୁ ପଚାରିଲେ, ''ଆପଣ କେଉଁ ଭାଷାରେ କହିବେ ?'' ଚିତ୍ତଭାଇ ଅତି ସହଜ ଭାବରେ ଉତ୍ତର ଦେଲେ ''କାହିଁକି, ଓଡ଼ିଆରେ ।'' ଅଧ୍ୟକ୍ଷ କହିଲେ ''କଲେଜରେ ଓଡ଼ିଆ ଭାଷଣ ଅପେକ୍ଷା ଇଂରାଜୀ ଭାଷଣ ଅଧିକ ଆକର୍ଷଣୀୟ ହେବ, ଏଣୁ ଆପଣ ଓଡ଼ିଆରେ ନ କହି ଇଂରାଜୀରେ ବକ୍ତବ୍ୟ ପ୍ରଦାନ କରନ୍ତୁ ।'' ଚିତ୍ତଭାଇଙ୍କ ଉତ୍ତର ଥିଲା, ''ଓଡ଼ିଶାରେ ଓଡ଼ିଆ କବି ୰ଗଙ୍ଗାଧର ମେହେରଙ୍କ ନାମରେ ନାମିତ ମହାବିଦ୍ୟାଳୟ । ଏହିଠାରେ ଅଧ୍ୟୟନରତ ସମସ୍ତ ଛାତ୍ରଛାତ୍ରୀ ଓଡ଼ିଆ ଜାଣନ୍ତି, ବୁଝନ୍ତି ଓ କହନ୍ତି । ଅଧ୍ୟାପକ, ପ୍ରାଧ୍ୟାପକ ଏବଂ ଅନ୍ୟାନ୍ୟ ଉପସ୍ଥିତ ଭଦ୍ରବ୍ୟକ୍ତିଗଣ ପ୍ରାୟ ସମସ୍ତେ ଓଡ଼ିଆ ଭାଷା ସହିତ ସୁପରିଚିତ । ତେଣୁ ଓଡ଼ିଆରେ ନ କହି ଇଂରାଜୀରେ କହିବି କାହିଁକି ?'' ଦେଶୀ ଓ ବିଦେଶୀ ଭାଷା ମିଶି ପ୍ରାୟ ପନ୍ଦରଟି ଭାଷାରେ ପାଣ୍ଡିତ୍ୟ ଅର୍ଜନ କରିଥିବା ଚିତ୍ତରଂଜନ ଦାସ ସେଦିନ ନିଜ ଜିଦ୍‌ରେ ଅଟଳ ରହି ଓଡ଼ିଆରେ ଭାଷଣ ଦେଲେ । ସେହି ଭାଷଣ ଖୁବ୍ ହୃଦୟଗ୍ରାହୀ ତଥା ଆକର୍ଷଣୀୟ ହୋଇ ପାରିଥିଲା ବୋଲି ପରେ ଶ୍ରୋତାମାନେ ଉଚ୍ଚପ୍ରଶଂସା କରୁଥିବାର ଶୁଣାଗଲା । ସେଦିନ ସେଠାରେ ଓଡ଼ିଆ ପୁଅ ତଥା ଓଡ଼ିଶାର ଲବ୍ଧ ପ୍ରତିଷ୍ଠ କବି, ନାଟ୍ୟକାର, ପ୍ରାବନ୍ଧିକ, ଶିକ୍ଷାବିତ୍ ଡକ୍ଟର ମାନସିଂହଙ୍କର ବିଲାତ ଫେରନ୍ତା ଇଂରାଜୀ ପ୍ରୀତି ନିଶ୍ଚିତ ଭାବେ ବିଦେଶ ଫେରନ୍ତା ଶିକ୍ଷାବିତ୍, ସୁସାହିତ୍ୟିକ

ମାତୃଭାଷା ପ୍ରେମୀଙ୍କ ମାତୃଭାଷା ପ୍ରୀତି ନିକଟରେ ଲଜ୍ଜିତ ହୋଇଥିବ ନିଶ୍ଚୟ ।

୧୯୫୫ ମସିହାରେ ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟରେ ଜଣେ ବିଜ୍ଞାନ ଶିକ୍ଷକଭାବେ ଯୋଗ ଦେଇଥିଲେ ୰ଅନ୍ତର୍ଯ୍ୟାମୀ ଶତପଥି । ତାଙ୍କ ଘର କଟକ ଜିଲ୍ଲାର ବାଗଲପୁର ଗ୍ରାମରେ । ୰ଅନ୍ତର୍ଯ୍ୟାମୀ ବାବୁ ବୟସରେ ଚିତ୍ତଭାଇଙ୍କ ଠାରୁ ସାନ । ତାଙ୍କର ଅତି ପରିଚିତ । ଚିତ୍ତଭାଇଙ୍କ ଡାକରାରେ ସେହି ଜିଲ୍ଲାର କୋରୁଆ ହାଇସ୍କୁଲରୁ ଶିକ୍ଷକତା ଛାଡ଼ି ଚାଲି ଆସିଥିଲେ ଚଂପତିମୁଣ୍ଡାକୁ । ସେତେବେଳେ ଅବଶ୍ୟ କୋରୁଆ ହାଇସ୍କୁଲ ସରକାରୀ ହାଇସ୍କୁଲ ହୋଇ ନଥିଲା । ୰ଅନ୍ତର୍ଯ୍ୟାମୀ ବାବୁ ଯେପରି ଅଧ୍ୟବସାୟୀ, କର୍ତ୍ତବ୍ୟନିଷ୍ଠ, ମେଳାପୀ, ଛାତ୍ରବତ୍ସଳ ଥିଲେ ସେହିପରି ଥିଲେ ପରିଶ୍ରମୀ । ହେଲେ ତାଙ୍କର ଆର୍ଥିକ ଅବସ୍ଥା ଥିଲା ଅତ୍ୟନ୍ତ ଅସ୍ୱଚ୍ଛଳ । କୋରୁଆରେ ସେ ଟିଉସନ୍ କରିବାର ସୁବିଧା ପାଉଥିଲେ । ଚଂପତିମୁଣ୍ଡାରେ ଯୋଗଦେବାପରେ ସେଠାରେ ତ ଟିଉସନ୍‌ର ପ୍ରଶ୍ନ ନଥିଲା, ସେତେବେଳେ ତାଙ୍କୁ ମାସିକ ପାରିଶ୍ରମିକ ମିଳୁଥିଲା ମାତ୍ର ୧୧୦ଟଙ୍କା । ତାଙ୍କର ଅଭାବ ସଂସାର ସେହି ଅର୍ଥରେ ଚଳିବା ଦୁଷ୍କର ହେଲେ ମଧ୍ୟ ସେ ଚିତ୍ତଭାଇଙ୍କୁ କିଛି କହିପାରୁ ନଥିଲେ ।

ଥରେ ଚିତ୍ତଭାଇ ଅନୁଗୁଳ ବାଜିରାଉତ ଛାତ୍ରାବାସରେ ଥିବା ସମୟରେ ସାପ୍ତାହିକ ଅବକାଶରେ ଚିତ୍ତଭାଇଙ୍କୁ ନ ଜଣାଇ ସେ ନିଜ ଘରକୁ ଚାଲିଯିବା ଉଦ୍ଦେଶ୍ୟରେ ନିଜର ବିଛଣା ପତ୍ର ଧରି ଅନୁଗୁଳରେ ଯାଇ ପହଞ୍ଚିଥିଲେ । ଚିତ୍ତଭାଇ ଏହି ସମ୍ବାଦ ପାଇ ତାଙ୍କୁ ପିଲାଙ୍କ ଦ୍ୱାରା ପାଖକୁ ଡକାଇ ପଚାରିଲେ ଅନ୍ତର୍ଯ୍ୟାମୀ ତମେ କୁଆଡ଼େ ନ ରହିବା ପାଇଁ ଘରକୁ ବାହାରିଛ ? ଅନ୍ତର୍ଯ୍ୟାମୀ ବାବୁ କହିଲେ, "ନାହିଁ ଘରକୁ ଯାଉଥିଲି । ଚିତ୍ତଭାଇ ମନକଥା ବୁଝି କହିଲେ ଫେରିଚାଲ ଆମେ ଦୁହେଁ ଦରମା ସମାନ ବାଣ୍ଟିନେବା । ସେହିଦିନରୁ ପ୍ରଧାନ ଶିକ୍ଷକ ପାଉଥିବା ମାସିକ ଟ୨୩୦ଙ୍କା + ବିଜ୍ଞାନ ଶିକ୍ଷକ ଦରମା ଟ୧୧୦ଙ୍କା = ଟ.୩୪୦ଙ୍କାକୁ ଦୁଇଭାଗ କରି ସମାନ ଭାବରେ ଦୁଇଜଣ ନେଲେ । ଅନ୍ତର୍ଯ୍ୟାମୀ ବାବୁ ଚମ୍ପତିମୁଣ୍ଡାରେ ଗୋଟିଏ ବର୍ଷ ରହିବା ପରେ ସେହି ବର୍ଷ ନିଜ ଘରେ ଗ୍ରୀଷ୍ମାବକାଶ ମଧ୍ୟରେ ଅଚାନକ ହଇଜାରେ ତାଙ୍କ ଭାଇ, ଭାଉଜ ଓ ମା'ଙ୍କ ସହିତ ପ୍ରାଣ ହରାଇଲେ । ଉକ୍ତତା ପରିବାରକୁ ସଜାଡ଼ିବାରେ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ତାଙ୍କ ସ୍ତ୍ରୀ ଅନୁଗୁଳସ୍ଥ ମହିଳା ତାଲିମ ଶିବିରରେ ତାଲିମ ନେଲେ । ତାଙ୍କୁ ପ୍ରାୟ ଦୁଇବର୍ଷ ପର୍ଯ୍ୟନ୍ତ ଆମ ଜୀବନ ବିଦ୍ୟାଳୟର ଅନ୍ତେବାସୀଗଣ ମାସିକ ଆର୍ଥିକ ସହାୟତା ଯୋଗାଇ ଦେଇଥିଲୁ ।

ନନିଗୋପାଲ୍ ପାଲିତ୍

*ପ୍ରାକ୍ତନ ଛାତ୍ର, ଜୀବନ ବିଦ୍ୟାଳୟ*

# ନମସ୍କାର

'ପରାର୍ଥ ପଥିକ' ପ୍ରଥମ ଖଣ୍ଡ ବାହାରିଯିବା ପରେ ମୁଁ ଭାବିଲି ଚିତ୍ତଭାଇଙ୍କ ଉଦ୍ଦେଶ୍ୟରେ ମୁଁ କିଛି ଲେଖିବି । ହେଲେ କିଛି ଲେଖି ପାରିଲି ନାହିଁ । ଭାବିଲି କ'ଣ ଲେଖିବି ? ଏତେ ବଡ଼ ଜ୍ଞାନୀ ଦାର୍ଶନିକ, ତା'ପରେ ସେ ଏପରି ଉଦାରଚେତା ଯେ ସାଧାସିଧା ମଣିଷଟିଏ ପରି ଦିଶନ୍ତି । ତାଙ୍କରି ଛୁଆଁ ପାଇ ଅନେକ ଛାତ୍ରଛାତ୍ରୀ, ଶିକ୍ଷକଶିକ୍ଷୟିତ୍ରୀ, ଅଧ୍ୟାପକଅଧ୍ୟାପିକା ଅସଲ ମଣିଷଟିଏ ହେବାର ବାଟ ଖୋଜି ପାଇଛନ୍ତି । ସେହି ମଣିଷଟି କଥା ଲେଖିବାକୁ ଗଲାବେଳେ ମୋର ମନେ ହେଲା ଯେମିତି ମୁଁ ମହାସାଗରକୁ ଡେ଼ଇଁଛି । କିନ୍ତୁ ଡେଇଁବା ତ ସହଜ, ହେଲେ ତାର ଗଭୀରତା ଭେଦ କରି ଅଣ୍ଡାଳି ଅଣ୍ଡାଳି ପାଇ ପାରିବା ତ ସହଜ ନୁହେଁ ! ତା'ପରେ ତାର ବିଶାଳ ରତ୍ନ ଭଣ୍ଡାରକୁ କଳନା କରିବା ତ ଆହୁରି କଷ୍ଟସାଧ୍ୟ । ନା, କେବେ ଏହା ସମ୍ଭବ ନୁହେଁ । ତେବେ ସହଜ କଥାରେ ମହାସାଗରକୁ ରତ୍ନାକର ବୋଲି କହିଦେବା ଯେମିତି ଠିକ୍ ହେବ, ଚିତ୍ତଭାଇଙ୍କୁ ଚିତ୍ତଭାଇ ବୋଲି କହିଦେବା ସେମିତି ଠିକ୍ ହେବ । ବାସ୍....

ଚିତ୍ତଭାଇଙ୍କୁ ପୃଷ୍ଠା ପୃଷ୍ଠା କରି ପଢ଼ିଲେ ସରନ୍ତି ନାହିଁ । ଲେଖିଲେ ଶେଷ କଥାଟି ଲେଖା ହୋଇପାରେନା ଆହୁରି କଥା ବାକି ରହିଯାଏ । ତେବେ ଅନେକଙ୍କ ଠାରୁ ଶୁଣିଥିବା ଚିତ୍ତଭାଇଙ୍କୁ ନ ଲେଖି ଦେଖିଥିବା ଚିତ୍ତଭାଇଙ୍କୁ ଲେଖିବି । ସବା ଆଗ କିମିତି ତାଙ୍କୁ ପାଟି ଫିଟେଇଲି ।

ଦିନକର କଥା । ସେ ଖରିଦଚକରୁ କଟକ ଯିବା ବାଟରେ ମାର୍କୋଣା ଛକରେ ବସ୍‌ରୁ ଓହ୍ଲେଇ ପଡ଼ିଲେ । କାରଣ ଧୀରେନ୍ଦ୍ର, ବନମାଳୀ, ମାୟାଧରଙ୍କ ମିଳିତ ଉଦ୍ୟମରେ ଗୋଟିଏ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ଗଢ଼ି ଉଠିଥିଲା । (ସେହି ଚିତ୍ତଭାଇ ସେ ଅନୁଷ୍ଠାନର ନାଁ ଦେଇଥିଲେ 'ନବୋଦ୍ୟମ'- ବର୍ତ୍ତମାନ 'ଶ୍ରୀଅରବିନ୍ଦ ନବୋଦ୍ୟମ ଶିକ୍ଷା ନିକେତନ' ।) ମୁଁ କାମ କରୁଥିଲି ଦିବ୍ୟଜ୍ୟୋତି ପ୍ରେସ୍‌ରେ (ଯେଉଁ ପ୍ରେସର ଲବ୍ଧ ଅର୍ଥରେ ଅନୁଷ୍ଠାନ ଚାଲିଥିଲା) । ନାନା କାମରେ ବ୍ୟସ୍ତ ଥିଲି । ଖବର ପାଇଲି ଚିତ୍ତଭାଇ ଆସିଛନ୍ତି, ସେ ଖୁବ୍ ଶୀଘ୍ର କଟକ ଚାଲିଯିବେ । ଏକଥା ଶୁଣି ଚିତ୍ତଭାଇଙ୍କୁ ଦେଖା କରିବା ପାଇଁ ବ୍ୟସ୍ତ ହୋଇ ଧାଇଁଲି । ଆସି ଦେଖିଲି ସଭିଙ୍କ ଖାଇ ସାରିବା ପରେ ଯାହା ଥିଲା ସେହି ଶୁଖିଲା ଭାତ, ହାଣ୍ଡିପୋଛା ତରକାରୀକୁ ଆନନ୍ଦରେ ଖାଇ କରି ବିଶ୍ରାମ ନ ନେଇ, ବିଦ୍ୟାଳୟର ଭଲ ମନ୍ଦ କଥା ଦିପଦ ହୋଇ ତାଙ୍କ ଗନ୍ତବ୍ୟ

ପଥରେ ବାହାରି ପଡ଼ିଲେଣି । ମୁଁ ଆଗରୁ ଜାଣିଥିଲି ଚିତ୍ତଭାଇ କେବେ କେଉଁ ଅନୁଷ୍ଠାନକୁ ଅତିଥି ହୋଇ ଯାଆନ୍ତି ନାହିଁ ବା କାହାରି ଘରକୁ କୁଣିଆ ହୋଇ ଯାଆନ୍ତି ନାହିଁ । ସେ ଅନୁଷ୍ଠାନର ଜଣେ କର୍ମୀ ବା ପରିବାରର ଜଣେ ସଦସ୍ୟ ଭାବେ ଯାଆନ୍ତି ।

ଚିତ୍ତଭାଇଙ୍କୁ ଦର୍ଶନ କଲି ସଭକ୍ତି ସଶ୍ରଦ୍ଧ ଗୋଟିଏ ନମସ୍କାରରେ । ସ୍ମିତହସ ସହିତ ସେ ପ୍ରତିନମସ୍କାର ଅଜାଡ଼ି ଦେଇ କହିଲେ- କ'ଣ ଭଲ ? ମୁଣ୍ଡ ହଲାଇ ସମ୍ମତି ଜଣାଇଲି । ତା'ପରେ କ'ଣ କହିବି କ'ଣ କହିବି ଭାବୁ ଭାବୁ ସହଜ କଥାଟିଏ କହି ପକାଇଲି । କହିଲି- ଚିତ୍ତଭାଇ ମୁଁ ଗପଲେଖି ପାରେନି । ପିଲାମାନଙ୍କୁ ଶୁଣେଇବା ପାଇଁ ନାଟକଟିଏ ଲେଖିଛି । ମନସ୍ଥ କରିଛି ଏଇ ପିଲାମାନଙ୍କ ଦ୍ୱାରା ଅଭିନୟ କରାଇ ମଞ୍ଚସ୍ଥ କରିବି । ତାହା ପିଲାମାନଙ୍କର ଶିକ୍ଷଣୀୟ ହେବ କି ନାହିଁ, ତାହା ଦ୍ୱାରା ସେମାନଙ୍କ ଉପକାର ହେବ କି ନାହିଁ ଆପଣ ଥରେ ପାଣ୍ଡୁଲିପିଟି ଦେଖିଥାନ୍ତେ । ଏତିକି କହି ସାରିବା ପରେ କାଳ ବିଳମ୍ବ ନ କରି ଚିତ୍ତଭାଇ କହିଲେ, ମୁଁ କଟକ ଯାଉଛି, ତୁମେ ପାଣ୍ଡୁଲିପି ଦିଅ, ମୁଁ ପଢ଼ିସାରି ଡାକରେ ପଠେଇ ଦେବି । ପାଣ୍ଡୁଲିପିଟି ମୁଁ ହାତରେ ନେଇଥିଲି, କିନ୍ତୁ ସେ ଗ୍ରହଣ କରିବେ ବୋଲି ଭରସା ନଥିଲା । ଏଥର ଚିତ୍ତଭାଇ କହିବା ମାତ୍ରେ ପାଣ୍ଡୁଲିପିଟି ତାଙ୍କ ହାତକୁ ବଢ଼େଇ ଦେଲି, ସେ ସହଜରେ ତାଙ୍କ ଖଦଡ଼ ଝୁଲାରେ ସାଇତି ରଖିଲେ ।

ଇତି ମଧ୍ୟରେ ତେର ଦିନ ବିତି ଯାଇଛି । ମୁଁ ଅପେକ୍ଷା କରିଛି ଚିତ୍ତଭାଇ ନେଇଯାଇଥିବା ପାଣ୍ଡୁଲିପିଟି ଫେରିବ କେବେ । ଅଧିକ ଆଶାୟୀ ଥିଲି ପାଣ୍ଡୁଲିପିଟି ଉପରେ ଚିତ୍ତଭାଇଙ୍କର ମନ୍ତବ୍ୟ କ'ଣ ? କିନ୍ତୁ ପାଣ୍ଡୁଲିପିଟି, ପନ୍ଦର ଦିନରେ ରେଜେଷ୍ଟ୍ରି ଡାକ ଯୋଗେ ଆସି ପହଞ୍ଚିଲା । ତା' ସହିତ ଏକ ଚିଠିରେ ସେ ଲେଖିଛନ୍ତି-

ସୁଧାଂଶୁବାବୁଙ୍କ ଶିଶୁ ନାଟକ 'ଫୁଲ ଫସଲ' ବହିଟି ପଢ଼ିଲି । ଏହା ଖୁବ୍ ସରଳ ମନଛୁଆଁ ହୋଇଛି । ଆମ ଚାରି ପାଖରେ ଥିବା ଗଛଲତା ପଶୁପକ୍ଷୀମାନେ କେତେ ଜୀବନ୍ତ ଭାବରେ ଏଥିରେ କଥା କହିଛନ୍ତି । ଏହା ଆମ କୁନି କୁନି ପିଲାମାନଙ୍କ ପାଇଁ ଖୁବ୍ ମଉଜିଆ ତଥା ଶିକ୍ଷଣୀୟ ହୋଇଛି, ପ୍ରକୃତି ପାଇଁ ଆମ ମଣିଷମାନଙ୍କର ନିଷ୍ଠୁରତା ଆଜିକାଲି ବଢ଼ି ଯାଇଥିବା ବେଳେ ସୁଧାଂଶୁ ବାବୁଙ୍କର ଏଇ ନାଟକଟି କେତେ ନାହିଁ କେତେ ସଂବେଦନା ସୃଷ୍ଟି କରିଦେଇଛି । ଏହା ଛପା ହେଲେ ପିଲାମାନଙ୍କର ଖୁବ୍ ଉପକାରରେ ଆସିବ ।

ଚିତ୍ତଭାଇ-

କିଛି ଦିନ ପରେ ଶ୍ରୀଅରବିନ୍ଦ ନବୋଦ୍ୟମ ଶିକ୍ଷାନିକେତନ, ମାତୃଭୂମି,

ମାର୍କୋଣାରେ ଏକ ଶିବିରକୁ ସେ ଆସିଥାନ୍ତି । ଶିବିର ତିନିଦିନ ଧରି ଚାଲିଲା । ଉଦ୍‌ଯାପନ ଦିବସ ଦିନ ମୁଁ ଧୂପଦୀପ ଫୁଲ ସହ ଛାପା ଯାଇଥିବା ଫୁଲ ଫସଲଟିକୁ ଗୋଟିଏ ଥାଳିରେ ସଜେଇ ଚିତ୍ତଭାଇଙ୍କ ସମ୍ମୁଖରେ ଥୋଇଲି । କହିଲି ଏଇ ଫସଲ କିଆରିରୁ ଆପଣ ଫୁଲ ତୋଳନ୍ତୁ । ସେ ହସ ହସ ମୁହଁରେ ଥାଳିଟିକୁ ଧରି କହିଲେ, ଭଲ କଥା ଏଇ ଶିଶୁନାଟକ ଫୁଲ ଫସଲକୁ ଆଜି ଆମେ ଗୋଟିଏ ଶିଶୁ ଦ୍ୱାରା ଉନ୍ମୋଚନ କରିବା । ସଭିଙ୍କ ସମ୍ମୁଖରେ ତାହା ହିଁ ହେଲା । ନିକଟ ଅତୀତରେ ସେହି ଉଦାର ସ୍ନେହଶୀଳ ଚିତ୍ତଭାଇଙ୍କ ନିକଟରେ ମୁଣ୍ଡ ନୁଆଇଁ ଦେଇ ମୋର ସଦ୍ୟ ପ୍ରକାଶିତ 'ମାଟି ସରଗ'କୁ ଉତ୍ସର୍ଗ କରିଦେଇଛି । ବିନମ୍ର କଣ୍ଠରେ ଗାଇଛି-

ଗଭୀର ସାଗର ତୁମେ
    ହେ ଚିତ୍ତରଂଜନ ।
କଳନା କରି ହେଉନି
    ତୁମ କୋଠ ଭଣ୍ଡାରରେ
କେତେ ଅଛି ଅମୂଲ୍ୟ ରତନ ।
ମୁଁ ବସି ଏ ବେଳା ଭୂଇଁ ପରେ ।
ଗୋଟି ଗୋଟି ଢେଉଗଣି
ଟିପୁଛି ମୋ ହିସାବ ଖାତାରେ ।
ସାଧାସିଧା ମଣିଷଟି-
    ନାହିଁ ତୁମ ପରଆପଣାର
ମମତାର ଶ୍ରୀକ୍ଷେତ୍ର ହେ
    ଜଣାଉଛି କୋଟି ନମସ୍କାର ।

ସୁଧାଂଶୁ ଶେଖର ବେହେରା
*ଶ୍ରୀଅରବିନ୍ଦ ପ୍ରଜ୍ଞାପୀଠ, ସାବିତ୍ରୀ ବିହାର, ଭଦ୍ରକ*

# ଚିତ୍ତଭାଇ : କିଛି ଅନୁଭୂତି ଓ ସ୍ମୃତି

ଚିତ୍ତଭାଇଙ୍କ ସହ ମୋର ପ୍ରଥମ ପରିଚୟ ଲେଖକ ଚିତ୍ତରଂଜନ ଦାସ ଭାବରେ ହୋଇଥିଲା । କଲେଜରେ ପଢୁଥିବା ବିଭିନ୍ନ ପତ୍ର ପତ୍ରିକାରେ ତାଙ୍କର ଲେଖାଗୁଡ଼ିକ ପଢ଼ିଥାଏ । ବିଶେଷତଃ "ଜାତିରେ ମୁଁ ଯବନ" ଅନ୍ୟ ଗତାନୁଗତିକ ପ୍ରବନ୍ଧଗୁଡ଼ିକଠାରୁ ସମ୍ପୂର୍ଣ୍ଣ ଭିନ୍ନ ଲାଗିଥିଲା । ପଢ଼ା ସରିବା ପରେ ଶିକ୍ଷୟିତ୍ରୀ ଭାବରେ

ଯୋଗ ଦେଲି ସମ୍ବଲପୁରର ମ୍ୟୁନିସିପାଲ୍ ଉଚ୍ଚ ବାଳିକା ବିଦ୍ୟାଳୟରେ । ମୋ ସହ ଶିକ୍ଷୟିତ୍ରୀ ଥାଆନ୍ତି ଶ୍ରୀମତୀ ନଳିନୀ ପାଣିଗ୍ରାହୀ । ତାଙ୍କ ସହ ଥରେ ମୁଁ ତାଙ୍କ ଗାଁକୁ ଯାଇଥାଏ । ସେଇଠି ତାଙ୍କର ବଡ଼ଭାଇ ଶାନ୍ତି ଦାଦାଙ୍କ ସହ ସାକ୍ଷାତ୍ ହେଲା । ସେ ହେଉଛନ୍ତି ଚିତ୍ତଭାଇଙ୍କ ଛାତ୍ର । ଶାନ୍ତିଦାଦା ଚମ୍ପଉିମୁଣ୍ଡାଠାରେ ଥିବା ଜୀବନ ବିଦ୍ୟାଳୟରେ ପଢୁଥିଲେ । ଚିତ୍ତଭାଇ ସେତେବେଳେ ଜୀବନ ବିଦ୍ୟାଳୟରେ ଶିକ୍ଷକ । ଶାନ୍ତିଦାଦା (ଶାନ୍ତିକୁମାର ପାଣିଗ୍ରାହୀ) ଏପରି ଗଦ୍‌ଗଦ୍ ହୋଇ ଚିତ୍ତଭାଇ ଏବଂ ଜୀବନ ବିଦ୍ୟାଳୟ ବିଷୟରେ ବର୍ଣ୍ଣନା କଲେ ଯେ ତାହା ଭୁଲିବାର ନୁହେଁ । ସେଇଠୁ ପରିଚୟ ହେଲା ଶିକ୍ଷକ ଚିତ୍ତରଂଜନ ଦାସଙ୍କ ସହ । ସେତେବେଳେ ମୁକ୍ତକଣ୍ଠ ଭାଇ ଏବଂ ନିରୁପମାଙ୍କ ସହ ଆଦର୍ଶଗତ ଭାବରେ ଆତ୍ମୀୟତା ସୃଷ୍ଟି ହୋଇଥାଏ । ମୁଁ ସେମାନଙ୍କୁ ଶାନ୍ତିଦାଦା ଓ ଜୀବନ ବିଦ୍ୟାଳୟ ବିଷୟରେ କହିଲି । ମୁକ୍ତକଣ୍ଠ ଭାଇ ଚିତ୍ତଭାଇଙ୍କ ଲେଖା ''ଜୀବନ ବିଦ୍ୟାଳୟ' ବହି ଆଗରୁ ପଢ଼ିଥିଲେ । ସେ ଆମକୁ ଏହି ବହି ପଢ଼ିବାକୁ କହିଲେ । ଆମେ 'ଜୀବନ ବିଦ୍ୟାଳୟ' ବହି ଆଣି ପଢ଼ିଲୁ, ଆଲୋଚନା କଲୁ । ଶାନ୍ତି ଦାଦାଙ୍କ ସହିତ ପୁଣି ତିନିଜଣ ମିଶି ଆଲୋଚନା କରିବା ପାଇଁ ଗଲୁ । ଶାନ୍ତିଦାଦା ଆମକୁ ଜଣାଇଲେ ଯେ ଚିତ୍ତଭାଇ ଏବେ ପୂର୍ଣ୍ଣାଙ୍ଗ ଶିକ୍ଷା ଆନ୍ଦୋଳନ ସହ ସମ୍ପୃକ୍ତ ଅଛନ୍ତି । ପ୍ରସଙ୍ଗ କ୍ରମେ ପୁଣି ଅନୁପ ମିଶ୍ରଙ୍କ ସହ ପରିଚୟ ହେଲା । ତାଙ୍କଠାରୁ ଶ୍ରମ ଶିବିର କଥା ଜାଣିବାକୁ ପାଇଲୁ । ସେଥର ଖରାଦିନିଆ ଶିବିର ବରହମ୍ପୁରରେ ହେଉଥାଏ । ମୁକ୍ତକଣ୍ଠ ଭାଇ, ମୁଁ, ନିରୁପମା ଓ ଅନୁପ ଭାଇ ମିଶି ବରହମ୍ପୁର ଗଲୁ । ଶିବିର ଆରମ୍ଭ ହେବାର ଦିନକ ଆଗରୁ ସେଠି ପହଞ୍ଚି ଯାଇଥିଲୁ । ସେଇଠି ପ୍ରତ୍ୟକ୍ଷ ପରିଚୟ ହେଲା ଲେଖକ, ଶିକ୍ଷକ, ଦିଗ୍‌ଦର୍ଶକ ଚିତ୍ତଭାଇଙ୍କ ସହିତ । ସେଇ ଶ୍ରମ ଶିବିରରେ ବିଭିନ୍ନ ଆଲୋଚନା ଓ କଥାବାର୍ତ୍ତା ଦ୍ୱାରା ଆମେ ଚିତ୍ତଭାଇଙ୍କ ଦ୍ୱାରା ଖୁବ୍ ପ୍ରଭାବିତ ହୋଇଥାଉ । ସେଇଠୁ ଆସି ଆଦିବାସୀ ଓ ଜଙ୍ଗଲ ଅଞ୍ଚଳ ମେଘପାଲଠାରେ 'ଜୀବନ ବିଦ୍ୟାଳୟ'ର ଆରମ୍ଭ ହେଲା । ଚିତ୍ତଭାଇ ମେଘପାଲ ଆସିଲେ । ବିଭିନ୍ନ ଅବସରରେ ଚିଠିପତ୍ର ଏବଂ ଦେଖାସାକ୍ଷାତ୍‌ରୁ ସମ୍ପର୍କ ବଢ଼ିଲା । ସମସ୍ତ ଅନୁଭୂତି ମଧ୍ୟରେ କିନ୍ତୁ ସବୁଠାରୁ ଜୀବନ୍ତ ଏବଂ ହୃଦୟସ୍ପର୍ଶୀ ହୋଇଥିଲା ବରହମ୍ପୁରର ଅନୁଭୂତି । ସେଇଠି ଆହୁରି ଅନେକ ସାଥୀଙ୍କ ସହ ପରିଚୟ ହୋଇଥିଲା ।

ଚିତ୍ତଭାଇଙ୍କର ବ୍ୟକ୍ତିତ୍ୱକୁ ଆଲୋଚନା କରିବାର ଅଭିପ୍ରାୟ ମୋର ନାହିଁ । କିନ୍ତୁ ଅନୁଭବରୁ ଜାଣିପାରିଛି ଯେ କେବଳ ଆଦର୍ଶର କଥା କହୁଥିବା କିମ୍ବା ଲେଖୁଥିବା ବ୍ୟକ୍ତିତ୍ୱ ଏ ନୁହଁ । ଆଦର୍ଶକୁ ପାଳନ କରିବାର ପରାକାଷ୍ଠା ତାଙ୍କଠାରେ

ଦେଖିବାକୁ ମିଳେ । ଶ୍ରମ ଶିବିରରେ ମାଟିଖୋଳାଠାରୁ ଆରମ୍ଭ କରି ଛାତ୍ରମାନଙ୍କ ସହ ମିଶିବା ପର୍ଯ୍ୟନ୍ତ ସବୁଠି ସେ କହିବାଠାରୁ କାମରେ ଜିଣି ଯାଆନ୍ତି । 'ଜୀବନ ବିଦ୍ୟାଳୟ' ମେଘପାଳଠାରେ ଥରେ ସାତଦିନିଆ ଶିବିର ହୋଇଥିଲା । ଚିତ୍ତଭାଇ ପିଲାଙ୍କ ସହ ପ୍ରସ୍ତାବ କଲେ ଗୋଟିଏ ପରିସ୍ରାଗାର ତିଆରି କରିବା । ଛିଣ୍ଡା ସାରବସ୍ତାକୁ ଖୁଣ୍ଟରେ ଘେରାଇ ଆଶ୍ରମର ପରିସର ଭିତରେ ଗୋଟିଏ କୋଣରେ ପରିସ୍ରାଗାରଟିଏ କରାଗଲା । କେହି ବି ପିଲା ସେ ପରିଶ୍ରାଗାରକୁ ପରିସ୍ରା କରିବାକୁ ଯାଉ ନଥିଲେ । କିନ୍ତୁ ଚିତ୍ତଭାଇ ତାକୁ ବ୍ୟବହାର କଲେ ଏବଂ ପିଲାଙ୍କୁ ନିଜ କାମର ସଠିକ୍ ବ୍ୟବହାର ବିଷୟରେ ଶିକ୍ଷାଦେଲେ ।

ପିଲାଙ୍କ ସହ ମିଶିବାରେ ତାଙ୍କୁ କେହି ବି ଟପିଯିବ ନାହିଁ । ଏକଥା ସମସ୍ତେ ଜାଣନ୍ତି । ତାଙ୍କ ଲେଖାଗୁଡ଼ିକରେ ଶିକ୍ଷକର ଯେଉଁ ଭୂମିକା ସେ ବର୍ଣ୍ଣନା କରନ୍ତି ତାକୁ ସେ ଅକ୍ଷରେ ଅକ୍ଷରେ ପାଳନ କରନ୍ତି । ପିଲାମାନେ ସବୁବେଳେ ତାଙ୍କୁ ଘେରି ରହିଥାନ୍ତି । ଫୁଲବାଣୀର କିଶୋର-ଲେଖକ-କର୍ମଶାଳାର କଥା ଏଠି ମନେ ପଡ଼େ । ଜଣେ ପିଲାକୁ ସେ ସମୟରେ ମେଲେରିଆ ଜ୍ୱର ହେଲା । ପିଲାଟି ନବୋଦୟ ବିଦ୍ୟାଳୟର ଛାତ୍ର । ତେଣୁ ସେ ଘରଛାଡ଼ି ହଷ୍ଟେଲରେ ରହି ପାଠ ପଢୁଥାଏ । ନିଶ୍ଚିତ ଭାବରେ ସେ ବାପା ମା'ଙ୍କୁ ଖୋଜୁଥିବ । ଚିତ୍ତଭାଇ ତା' ପାଖେ ପାଖେ ରହିଥାନ୍ତି । ପିଲାଟି ତାଙ୍କ ଲୁଗାରେ ବାନ୍ତି ବି କରିଥିଲା । କିନ୍ତୁ ଜଣେ ମା ଭଳି ସେ ବାନ୍ତିକୁ ଧୋଇଲେ ବି ନାହିଁ । ଲୁଗା ବଦଳେଇ ବି ନଥିଲେ । ୧୩-୧୪ ବର୍ଷର ପିଲାଟି ତାଙ୍କ ଭିତରେ କାହାକୁ ଦେଖିଲା କେଜାଣି ତାଙ୍କୁ କାଖ କରି ନେବାପାଇଁ କହିଲା । ଚିତ୍ତଭାଇ ବି ତାକୁ କାଖକରି ତା' କୋଠରୀକୁ ସଭା ଜାଗାକୁ ନେଇ ଆସିଲେ । କଠୋର ସମାଲୋଚନା ପାଇଁ ପ୍ରଖ୍ୟାତ ଚିତ୍ତଭାଇ ପୁଣି କେଡ଼େ କୋମଳ !

ସମାଲୋଚକ ସମୀକ୍ଷକ ଚିତ୍ତଭାଇଙ୍କ ସମାଲୋଚନାକୁ ଗ୍ରହଣ କରିବାର କ୍ଷମତା ମଧ୍ୟ ଉଲ୍ଲେଖନୀୟ । ବରହମ୍ପୁର ଶ୍ରମ ଶିବିରରେ ଆଲୋଚନା ପ୍ରସଙ୍ଗରେ ସମସ୍ତେ ଶ୍ରୀଅରବିନ୍ଦ ସାହିତ୍ୟ ସମ୍ବନ୍ଧୀୟ ଅନୁଭୂତି ବର୍ଣ୍ଣନା କରୁଥାନ୍ତି । ମୋର ପାଳିବେଳେ ମୁଁ କହିଥିଲି ଯେ ଶ୍ରୀ ଅରବିନ୍ଦଙ୍କର କ୍ଲିଷ୍ଟ ଇଂରାଜୀ ମୁଁ ବୁଝି ପାରେ ନାହିଁ । କାରଣ ମୁଁ ଇଂରାଜୀ ସାହିତ୍ୟରେ ଦୁର୍ବଳ । ତା'ଛଡ଼ା ଶ୍ରୀ ଅରବିନ୍ଦଙ୍କ ବହିଗୁଡ଼ିକର ଓଡ଼ିଆ ଅନୁବାଦ ମଧ୍ୟ ବୋଧଗମ୍ୟ ଓ ରୁଚିପୂର୍ଣ୍ଣ ହୋଇନାହିଁ । ମୁଁ ସେତେବେଳେ ଜାଣି ନଥିଲି ଯେ ଚିତ୍ତଭାଇ ସେ ସବୁ ଅନୁବାଦ କରିଛନ୍ତି । ଚିତ୍ତଭାଇ ସେଠି ବସିଥିଲେ; କିନ୍ତୁ ସେତିକି ବେଳେ କିମ୍ବା ପରେ ବି ସେ ଏକଥା ମନେ କହି ନାହାନ୍ତି କିମ୍ବା ଦୁଃଖିତ ବି ହୋଇ ନାହାନ୍ତି । ପରେ ମୁଁ ନିଜେ ଲଜ୍ଜିତ ହୋଇଥିଲି ।

'ଜୀବନ ବିଦ୍ୟାଳୟ' ମେଘପାଳ ହେଉ କିମ୍ବା ଶିକ୍ଷକ କର୍ମଶାଳା ହେଉ କିମ୍ବା କିଶୋର-ଲେଖକ କର୍ମଶାଳା ହେଉ ପ୍ରତ୍ୟେକ ସ୍ଥାନରେ ଆଦିବାସୀ ପିଲାଙ୍କ ସହିତ ମିଳାମିଶା ତଥା ତାଙ୍କୁ ତାଙ୍କର ଜୀବନରେ ଉନ୍ନତି କରିବା ସକାଶେ ଉତ୍ସାହିତ କରିବାର ପଦ୍ଧତିରୁ ଆଦିବାସୀଙ୍କ ପ୍ରତି ତାଙ୍କର ଆନ୍ତରିକତା ତଥା ସମ୍ମାନ ଜଣାପଡ଼େ । ପିଲାଙ୍କୁ ସେ ସବୁବେଳେ କହନ୍ତି, ଯାହା ଦ୍ୱାରା ଅନ୍ୟକାମ ହେଉଛି ତାହା ଦ୍ୱାରା ପାଠ କାହିଁକି ହେବ ନାହିଁ ? 'ଭାରତର ଉନ୍ନତି ଭାରତର ପ୍ରତ୍ୟେକ ମଣିଷର ଉନ୍ନତି ହେଲେ ଯାଇ ହେବ' ଏହିକଥା ସେ ଯେପରି ଲେଖିଥାନ୍ତି ସେହିପରି ସେ ଦିଗରେ କାମ ବି କରନ୍ତି । ସ୍ୱାଧୀନତା ପରେ ଭାରତର ଯେପରି ଉନ୍ନତି ହେବାକଥା ତାହା ୫୫ ବର୍ଷ ପରେ ମଧ ହୋଇପାରିଲା ନାହିଁ । ଏହି ଅସନ୍ତୋଷ ତାଙ୍କର ପ୍ରତ୍ୟେକ ଲେଖାରେ ପ୍ରକାଶିତ ହୁଏ । ଏହି ଅସନ୍ତୋଷକୁ ସେ ସମସ୍ତଙ୍କ ନିକଟକୁ ସଞ୍ଚାରିତ ବି କରନ୍ତି, କାରଣ ତାଙ୍କ ମତରେ ସନ୍ତୁଷ୍ଟ ଘୁଷୁରୀ ହେବାଠାରୁ ଅସନ୍ତୁଷ୍ଟ ମଣିଷ ହେବା ଭଲ । ଅସନ୍ତୋଷ ହେଲେ ଯାଇ ମଣିଷ ଅଧିକ କିଛି ହେବାକୁ ଚାହେଁ, କରିବାକୁ ଚାହେଁ, ଶିକ୍ଷକ ଭାବରେ, ସମାଜକର୍ମୀ ଭାବରେ ଏବଂ ସର୍ବୋପରି ଜଣେ ମଣିଷ ଭାବରେ ତାଙ୍କର ଲେଖା ଓ କାମ ପ୍ରତ୍ୟେକକୁ ପ୍ରେରଣା ମିଳିଛି ଏବଂ ମିଳୁଥିବ ।

ଶ୍ରୀମତୀ ଅନୁରାଧା ପୁରୋହିତ
*ମାନବ କଲ୍ୟାଣ ପ୍ରତିଷ୍ଠାନ, ସମ୍ବଲପୁର*

# ସେ ଜଣେ ନମ୍ର ମଣିଷ

ଅନେକ ଭିଜେଇଥିବା ବହୁ କଥାରୁ ଏ ଗୋଟିଏ କଥା । ''କେହି ଶୁଣି ନାହାନ୍ତି '' ଓଡ଼ିଆରେ ଭାଷାନ୍ତରିତ "Unheard Voices" ଶୀର୍ଷକ ଇଂରାଜୀ ବହିର ଉନ୍ମୋଚନ ଦିବସ ।

'ରେଡକ୍ରସ୍' ଭବନରେ ବହୁ ଉତ୍ସାହୀ ଝିଅପୁଅଙ୍କ ମଧ୍ୟରେ ମୂଳ ଇଂରାଜୀ ଲେଖକ ଶ୍ରୀ ହର୍ଷ ମନ୍ଦେର୍ ଉପସ୍ଥିତ ଥାଆନ୍ତି । ଉତ୍ସବ କୋଠରୀଟିର ସାଜସଜ୍ଜା, ଆଉ ଉପସ୍ଥିତ ଭାଇଭଉଣୀଙ୍କର ଉଚ୍ଛୁଳା ଉତ୍ସାହିତ ଆଚରଣ, କୋଠରୀଟିର ଆଉ ସେ ସଂଧ୍ୟାର ପରିବେଶ ମନେ ପକାଇ ଦେଉଥାଏ ଶ୍ରୀଅରବିନ୍ଦଙ୍କର ସାବିତ୍ରୀ ମହାକାବ୍ୟର ସେ ବାକ୍ୟଟି "Joy is ours, let us give joy to all" । ସଙ୍ଗେ ସଙ୍ଗେ ପ୍ରଶ୍ନ ମଧ ଅଙ୍କୁରି ଉଠୁଥାଏ : ''ଆନନ୍ଦ ସମସ୍ତିଙ୍କୁ ନ ମିଳୁଛି କାହିଁକି ? ପ୍ରକୃତ ଆନନ୍ଦ ମଣିଷର କଅଣ ?''

ସୁସଜ୍ଜିତ ମଂଚରେ ସମସ୍ତେ ଅଛନ୍ତି; ନାହାନ୍ତି ଚିତ୍ତରଂଜନ ଦାସ, ଅନୁବାଦକ।

ମଂଚ ନିକଟ ଖାଲିଥିବା ସାମ୍ନା ଧାଡ଼ି ଆଡ଼କୁ ମୁଁ ଆଗେଇ ଯାଉ ଯାଉ ଜଣେ ବାବୁ ହାତ ଦେଖାଇ ଇସାରା ଦେଲେ ସଭା ଆଗ ଧାଡ଼ିର ଠିକ୍ ପଛ ଧାଡ଼ିକୁ ମୁଁ ବସିବା ପାଇଁ। ଆଗ ଧାଡ଼ିର ଚଉକି ଗୁଡ଼ିକର ଏକ ବିଶେଷ ମୂଲ୍ୟଥିଲା ଅନ୍ୟ ସମସ୍ତ ଚଉକି ଅପେକ୍ଷା। ଏ ଚଉକିଗୁଡ଼ିକ ମଂଚସ୍ଥ ଚଉକିରୁ କିଛି ବଳକା ଥିଲା ଏବଂ ଆଗରେ ପଡ଼ିଥିଲା ଉଦ୍ଦେଶ୍ୟ ପୂର୍ଣ୍ଣ ଭାବେ। ମଂଚକୁ ଯିବା ପୂର୍ବରୁ ଆମନ୍ତ୍ରିତ ବ୍ୟକ୍ତି ମାନଙ୍କପାଇଁ ତାହା ଉଦ୍ଦିଷ୍ଟ ଥିଲା।

ଏହି ଇସାରା ମୋତେ ଟିକିଏ ଆଘାତ ଦେଲା, ଆଘାତ ଚାପିରଖି ପଛ କିଛି ଧାଡ଼ିରେ ବସିଛି, ମନେ ପଡୁଥାଏ, ପ୍ରାଣାନ୍ତକ କଷ୍ଟ ଦିଆଯାଇ ଯେଉଁ ଲୋକଟିକୁ ବିଦା କରିଦେଲେ ଆମ ମଧ୍ୟରୁ କିଛି ଲୋକ, ଯଦିଓ ଆଜି ସମସ୍ତେ ତାଙ୍କରି ମୂର୍ତ୍ତିକୁ ବିଭିନ୍ନ ରୂପରେ ନିଜର ଦେହରେ ଝୁଲାଇ ବୁଲୁଛନ୍ତି। ସେ ହେଲେ 'ଯୀଶୁଖ୍ରୀଷ୍ଟ' ଯାହାଙ୍କର ଏ କଥାଟି କେତେ ନିଛକ ସତ : ''ଏପରି ଜାଗା ଦେଖି ବସ, ତୁମକୁ ଖୋଜି ଲୋକ ଡାକିବେ ବିଶେଷ ଜାଗାକୁ ଯିବା ପାଇଁ, ପଛକୁ ଯିବାପାଇଁ ଅନ୍ତତଃ ପଡ଼ିବ ନାହିଁ।''

ସଭା ଆରମ୍ଭ ହୁଏ, ଅତିଥି ପରିଚୟ ଭିତରେ ଡାକରା ହେଲା ଚିତ୍ତରଂଜନ ଦାସଙ୍କୁ। ଜଣେ ଉଦ୍ୟୋକ୍ତା କେତେ ନମ୍ରତା ସହ ଚିତ୍ତଭାଇ ବସିଥିବା ଚଉକିରୁ ହାତ ଧରି ମଂଚକୁ ନେଇଯିବା ପାଇଁ ଆଗେଇ ଆସିଲେ। ମୁଁ ଚାହିଁଲା ବେଳକୁ ମୋରି ପଛଧାଡ଼ି ଚଉକିରେ ବସିଛନ୍ତି ସେ ଅନୁବାଦକ। ବସିବା ଚଉକି ଛାଡ଼ି ମଂଚକୁ ସେ ଗଲେ ନାହିଁ। ହେଲେ କି ସାବଲୀଳ ଅକାଟ୍ୟ ନମ୍ର ଆଉ ସ୍ନେହ ଆପ୍ଳୁତ ସେ ଉତ୍ତର ଥିଲା ଚିତ୍ତଭାଇଙ୍କର- ''ମୁଁ ଏଠାରେ ବସିଛି, ସଭାପତିଙ୍କ ଅନୁମତି ନେଇ।''

ସଭା କାର୍ଯ୍ୟ ସରିବା ପ୍ରାୟ। ସଭାପତିଙ୍କ ପୁଣି ଅନୁରୋଧ ଅନୁବାଦକ କିଛି ହେଲେ କହିବାପାଇଁ। ଚିତ୍ତଭାଇ କଥା ରଖି ଗଲେ, ଖୁବ୍ ଅଳ୍ପକହିଲେ, ସବୁଠୁ ଦରକାର ଉପାଦେୟ ପରିପ୍ରେକ୍ଷୀକୁ ଖାପଖୁଆଇ କହିଲେ କଥାଟିଏ ''ଆମେ କିଛି ନ କରି ପାରୁଥାଉଁ ବୋଲି ଆମକୁ କୁହାଯାଇଛି ବୁଦ୍ଧିଜୀବୀ''।

ସେ ସଭାସ୍ଥଳରେ କେବଳ ଉପସ୍ଥିତ ଥିଲେ ସେହି ପଦଭ୍ରଷ୍ଟ ଭାଇଭଉଣୀମାନେ। କିଛି ସଂକୋଚ, ଭୟ, ମୋହବଦ୍ଧ ନଥିଲା ଚିତ୍ତଭାଇଙ୍କ ଏହି ନିଛକ ସତ କଥାଟି କହିବାରେ, ହେଲେ ତାଙ୍କର ସେହି କହିବାର ବାଗ ଅନ୍ୟ କେତେକଙ୍କ ମନଛୁଇଁଲା କି ନାହିଁ କେଜାଣି ? କେତେକ କଥାଟି ଭଲରେ

ନେଇଥିବେ । ଆଉ କେତେକ ସତକଥାଟିରେ ଆଘାତ ହୁଏତ ପାଇଥିବେ । ଏ କଥାଟି ଯେତିକି ସତ, ଚିତ୍ତଭାଇଙ୍କ କହିବା ଢଙ୍ଗଟି ଅଧିକ ସତ ଏବଂ ଏତେ ହୃଦୟସ୍ପର୍ଶୀ ଯେ, ଆଘାତ ପାଇଲେ ମଧ୍ୟ କିଛି ପ୍ରତି ଆଘାତ ଦେବାକୁ ମନ ବଳିବ ନାହିଁ । ସାହସ ତ କୁଳାଇବ ନାହିଁ  ନିଶ୍ଚୟ, ଚିତ୍ତଭାଇ କହୁଛନ୍ତି, ତାଙ୍କ କଥାକୁ କାଟିଲେ, ଅନ୍ୟମାନେ ସହ୍ୟ କରିବେ ତ ! ସଭାପତିଙ୍କ ଭାଷଣ ଜଣାଇ ଦେଲା ଯେ, ସେ ଥିଲେ ଚିତ୍ତଭାଇଙ୍କର ଜଣେ ନିଜର ସ୍ନେହାଧୀନ ଲୋକ । ଚିତ୍ତଭାଇ ତାଙ୍କ ଅନୁରୋଧ ରକ୍ଷାକରି ଯେ କେତେପଦ କହିଲେ ସେଥିପାଇଁ ସଭାପତି ନିଜେ କୃତଜ୍ଞ ।

ଉନ୍ମୋଚିତ ବହିଟିରୁ ବହିଟିଏ ସଭାପତି ନିଜେ ଚିତ୍ତଭାଇଙ୍କୁ ସସମ୍ମାନେ ଉପହାର ଦିଅନ୍ତି, ତାଙ୍କ ଚୌକି ପାଖକୁ ଆସି, ସତେ ସେ ବେଢଟି ବେଶ୍ ଉପଭୋଗ୍ୟ ଥିଲା ଖାଲି ମୋ ପାଇଁ କିଆଁ, ଉପସ୍ଥିତ ସମସ୍ତିଙ୍କ ପାଇଁ । ପ୍ରକୃତ ଗୁଣୀ ଲୋକର ଆଦର ଯୁଗେ ଯୁଗେ ଥିଲା  ଆଉ ରହିବ ।

ଚିତ୍ତଭାଇ ସେଇଠି ବହିଟିକୁ ବଢ଼ାଇ ଦେଲେ ମୋ ହାତକୁ । ମୋର ସତେ ଏକାନ୍ତ ଇଚ୍ଛା ଥିଲା । ଚିତ୍ତଭାଇ ମୋ ମନ ଜାଣିପାରି କାମଟିଏ କଲେ । ମୋ ହୃଦୟ ଖୁସି ଓ କୃତଜ୍ଞତାରେ ଭରିଗଲା ।

ସଭାମଂଚରେ ସସମ୍ମାନ ଚୌକିରେ ବସିବାର ଅନୁରୋଧକୁ ଏପରି ବିନମ୍ର ଭାବରେ ପ୍ରତ୍ୟାଖ୍ୟାନ କରିଥିବା ମଣିଷଟି କଥା ଭାବୁ ଭାବୁ ମୋ ମନକୁ ଆସିଲା ନିକଟରେ "Times of India" ଇଂରାଜୀ ଦୈନିକରେ ପ୍ରଖ୍ୟାତ କାର୍ଟୁନିଷ୍ଟ ଲକ୍ଷ୍ମଣଙ୍କ ଦ୍ୱାରା ଅଙ୍କିତ ଏକ ଚିତ୍ର । ସେ ଚିତ୍ରରେ ଗୋଟିଏ ଚଉକିକୁ ଦୁଇଜଣ କ୍ୟାବିନେଟ୍ ମନ୍ତ୍ରୀ ଦୁଇପଟୁ ଟାଣୁଥିଲେ । କିଏ ସେ ଚଉକିରେ ବସିବ ସେ.ପାଇଁ ବଳ କଷାକଷି ହେଉଥିଲେ ।

ମନରେ ପ୍ରଶ୍ନ ଆସିଲା ଏହି ତୁଚ୍ଛ ଚୌକିପାଇଁ ଆମେ କେତେ କର୍ମ, ଅପକର୍ମ ନିର୍ବିକାରରେ କରି ଚାଲି ନଥାଉଁ !

ଏବଂ ମନେ ପଡ଼ିଲା ଶ୍ରୀଅରବିନ୍ଦଙ୍କର ସେ ବାକ୍ୟଟି :

"We are waisting unmeasured toil on trivial things.

ସତେ  ଆମେ କିଛି ଲୋକ ଯଦି ଏହି ତୁଚ୍ଛା ଚୌକିମୋହର ଊର୍ଦ୍ଧ୍ୱକୁ ଯାଇ 'କେହି ଶୁଣିନାହାନ୍ତି' ବହିଟିର ଚରିତ୍ରଗୁଡ଼ିକ ଆଡ଼କୁ ହୃଦୟର ସହିତ ଆଖି ଫେରାଇ ପାରନ୍ତେ, ସେହି ଶତ ହୃଦୟର ଜୀବନ୍ତ ସତ ଚୌକିଗୁଡ଼ିକ ଆମକୁ ସ୍ଥାନ ଦେଇ ଆମ ଜୀବନକୁ କେତେ ମହତ୍ କରି ନ ଦିଅନ୍ତା ?

ଚିତ୍ତଭାଇଙ୍କ ସହ କିଛି ଅଧିକ ଦିନ ମିଶି ପାରିଲେ  ମନଟା ସିଆଡ଼େ

ଯାଆନ୍ତା ନିଶ୍ଚୟ । ସର୍ବନିୟନ୍ତା ତାଙ୍କୁ ଆମ ସଙ୍ଗେ ଅଧିକ ଦିନ ରଖନ୍ତୁ, ଏହି ପ୍ରାର୍ଥନା ଜଣାଇ ରହୁଛି । ତାଙ୍କ ସହ ଉଷା ଦାସ ସଦା ଉପସ୍ଥିତ ଥାଆନ୍ତୁ ସୁସ୍ଥ ଶରୀରରେ ।

ଗଙ୍ଗାଧର ପାଣିଗ୍ରାହୀ

*(ଅଧିବକ୍ତା) ଭୁବନେଶ୍ୱର-୨*

# ଚିତ୍ତଭାଇଙ୍କ ପ୍ରସଙ୍ଗରେ

ସମ୍ଭବତଃ ୧୯୭୭ ମସିହା କଥା । ଭୁବନେଶ୍ୱର ପଟେଲ୍ ହଲ୍‌ରେ ଓଡ଼ିଶାର ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ଶିକ୍ଷକ ଓ ସଂଗଠକମାନଙ୍କର ଏକ ସମାବେଶରେ ଚିତ୍ତଭାଇଙ୍କୁ ପ୍ରଥମ ଦର୍ଶନରେ ଜାଣିଲି ସେ ହେଉଛନ୍ତି ପଟେଲ୍ ହଲରେ ପ୍ରତିଷ୍ଠିତ ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ନିର୍ଦ୍ଦେଶକ । ଶୁଣିଲି ପ୍ରପତ୍ତିଙ୍କ ଆହ୍ୱାନରେ ସେ ଆଗ୍ରା ଇଉନିଭର୍ସିଟିର ପ୍ରଫେସର ପଦ ପରିତ୍ୟାଗ କରି ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ନିର୍ଦ୍ଦେଶକ ଦାୟିତ୍ୱ ଗ୍ରହଣ କରିଛନ୍ତି । ବିଭିନ୍ନ ଆଲୋଚନା ବେଳେ ତାଙ୍କର ଅଗାଧ ଜ୍ଞାନର ପରିଚୟ ମିଳିବା ସଙ୍ଗେ ସଙ୍ଗେ ପିଲାମାନଙ୍କ ସଙ୍ଗେ ଭଲି ଖେଳରେ ତାଙ୍କର କ୍ରୀଡ଼ାକୌଶଳ ଓ ପାରଦର୍ଶିତାରେ ମଧ୍ୟ ଆଶ୍ଚର୍ଯ୍ୟ ନହୋଇ ରହିପାରିଲି ନାହିଁ । ତାଙ୍କର ପ୍ରତ୍ୟେକ ପଦ କଥାରେ କିଛି ଶିକ୍ଷଣୀୟ ବିଷୟ ରହିଥିବାର ବେଶ୍ ଅନୁମାନ କଲି ।

ଅଗାଧ ଜ୍ଞାନରେ ବିମଣ୍ଡିତ ଖଦଡ଼ ପୋଷାକ ପରିହିତ ଏଇ ମହାମାନବଙ୍କୁ ଆଉ ଟିକେ ଭଲ ଭାବରେ ଜାଣିବାକୁ ପାଇଲି ବାରିପଦା ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ବାର୍ଷିକ ଉତ୍ସବରେ ତାଙ୍କର ବକ୍ତୃତା ଶୁଣି । ଅଧ୍ୟାପକ ପ୍ରପତ୍ତି ଓ ପ୍ରଫେସର ଛୋଟେ ନାରାୟଣ ଶର୍ମାଙ୍କ ପରି ସେ ଡାକ ବଙ୍ଗଳାରେ ରହିବାକୁ ଭଲ ପାଉନଥିଲେ । ସେ ମୋର ଅଜାଣତରେ ମୋତେ ଭଲ ପାଉଥିଲେ ଏବଂ ଆପଣାର କରି ନେଇଥିଲେ, ତେଣୁ ବାରିପଦା ରହଣି ବେଳେ ସେ ଆମରି ଘରେ ହିଁ ରହୁଥିଲେ । ଆମ ପିଲାମାନଙ୍କ ମଧ୍ୟରୁ ମୋର ପୁତୁରା ଅଜୟ ସବୁଠାରୁ ବେଶୀ ମେଧାବୀ ଥିଲା । ଲୁହା ଚୁମ୍ବକର ଆକର୍ଷଣରେ ଆକର୍ଷିତ ହେବା ପରି ଅଜୟ ଚିତ୍ତଭାଇଙ୍କ ପ୍ରତି ବେଶ୍ ଆକୃଷ୍ଟ ହୋଇଗଲା ଏବଂ ସେମାନଙ୍କ ମଧ୍ୟରେ ଚିଠିପତ୍ରର ବେଶ୍ ଆଦାନ ପ୍ରଦାନ ଚାଲିଲା । ଚିତ୍ତଭାଇ ବାରିପଦା ଆସିଲେ ଆମ ଘରେ ହିଁ ରାତ୍ରିଯାପନ କରୁଥିଲେ । ଆମ ଘର ସେହି ସମୟରେ ବେଶ୍ ଆନନ୍ଦମୁଖର ହୋଇ ଉଠୁଥିଲା ।

ଚିତ୍ତଭାଇଙ୍କର ବିରାଟ ବ୍ୟକ୍ତିତ୍ୱର ମାପ ମୋ ପକ୍ଷରେ କରିବା ଅସମ୍ଭବ ।

କେବଳ ତାଙ୍କର ଅକପଟ ସ୍ନେହ, ସହାନୁଭୂତି ଓ ଆବାଳବୃଦ୍ଧବନିତା ସମସ୍ତଙ୍କ ସହ ହଠାତ୍ ମିଶି ଯାଇ ପାରିବାର ପ୍ରବଣତାରେ ମୁଁ ମୁଗ୍ଧ । ତାଙ୍କ ନିଜ ମୁହଁରୁ ଶୁଣିଛି ଥରେ ବିଦେଶରେ ସେ ଗୋଟିଏ ପରିବାର ସହିତ ବିବସ୍ତ୍ର ହୋଇ ସାଓନା ବା ବାଷ୍ପସ୍ନାନ କରିଥିଲେ । କୌଣସି ବିଦେଶୀଅତିଥିଙ୍କୁ ଏ ସୁଯୋଗ ମିଳେ ନାହିଁ । ଚିତ୍ତଭାଇ ଉକ୍ତ ପରିବାରର ଏତେ ଦୂର ଆତ୍ମୀୟ ହୋଇ ପାରିଥିଲେ ଯେ ସେମାନେ ସାଓନାକୁ ତାଙ୍କୁ ନିମନ୍ତ୍ରଣ କରିଥିଲେ । ସଂପର୍କର ଡୋର ଲଗାଇବାରେ ସେ ଅନନ୍ୟ ।

ନିର୍ଭୀକତା, ସ୍ପଷ୍ଟବାଦିତା ସହିତ ମିଷ୍ଟଭାଷିତା ଓ ସଂଗୀତ ବିଦ୍ୟାରେ ପାରଦର୍ଶିତା ମଧ ତାଙ୍କର ବିଶିଷ୍ଟ ଗୁଣ । ସେ ମଧୁର କଣ୍ଠରେ ରବୀନ୍ଦ୍ର ସଂଗୀତ ଗାନ କରିବା ମୁଁ ଭୁବନେଶ୍ୱରରେ ଶୁଣିଥିଲି ।

କହିବା ବାହୁଲ୍ୟ ସେ ଓଡିଶାର ଜଣେ ବିଶିଷ୍ଟ ଲେଖକ ଓ ସମାଲୋଚକ ।

ଶ୍ରୀ ସର୍ବେଶ୍ୱର ମହାନ୍ତ
*ଉଦୀୟମାନ ମାତୃ ବିହାର, ଗନ୍ଧାଳି*
*ପୋ: ଦୁର୍ଗାପୁର, ଜି: ମୟୂରଭଞ୍ଜ ୭୫୭୦୨୧.*

# ପ୍ରିୟ ଚିତ୍ତଭାଇଙ୍କୁ ମୁଁ ଯେପରି ଜାଣେ

ବାଣୀବରପୁତ୍ର ଯୁଗସ୍ରଷ୍ଟା, ମହାର୍ଘ, ମହାନ୍ ଅବିସ୍ମରଣୀୟ ପ୍ରତିଭାର ଅଧିକାରୀ, କିନ୍ତୁ ସେ ଆମର ଅତି ପ୍ରିୟ ଭାଇ ଚିତ୍ତଭାଇ । ବ୍ୟକ୍ତିଗତ ଭାବେ ସେ ମୋ ପୁଅର ସବୁଠାରୁ ପ୍ରିୟ ପରିଜନ ଓ ସାଥୀ । ଆଗରୁ ଆମେ ଜାଣିଥିଲୁ ଅତି ଅସାଧାରଣ ସମୁଜ୍ଜ୍ୱଳ ପ୍ରତିଭାସଂପନ ବ୍ୟକ୍ତି ଭାବେ । ଏକାଧାରରେ ସୁସାହିତ୍ୟକ, ସମାଲୋଚକ, ଗବେଷକ ଅନୁବାଦକ ପ୍ରାବନ୍ଧିକ ତଥା ୧୨ଟି ଭାଷାରେ ତଥା ଅନ୍ୟାନ୍ୟ ଭାଷାରେ ପାଣ୍ଡିତ୍ୟ ଅର୍ଜନ କରିଥିବା ଏକ ବ୍ୟକ୍ତିତ୍ୱ । ମନକୁ ସ୍ୱତଃ ପ୍ରଶ୍ନ ଉଠୁଥିଲା ଏହି ମହାର୍ଘ ପ୍ରତିଭା ସଂପନ୍ନ ଜ୍ଞାନୀ ଗୁଣୀ ସଦାଚାରୀଙ୍କୁ କେବେ ଦେଖିବାର ସୌଭାଗ୍ୟ ମିଳନ୍ତା କି ? ସେପରି ଏକ ମୁହୂର୍ତ୍ତର ଶୁଭ ଅବସର ଆସିଲା ମୋ ପୁଅ ଚନ୍ଦନ ସେତେବେଳେ (୧୯୯୩-୯୪ ମସିହା) ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ଷଷ୍ଠ ଶ୍ରେଣୀରେ ପଢୁଥିଲା । କାଶୀପୁରର ଅଗ୍ରଗାମୀ ସ୍ୱେଚ୍ଛାସେବୀ ସଂଗଠନ ପକ୍ଷରୁ ‘ନବପଲ୍ଲବ’ ଶିବିରରେ ଯୋଗ ଦେବାପାଇଁ ପୁଅ ଏତେ ଖୁସି ହେଉଥାଏ ଯେ . ସେ ଯେମିତି ସବୁ ଖୁସିକୁ ହାତମୁଠାରେ ପାଇ ଯାଇଛି । ଆମେ ବ୍ୟସ୍ତ ହେଉଥାଉ କିପରି ଏତେ ବାଟ ଯିବ ସେଠାରେ କେମିତି ଚଳିବ । ସେଥିପାଇଁ ପ୍ରବୀଣା ଅପାଙ୍କୁ ଭେଟିଲି । ସେ କହିଲେ,

"ଏତେ ବ୍ୟସ୍ତ ହେବାର କାରଣ କିଛି ନାହିଁ । ଆମ ସହ ଚିତ୍ତଭାଇ, ରବି ଭାଇ ଯାଉଛନ୍ତି ।" ପୁଅ କିନ୍ତୁ ମୋତେ ଚୁପି ଚୁପି କହୁଥାଏ, "ମାଆ, ଏମିତି ବ୍ୟସ୍ତ ହୁଅନା ଚିତ୍ତଭାଇ ପରା ସାଙ୍ଗରେ ଅଛନ୍ତି ?" ସେଇଠି ବହୁ ପ୍ରତୀକ୍ଷିତ ଚିତ୍ତ ଭାଇଙ୍କୁ ଦେଖିବାର ସୁଯୋଗ ପାଇଲୁ । ଅତି ଆପଣାର ଭାବ, ସ୍ନେହଶ୍ରଦ୍ଧା, ହସ ହସ ମୁହଁ, ପ୍ରଶାନ୍ତ ମୁଖମଣ୍ଡଳ, ତାଙ୍କୁ ଦେଖିବା ମାତ୍ରେ ମନ ମଧ୍ୟରୁ ସମସ୍ତ ଅସ୍ମିତା, ବ୍ୟସ୍ତତା ଦୂର ହୋଇଗଲା । ଏକ ପରମ ଆଶ୍ୱସ୍ତି ଭାବ ଆସିଲା । କାଶୀପୁରରୁ ପୁଅ ଫେରିଲା ପରେ ରାତିରେ ସମସ୍ତ ଅନୁଭୂତି ବଖାଣିଲା । ଭାଇଙ୍କ ସହ ମିଶି କେତେ କ'ଣ ସବୁ କାମ କରିଛି, ଶ୍ରମଦାନ କରିଛି, ଖାଇଛି, ଗପିଛି, ରବୀନ୍ଦ୍ର ସଂଗୀତ ଗାଇଛି, କେତେ ମଜା କରିଛି, ଚିତ୍ତଭାଇ ସବୁକଥା କେମିତି ହସେଇ ରସେଇ କହନ୍ତି, ସବୁ ଗପିଲା । ତା' ପରଠାରୁ ସେ (ଚିତ୍ତଭାଇ) ଆମ ଭିତରେ ଆମ ପରିବାରରେ ଜଣେ ହୋଇଯାଇଛନ୍ତି । କେତେବେଳେ କେମିତି ପୁଅ (ଚନ୍ଦନ) ଅବାଧ ହେଲେ ଯଦି ଥରେ କୁହାଯାଏ ଚିତ୍ତଭାଇଙ୍କୁ ଏକଥା ଜଣାଇ ଦେବା, ସାଙ୍ଗେ ସାଙ୍ଗେ ଚନ୍ଦନ କୁହେ, "ମା' ପ୍ଲିଜ କୁହନା, ଭାଇ ତ ମୋତେ ଜାଣିଛନ୍ତି ମୋତେ ବୁଝିଛନ୍ତି । ମନର କଥା ଜାଣିଛନ୍ତି । ବରଂ ସେ ତୁମକୁ କ'ଣ ଭାବିବେ ।" ସେ ଭୟରେ ମୁଁ ସଙ୍କୁଚିତ ହୋଇଯାଏ । ଚିତ୍ତଭାଇଙ୍କ ବ୍ୟକ୍ତିତ୍ୱରେ ଅସାଧାରଣ ଚମତ୍କାରିତା ଅଛି ଯାହା ଫଳରେ ଆମେ ଶୃଙ୍ଖଳିତ ହୋଇ ଯାଉଛୁ ଆପେ ଆପେ । ତା' ପର ଠାରୁ କେତେଥର ଚିତ୍ତଭାଇ ଆମ ଘରକୁ ଆସିଛନ୍ତି । ଆମର ପ୍ରିୟ ପରିଜନ ପରି ଆମ ପରିବାର ମଧ୍ୟରେ ମିଶିଛନ୍ତି । ଆମେ ମଧ୍ୟ ତାଙ୍କ ପ୍ରଶାନ୍ତ ବ୍ୟକ୍ତିତ୍ୱଙ୍କ ସଂସ୍ପର୍ଶରେ ଆସି ନିଜକୁ ଧନ୍ୟ ମନେ କରିଛୁ । ତାଙ୍କର ସରଳ ନିରାଡମ୍ବର ଜୀବନ ଆମକୁ ପ୍ରଭାବିତ କରିଛି । ସମସ୍ତଙ୍କ ଠାରୁ ନିଆରା ମଣିଷ ହେବାର ସୁଯୋଗ ଦେଇଛି ।

ଚିତ୍ତଭାଇଙ୍କର ଅନୂଦିତ ପୁସ୍ତକ 'ଜଣେ ଶିକ୍ଷକଙ୍କୁ ଚିଠି' ମୋତେ ବହୁତ ପ୍ରେରଣା ଯୋଗାଇଛି ଜଣେ ଶିକ୍ଷୟିତ୍ରୀ ହିସାବରେ । ଶ୍ରେଣୀ କୋଠରୀର ପାଠ ପଢ଼ା ବ୍ୟତୀତ, ଉଜ୍ଜ୍ୱଳ ପ୍ରତିଭାସଂପନ୍ନ ଛାତ୍ରଙ୍କୁ ବାଦ୍‌ଦେଇ ଅନେକ ଶିଶୁଙ୍କୁ, କିଶୋରଙ୍କୁ ତଥା ଅଗଣିତ ଛାତ୍ରଛାତ୍ରୀଙ୍କୁ ଚିହ୍ନିବାର ତାଙ୍କ ଭିତରେ ଥିବା ଗୁଣକୁ ଆଦର କରିବାର ସୁଯୋଗ ସୃଷ୍ଟି କରିପାରିଛି ସେହି ବହିଟି । ଉତ୍କଳ ଜନନୀଙ୍କର କୃତବିଦ୍ୟ ସଦା ବାଣୀ ସାଧନାରେ ବ୍ରତୀ, ସୁଯୋଗ୍ୟ ସନ୍ତାନ, ତଥା ଆମର ପ୍ରିୟ ଚିତ୍ତଭାଇ ଶତାୟୁ ହୁଅନ୍ତୁ, ପରମ ପିତାଙ୍କୁ ଅନ୍ତରର ପ୍ରାର୍ଥନା । ଲେଖିବାକୁ, ବର୍ଣ୍ଣିବାକୁ, ଭାବିବାକୁ ତ ଅନେକ ଅଛି । ଚିତ୍ତଭାଇଙ୍କ ବିଷୟରେ ଲେଖିବାକୁ ମୁଁ କିଏ ? ଜ୍ଞାନର ମହୋଦଧିରେ ବୁଡ଼ିଥିବା ସେ ଏକ ବିରାଟ ବ୍ୟକ୍ତିତ୍ୱ । ଅସାଧାରଣ ତାଙ୍କର ପାଣ୍ଡିତ୍ୟ, ତାଙ୍କ ବିଷୟରେ କେମିତି

ଲେଖିବି ଆରମ୍ଭ କେଉଁଠୁ କରିବି ବା ସେ ଏକ କେଉଁଠି କରିବି ତାହା ମୋ ଶକ୍ତିର ବାହାରେ ।

ବହୁ ପୁରସ୍କାରର ଉର୍ଦ୍ଧ୍ୱରେ ଥିବା ଚିତ୍ତଭାଇ ଯେଉଁଦିନ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ''ବିଶ୍ୱକୁ ଗବାକ୍ଷ'' ପାଇଁ ପାଇଲେ ଆମ ମନ ଖୁସିରେ ନାଚି ଉଠିଲା । ଆମେ ତାଙ୍କୁ ଟିଭିରେ ଦେଖି ଆତ୍ମହରା ହୋଇ ଯାଇଥିଲୁ । ଏହି ଅସାଧାରଣ ବ୍ୟକ୍ତିତ୍ୱ ର ମହାନ୍ ଅଧିକାରୀ ହୋଇବି ଆମର ଅତି ଆପଣାର ଚିତ୍ତଭାଇଙ୍କୁ ଆମେ ଯେତିକି ଜାଣୁ 'ତାଠୁ ବେଶୀ ଯାଣନ୍ତି ଦେଶ ବିଦେଶରେ ଅନେକ ଜ୍ଞାନୀ ଗୁଣୀ ପାଠକ ପାଠିକା । ଚିତ୍ତଭାଇଙ୍କ ମହାନ୍ ବ୍ୟକ୍ତିତ୍ୱ ସଭକ୍ତି ଓ ଶ୍ରଦ୍ଧା ନିବେଦନ କରୁଛୁ । ଶ୍ରଦ୍ଧାର ଶବ୍ଦ ବ୍ୟାପକ । ସେପରି ତାଙ୍କର ଯଶ କିର୍ତ୍ତୀ ସୃଷ୍ଟି ମଧ୍ୟ ବ୍ୟାପକ । ଚିତ୍ତଭାଇଙ୍କର ଅନୁପମ ଶ୍ରଦ୍ଧାର ଏକ ନମୁନା । ଚନ୍ଦନ ସପ୍ତମ ଶ୍ରେଣୀରେ ପଢୁଥିବା ବେଳେ ଚିତ୍ତଭାଇ ତା'ର ପାଠପଢ଼ା ତଥା ଆଚାର ବ୍ୟବହାର ବିଷୟରେ ଆଳାପ ଆଲୋଚନା କରନ୍ତି । ଚିତ୍ତଭାଇ ପ୍ରାୟ ଆମଘରକୁ ଆସନ୍ତି । ପାଠପଢ଼ା ଦେଖନ୍ତି, ଚନ୍ଦନ ଭାଇଙ୍କର ସବୁକଥା ମନଦେଇ ଶୁଣେ ଓ ବୁଝେ । ଛାଡିଦେଇ ଆସିବାକୁ କହିଲେ ସେ କହନ୍ତି, ''ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ଚାଲି ଚାଲି ଯିବି ।'' ଚନ୍ଦନ ଏକ ପ୍ରାର୍ଥନା ବୋଲେ ''ତୁମି ହୋ ମାତା ପିତା ତୁମି ହୋ........ କୋଇନା ଅପ୍‌ନା ଶିୱା ତୁହ୍ମାରେ ।'' ସେହିପରି ଚିତ୍ତଭାଇ ଆମର ପ୍ରିୟ ବନ୍ଧୁ, ସଖା, ପିତା ତଥା ସାହାରା । ପଦେକଥା ତାଙ୍କଠାରୁ ଶୁଣିଲେ ଯେମିତି ଲାଗେ ପର୍ବତ ପ୍ରମାଣ ସବୁକାର୍ଯ୍ୟ ଅତି ସୁରୁଖୁରୁରେ ହୋଇଯିବ । ଭାଇଙ୍କୁ ଦେଖିଲେ ଓ ଚନ୍ଦନ ସମ୍ବନ୍ଧରେ ପଚାରିଲେ ସେ କହନ୍ତି, ''ଆଶା ହରାନ୍ତୁନି, ସବୁ ଠିକ୍ ଚାଲିବ ।'' ଆମ ପ୍ରିୟ ଭାଇ ଆମର ପ୍ରେରଣା, ଆମର ସାହାରା ପିତା, ବନ୍ଧୁ, ତଥା ଦିଗ୍‌ଦର୍ଶକ । ତାଙ୍କର ବ୍ୟକ୍ତିତ୍ୱରେ ପ୍ରଭାବରେ ମୋ ଭିତରେ Confidence ଏତେ ବଢ଼ିଛି । ମୁଁ ସବୁ କିଛି ପାରିବି ବୋଲି ମୋର ଧାରଣା ହୋଇଛି ।

ଦିନକର କଥା । ଚନ୍ଦନ Std VII ରେ ପଢୁଥାଏ । ସେ ତାର ସାଙ୍ଗ ସାଥୀଙ୍କ ସହ ଏକ Tutorial Class କୁ ଯାଇଥାଏ । ସେହି ସମୟରେ ଚିତ୍ତଭାଇ ତା' ସହ ଭେଟିବାକୁ ଆସିଲେ । ଆମ ସହ ଟିକେ କଥା ହେବା ପରେ କହିଲେ ଚନ୍ଦନ କାହିଁ ? ଆମେ କହିଲୁ ସେ Tutorial class କୁ ଯାଇଛି । ଭାଇ କହିଲେ, ''ସେତ ସେମିତି ବୁଡିଯିବା ପିଲା ନୁହେଁ । ତାକୁ save କରିବାକୁ Tutorial କୁ କାହିଁକି ପଠାଇଛନ୍ତି ?'' ଭାରି ଲାଜ ଲାଗିଲା ନିଜକୁ । ତା' ପରେ ମଧ୍ୟ ସେ ବୁଝାଇଲେ । ''ପିଲାର କଥା, ବୁଦ୍ଧିବୃତ୍ତି ସବୁ ନିଜ ଭିତରୁ ହିଁ ବାହାରୁ ।'' ତାକୁ କୌଣସି ଟ୍ୟୁସନ୍ ଦେବା କିଛି ଦରକାର ନାହିଁ । ତା' ପରେ ମଧ୍ୟ ପୁଅ (ଚନ୍ଦନ) ବ୍ୟସ୍ତ ହେଲା ଚିତ୍ତଭାଇ ସବୁଦିନ

ଆମ ଘରକୁ ଆସୁଥିଲେ, ତମେ ଟ୍ୟୁସନ୍ ଦେବାରୁ ସେ ଆଉ ଆସିଲେ ନାହିଁ ।'' ମନ ବହୁତ ଦୁଃଖ ହେଲା । ତା' ପର ଠାରୁ ଚନ୍ଦନ ଆଉ ଟ୍ୟୁସନ୍ ଗଲା ନାହିଁ । ନିଜେ ମୋ ପାଖରେ ପଢ଼ି ବୁଝିଲା । କେବେ ମଧ୍ୟ ଆଉ ଟ୍ୟୁସନ୍‌କୁ ପସନ୍ଦ କରିନାହିଁ । ନିଜେ ଘରେ ନିଜ Class Task କରିଛି ।


ଶକୁନ୍ତଳା ରଥ

*ସହକାରୀ ଶିକ୍ଷୟିତ୍ରୀ*

*ଚନ୍ଦ୍ରଶେଖରପୁର ୟୁ.ଜି.ଏମ୍.ଇ ସ୍କୁଲ*


# ମୋ ମନର ଚିତ୍ତଭାଇ

ଖୋଲା ଆକାଶ, ଯାହାର ଆଦି ନାହିଁ କି ଅନ୍ତ ନାହିଁ । ତାକୁ ଦଖଲ କରିବା ପାଇଁ କେହି ନାହିଁ ଏ ସଂସାରରେ । ଛୋଟ ଚଢ଼େଇଟିଏ ଟିକେ ଉଡି ଯାଉଛି, ପୁଣି ଥକି ପଡୁଛି । ସଂସାରରେ ଏମିତି ଅନେକ ଛୋଟ ଛୋଟ ଚଢ଼େଇ ଅଛନ୍ତି । ସୃଷ୍ଟି ଆରମ୍ଭ ହେବାଦିନଠାରୁ ଯେଉଁ ମାନେ କି ଏମିତି ଟିକେ ଡେଣା ଝାଡ଼ି ଉଡିଯାଉଛନ୍ତି । ପୁଣି ବସି ପଡୁଛନ୍ତି, କିଏ କେତେବେଳେ ନୂଆ ଆବିଷ୍କାର କରୁଛି । କିଏ ସୁଦୂର ସାଇବେରିଆରୁ ଚିଲିକା ଭଳି ହ୍ରଦ ଖୋଜି ପାଇଛି ତ କିଏ ଭେଟିଛି ସାହାରା ଭଳି ମରୁଭୂମି ।

ମୋ ଜୀବନର ଯେତେବେଳେ ମୁଁ ନିଜକୁ ଚିହ୍ନିଲି, ଏ ଦୁନିଆଁକୁ ଚିହ୍ନିଲି ସେତେବେଳେ ମୁଁ ଗୋଟେ ଟିକି ଚଢ଼େଇଟିଏ ଦେଖିଲି । ଯେ କିନ୍ତୁ ଆଜିଯାଏଁ ଥକିନାହିଁ । ତା'ର ଟିକି ଟିକି ଡେଣାରେ ସେ ଉଡି ଉଡି ଅନେକ କିଛି ଆବିଷ୍କାର କରିଛି । ସେଇ ଉଜ୍ଜ୍ୱଳ ଚଢ଼େଇଟିର ନାମ ହେଲା ଚିତ୍ତରଂଜନ ଦାସ (ଚିତ୍ତଭାଇ) ।

ଶ୍ରୀଅରବିନ୍ଦ ନବୋଦ୍ୟମ ଶିକ୍ଷା ନିକେତନରେ ମୋର ତୃତୀୟ ଶ୍ରେଣୀ । ନୂଆ ନୂଆ ନାମ ଲେଖା ହୋଇଥିଲା । ମୁଁ ଜାଣିଥିଲି ଯେଉଁମାନେ ଆମକୁ ପାଠ ପଢ଼ାନ୍ତି ସେମାନଙ୍କୁ ସାର୍ ବୋଲି ସଂବୋଧନ କରାଯାଏ । କିନ୍ତୁ ଏଠି ଯେ ସଂବୋଧନ ସମ୍ପୂର୍ଣ୍ଣ ଭିନ୍ନ ଧରଣର ହେବ ତାହା ମୋ ଜ୍ଞାତସାରରେ ଥିଲା । ସାର୍‌ମାନଙ୍କୁ ଯେ ଅତି ସହଜରେ ଅପା ଭାଇ ବୋଲି ସଂବୋଧନ କରାଯାଏ ତାହା ମୁଁ ଖୁବ୍ ଶୀଘ୍ର ଜାଣିଗଲି । ଖୁବ୍ କମ୍ ଦିନ ମଧ୍ୟରେ ନିଜକୁ ଖାପ ଖୁଆଇ ଚଳିବା ସହିତ ଅପା ଭାଇଙ୍କ ନିକଟତର ହେଲି । ପ୍ରତିଦିନ ସଂଧ୍ୟା ୬.୩୦ ମିନିଟ୍‌ରେ ପ୍ରାର୍ଥନା ହୁଏ । ପ୍ରାର୍ଥନା ପରେ ଶ୍ରୀଅରବିନ୍ଦଙ୍କ ଯୋଗ ଦର୍ଶନ, ନବପ୍ରକାଶ ଏମିତି ଅନେକ କିଛି ଆଲୋଚନା ହୁଏ । ଏହାଛଡ଼ା ଚିତ୍ତଭାଇଙ୍କ ସମ୍ପର୍କରେ ମଧ୍ୟ ଆଲୋଚନା ହୁଏ । ସେତେବେଳେ ଏସବୁ ମୋ

ମୁଣ୍ଡରେ କିଛି ପଶୁନଥିଲା ।

ଯେତେବେଳେ ମୋର ପଞ୍ଚମ ଶ୍ରେଣୀ ସେତେବେଳେ ମୁଁ ଚିତ୍ତଭାଇଙ୍କ ସମ୍ପର୍କରେ କିଛି ଜାଣିଲି, ଯେକି ଆମ ବିଦ୍ୟାଳୟର ନାମ ରଖିଥିଲେ ନବୋଦ୍ୟମ । ଚିତ୍ତଭାଇଙ୍କର 'ଜୀବନ ବିଦ୍ୟାଳୟ' ମୋତେ ଏକ ଭିନ୍ନ ପ୍ରକାରର ରାସ୍ତା ଦେଖେଇଥିଲା । ଯାହାକି ମୋ ପାଇଁ ତଥା ମୋର ବିଦ୍ୟାଳୟ ପ୍ରତି କର୍ତ୍ତବ୍ୟ ନିର୍ବାହ ପାଇଁ ଏକ ବଡ଼ ଅବଦାନ ଥିଲା । 'ଜୀବନ ବିଦ୍ୟାଳୟ' ପୁସ୍ତକରେ ଏ ଜୀବନକୁ ଏକ ବଡ଼ ବିଦ୍ୟାଳୟର ଆଖ୍ୟା ଦିଆଯାଇ ଥିଲା । ସେଠାରେ ଛାତ୍ର ଓ ଶିକ୍ଷକ ମଧ୍ୟରେ କେବଳ ଭାଇ ଭାଇର ସମ୍ପର୍କ ଛଡ଼ା ଅନ୍ୟ କୌଣସି ସମ୍ପର୍କ ନଥିଲା ।

ଚିତ୍ତଭାଇଙ୍କର 'ଜୀବନ ବିଦ୍ୟାଳୟ' ପୁସ୍ତକ ପଢ଼ି ମୁଁ ମନେ ମନେ କଳ୍ପନା କରି ନେଇଥିଲି ଯେ ସେ କେମିତି ବ୍ୟକ୍ତିଟିଏ ହୋଇଥିବେ । ସେଇ ଦିନଠାରୁ ମୋର ଗୋଟେ ଅଭିଳାଷ ରହିଲା ଯେ ମୁଁ କେବେ ଚିତ୍ତଭାଇଙ୍କୁ ଦେଖିବି । ତାଙ୍କ ସହିତ ପଦେ କଥା ହେବି । ମୁଁ ଚାହିଁ ରହିଥିଲି ସେଇ ଦିନକୁ ଯେଉଁଦିନ ଚିତ୍ତଭାଇ ଆସିବେ ଓ ମୁଁ ତାଙ୍କୁ ଦେଖି ଅନେକ କିଛି ପ୍ରଶ୍ନ ପଚାରିବି ।

ମୋର ଗୀତ ଗାଇବାରେ ଏକ ବିଶେଷ ଆଗ୍ରହ ଥିଲା । ଚିତ୍ତଭାଇ କୁଆଡ଼େ ଗୀତ ଗାଇବାକୁ ଖୁବ୍ ଭଲ ପାଆନ୍ତି । ତେଣୁ ମୁଁ ନିଜକୁ ସଜାଡ଼ି ନେଇଥାଏ ଗୀତ ଗାଇବା କ୍ଷେତ୍ରରେ । ରାସ୍ତାରେ ଯାଉ ଯାଉ ରବୀନ୍ଦ୍ର ସଂଗୀତ ଟିକେ ଟିକେ ଗାଇ ତାକୁ ଅଭ୍ୟାସ କରି ନେଉଥିଲି । ଏମିତି ଅନେକ ଦିନ ବିତିଗଲା ।

ସମୟ କେବେ କାହାକୁ ଅପେକ୍ଷା କରିନି । ମୋର ସପ୍ତମ ଶ୍ରେଣୀ ହେଲା ଅର୍ଥାତ୍ ଶେଷବର୍ଷ । ମୁଁ ମୋର ୭ମ ଶ୍ରେଣୀ ବୋର୍ଡ ପରୀକ୍ଷା ଦେଲି, ପାଠପଢ଼ା ସରିଗଲା । ଅଥଚ ଚିତ୍ତଭାଇଙ୍କର କୌଣସି ସ୍ୱର ଶବ୍ଦ ନାହିଁ । ଚିତ୍ତଭାଇଙ୍କ ଭଳି ଲୋକଙ୍କୁ ମୁଁ ଦେଖି ପାରିଲିନି । ମୁଁ ଭାବୁଥାଏ ମୋ ଜୀବନର ଗୋଟେ ବଡ଼ ଅବଶୋଷ ରହିଗଲା ।

ଘରେ ଥାଏ । ଚିଠି ଖଣ୍ଡିଏ ପାଇଲି । ସେଥିରୁ ଜାଣିଲି ଯେ ଚିତ୍ତଭାଇ ଆସୁଛନ୍ତି । ମୁଁ ତରବରିଆ ଭାବରେ ପ୍ରସ୍ତୁତ ହେଲି ଯିବାପାଇଁ । ନିର୍ଦ୍ଦିଷ୍ଟ ସମୟରେ ଚିତ୍ତଭାଇ ଆସିଲେ । ପ୍ରଥମ ଦେଖାରେ ମୁଁ ଏତେ ବିହ୍ୱଳିତ ହୋଇଥିଲି ଯେ, ଯାହାକି ମୋ ଜୀବନରେ ଆଗରୁ ସେମିତି ଦିନ ଆସିନଥିଲା ।

ପରଦିନ ଭୋର ୪ଟା ବେଳେ କିଛି ଅପା ଭାଇ ରବୀନ୍ଦ୍ର ସଂଗୀତ ଗାଉଥିବାର ଶୁଣିଲି । ଆମର ଭୋର ୪ଟାରେ ଶଯ୍ୟାତ୍ୟାଗ କରିବାର ଅଭ୍ୟାସ ନଥିଲା । ତେଣୁ ମୁଁ ଶୋଇ ରହି ଗୀତଟିକୁ ଶୁଣୁଥିଲି ଏବଂ ଆମ ଗୀତଅପାଙ୍କୁ ମନେ ମନେ ଗାଳି

ଦେଉଥିଲି, କାରଣ ଯେଉଁ ଗୀତଟି ବୋଲାଯାଉଥିଲା ତାହା ମୋତେ ଜଣା ନଥିଲା । ସେଦିନର ସେଇ (ଯଦି ତୋର ଡାକ ଶୁନେ କେଉ ନା ଆସେ ତବେ ଏକ୍‌ଲା ଚଲୋରେ) ଗୀତ କିଏ ଆଜି ମୋ କାନରେ ଗୁଣୁ ଗୁଣୁ ହୋଇ ଗାଇଯାଉଛି ।

ଚିତ୍ତଭାଇ ଯେ ଏତେ ବଡ଼ ବିଦ୍ୱାନ ଓ ଏତେ ବଡ଼ ଜ୍ଞାନର ଏକ ସମୁଦ୍ର । ତାଙ୍କ ବିଷୟରେ ମୁଁ ଆଗରୁ କେବଳ ଶୁଣିଥିଲି କି ତାଙ୍କୁ କେବେ ଦେଖି ନଥିଲି ।

ଖୁବ୍ କମ୍ ସମୟ ମଧ୍ୟରେ ଚିତ୍ତଭାଇ ମୋର ଅତି ଅନ୍ତରଂଗ ବନ୍ଧୁ ହୋଇଗଲେ । ପିଲାମାନଙ୍କ ସଂଗେ ଗୀତ ଗାଇବା । ପହଁରିବା, ଖେଳିବା ବିଶେଷତଃ ପାଠ ପଢ଼ିବାକୁ ସେ ଏତେ ଭଲ ପାଆନ୍ତି ଯେ ତାହା ଆମେ ସମସ୍ତେ ଜାଣନ୍ତି । ଚିତ୍ତଭାଇଙ୍କର ଗୋଟେ ଗୁଣ ମୋତେ ବହୁତ ଭଲ ଲାଗେ । ତାହା ହେଲା ସେ ଯେତେବେଳେ ଯାହାକୁ ଦେଖନ୍ତି ସଂଗେ ସଂଗେ ନିଜର କରି ନିଅନ୍ତି ଓ ପଚାରନ୍ତି ଦେହ କେମିତି ଅଛି ? ପଢ଼ାପଢ଼ି କେମିତି ଚାଲିଛି ? ପାଠ ସହଜ ଲାଗୁଚି ତ ? ବିଶେଷଃ କରି ତାଙ୍କ ଚିଠିରେ ଦେହ କଥାଟା ବେଶୀ ଦେଖିବାକୁ ମିଳେ ।

ଚିତ୍ତଭାଇଙ୍କର ସବୁ ଗୁଣଗୁଡ଼ିକୁ ହୁଏତ ବର୍ଣ୍ଣନା କରିବା ସମ୍ଭବପର ନୁହେଁ । କାରଣ ତାଙ୍କର ପିଲାମାନଙ୍କ ସଂଗେ ବସି ଶାଗ ପଖାଳ ଖାଇବାଠାରୁ ଆରମ୍ଭ କରି ଅପାଭାଇଙ୍କ ସହିତ ଶ୍ରୀଅରବିନ୍ଦଙ୍କ 'ଦିବ୍ୟ ଜୀବନ' ଆଲୋଚନା ପର୍ଯ୍ୟନ୍ତ ଅନେକ କଥା ରହିଛି ।

ସର୍ବ ଶେଷରେ ଏହା କହିପାରିବି ଯେ, ଚିତ୍ତଭାଇ ମୋର ବନ୍ଧୁ ଓ ଭାଇ ସଦୃଶ । ମୁଁ ତାଙ୍କୁ ମୋର ଶିକ୍ଷକ ବା ସାର୍ ବୋଲି କହି ପାରିବି ନାହିଁ । କାରଣ 'ଭାଇ' ଡାକରେ ଯେଉଁ ମାଧୁର୍ଯ୍ୟ ଅଛି ଅନ୍ୟ କୌଣସି ଡାକରେ ନାହିଁ । ସେ ମୋର ବଡ଼ ଭାଇ ହିସାବରେ ମୋତେ ଅନ୍ଧାରରୁ ଆଲୋକ ଆଡ଼କୁ ମୁହାଇଁ ନେଇଛନ୍ତି ଓ ଏ ଦୁନିଆଁକୁ ଚିହ୍ନିବାର ବାଟ ଦେଖାଇଛନ୍ତି ।

ରଂଜନ କୁମାର ବିଶ୍ୱାଳ

*ଜାମୁଝାଡ଼ି, ସିମୁଳିଆ, ବାଲେଶ୍ୱର*

# ମଣି ମଣିଷ

ସଂସାରରେ ଦେଖିଲେ ଦୁନିଆଟା କି ଚମତ୍କାର, କି ବୈଚିତ୍ର୍ୟ ପୂର୍ଣ୍ଣ ଲାଗେ ! ଥୋକେ ମଣିଷ ଥାଆନ୍ତି ଯେଉଁମାନେ କିଛି ବୁଝନ୍ତି ନାହିଁ । ଗଧ ଘୁଷୁରୀ ପରି ଖଟି ଖାଆନ୍ତି । ତାଙ୍କ ସଂସାରଟା ସେତିକି । ଆଉ ଥୋଡାଏ ଥାଆନ୍ତି ସତ ମିଛ, ସ୍ନେହ ଘୃଣା

ମିଶାଇ ଜୀବନ ବିତାନ୍ତି । ସୁଖ ଯେତିକି ପରିମାଣର, ଦୁଃଖ ବି ସେତିକି । ଆଗକୁ ମାଡ଼ି ଯାଆନ୍ତି ଯେମିତି, ବେଳ ପଡ଼ିଲେ ପଛେଇ ଆସନ୍ତି ସେମିତି । ଆଉ ଅଳ୍ପ ଲୋକ ଥାଆନ୍ତି ଯେଉଁମାନଙ୍କର ବଞ୍ଚିବାର ଦିଗ ଭିନ୍ନ । ଅନ୍ୟାୟ ଅନୀତି, ମିଥ୍ୟା, ଘୃଣା ପଥର ପଥିକ ସେମାନେ ନୁହଁନ୍ତି । ପଛକୁ ହଟିଯିବା ଜୀବନରେ ତାଙ୍କର ଘଟେନି । ଶତଚେଷ୍ଟା କଲେ ବି କାଳ ସେମାନଙ୍କୁ ଟଳାଇ ପାରେନା । ତାଙ୍କ ଭିତରଟା ନିଆରା ଉପାଦାନରେ ଗଢ଼ା ଯେପରି । ଦୃଢ଼ ପ୍ରତିଜ୍ଞାରେ ଭରା ସେମାନଙ୍କର ହୃଦୟ । ସଂକୀର୍ଣ୍ଣତାରେ ଆବଦ୍ଧ ନୁହଁନ୍ତି । ଛୋଟ ଅଳୀକ ଘଟଣାରେ ଭାସିଯାଆନ୍ତି ନାହିଁ । ପ୍ରଶସ୍ତ, ବ୍ୟାପକ ସେମାନଙ୍କର ମନର ଭାବନା । ହୃଦୟର ପରିଧି ଦିଗନ୍ତ ବିସ୍ତାରୀ । ସେହିଭଳି ଅନ୍ତରର ଗହନ କଥା ବୁଝିବା ବଡ଼ ଜଟିଳ । କିନ୍ତୁ ଟିକେ ଗଭୀରେଇ ଦେଖିଲେ ସେମାନେ ଏତେ ନିଜର, ଏତେ ଆପଣାର, ଏତେ ନିକଟତର ଯେ ତାଙ୍କ ପରି ଦରଦୀ ବଂଧୁ ପାଇବା ବିରଳ । ସେଇମାନେ ସତରେ ମଣିଷ ଭିତରେ ମଣି ।

ସେହିଭଳି ଏକ ବିରାଟ ବ୍ୟକ୍ତିତ୍ୱଙ୍କ ସଂସ୍ପର୍ଶରେ ମୁଁ ଆସିଛି, ଯାହାଙ୍କୁ ମୁଁ ମନରେ କେତେ ଗୁଣି ଗୁଣି ଚାଲେ । ବାଟ ସରିଯାଏ ସତ, କିନ୍ତୁ ଗୁଣି ହେବାଟା ସରେନା । ଥରକର କଥା । ସେ ଆସିଥାନ୍ତି ଆମର ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ବିଦ୍ୟାପୀଠ, ଗୋପୀନାଥପୁର, କଟକକୁ ବୁଲିବା ପାଇଁ । ବୁଲିବା ଦେଖିବା ପରେ ଆଲୋଚନା ହେଲା । ସାମାଜିକ କ୍ଲାସରେ କିଛି ଝଲକ ସାମୂହିକ ଭାବେ ଦେଖାଇବାର କାର୍ଯ୍ୟକ୍ରମ ତତ୍‌କ୍ଷଣାତ୍ ଠିକ୍ ହୋଇଗଲା । ରାଧାଚୂଡ଼ା ଗଛ ମୂଳରେ କଳାପଟା ଡେରି ଦିଆଗଲା । ପାଖରେ ରହିଲା ଝୁଲା ଅବସ୍ଥାରେ ପୃଥିବୀର ରାଜନୈତିକ ମାନଚିତ୍ର । କାହିଁକି କେଜାଣି, ତାଙ୍କ ପ୍ରତି ଆବେଗଟା ବଢ଼ିଯାଇଥିଲା । କୌତୂହଳ ସହକାରେ ସମସ୍ତ ଅପାଭାଇ, ପିଲାମାନେ ଏକ ଲୟରେ ଚାହିଁ ରହିଥାଉ ସତେ ଯେପରି ଏକ ଯାଦୁକରର ମାୟାଜାଲରେ ଆମେ ପଡ଼ିଯାଇଥାଉ । ତାଙ୍କର ପ୍ରତି କଥା ଏତେ ସରଳ, ହୃଦୟଛୁଆଁ ଥିଲା, କିଛି ଯେପରି ଆମ ପାଖରେ ଅବୋଧ ନଥିଲା । ତାଙ୍କର କଥା କୁହୁକ ଛନ୍ଦ ତାଳେ ତାଳେ ଆମେ ମୁଣ୍ଡ ହଲାଉଥାଉ, ମଝିରେ ମଝିରେ ହସରେ ଭୋଳ ହୋଇଯାଉ । ତାଙ୍କର ଚିନ୍ତା, ଭାବନା ଓ ଅଭିଜ୍ଞତା ଆମକୁ ଜିଲ୍ଲା, ରାଜ୍ୟ, ଦେଶ ପାର କରି ଇଉରୋପ ମହାଦେଶର ଉତ୍ତର ଭାଗରେ ପହଞ୍ଚାଇ ଦେଇଥାଏ । ଆମକୁ ମନ୍ତ୍ରମୁଗ୍ଧ କରି ରଖିଥାଏ । ସେଦିନ ତାଙ୍କଠୁ କେତେ କଥା ଶୁଣି ସାରିଲା ପରେ ଏବଂ ମାନଚିତ୍ରରେ ସେହି ନୂଆ ଭୂଇଁ ବିଷୟରେ ଜାଣିଲା ପରେ ମୋର କେତେ ଅନ୍ଧବିଶ୍ୱାସ ଦୂର ହୋଇଥିଲା । ମନର ସୀମା ବାଡ଼ ଭାଙ୍ଗିଯାଇଥିଲା । ଛୋଟ ହୃଦୟଟି ଖୋଲିଯାଇଥିଲା ଆଗକୁ ଆଗକୁ ।

ତାଙ୍କର ପ୍ରେରଣା, ଉତ୍ସାହ ଏବଂ ହସହସ କଥା ହୃଦୟକୁ ଆପଣାର କରିନିଏ କେତୋଟି ମୁହୂର୍ତ୍ତରେ । ମୁଁ କେତେ ଥର ମିଶିଛି ତାଙ୍କ ସହ । ସେ ଏତେ ବଡ଼ ବୋଲି ଭାବିନି । ଯେପରି ନିଜର, ଅତି ନିଜର ବୋଲି ଲାଗେ । ନିକଟରୁ ନିକଟତର ହେବାକୁ ଇଚ୍ଛା ବଢ଼େ । ଅମୃତବୋଳା କଥା କେତୋଟି ଶୁଣିବାକୁ ଆଗ୍ରହ ବଢ଼ିଯାଏ । ଜୀବନର ଅସଲ ଗଣ୍ଠି ଖୋଲିବାକୁ ସେ ସୁଯୋଗ ତିଆରି କରି ଦେଉଥାନ୍ତି । ଜଣକ ପାଇଁ ତାଙ୍କର କଥା ନୁହେଁ । ମୁଁ ଅନୁଭବ କରିଛି ସତେ ଯେପରି ଗଣଙ୍କ ପାଇଁ ସେ । ଦୁନିଆର ସମସ୍ତଙ୍କ ପାଇଁ ତାଙ୍କର ହୃଦୟଟା ଖୋଲା । ଯେ ତାଙ୍କୁ ଥରେ ବୁଝିଛି, ତାଙ୍କ ସହ କଥା ହେଇଛି, ଭାବ ଲଗାଇଛି, ସେ କେବେ ବି ଖସି ଯାଇ ପାରି ନାହିଁ । ବନ୍ଧା ପଡ଼ିଯାଇଛି ଏପରି ବିଶାଳ ହୃଦୟ ପାଖରେ । ଆମର ସିଏ ସତେ କେତେ ଆପଣାର ! ସେହି 'ମଣି ମଣିଷ' ଆଉ କେହି ନୁହନ୍ତି, ଆମ ଚିରଭାଇ ।

ମାଧବ ଚରଣ ସ୍ୱାଇଁ

*ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ବିଦ୍ୟାପୀଠ, ଗୋପୀନାଥପୁର, କଟକ*

# ସମସ୍ତଙ୍କ ପାଇଁ ପ୍ରେରଣାର ଉତ୍ସ

୧୯୭୯ ମସିହା କଥା । ମୁଁ ସେ ବର୍ଷ ବି.ଏ ପଢୁଥାଏ । ଶିକ୍ଷା ସମ୍ମାନର ଛାତ୍ରୀ । ଶିକ୍ଷା ବିଭାଗର ଛାତ୍ରୀ ହୋଇଥିବାରୁ ଗାନ୍ଧୀ, ଗୋପବନ୍ଧୁ, ଶ୍ରୀଅରବିନ୍ଦ, ବିବେକାନନ୍ଦଙ୍କ ଜୀବନୀ, ଶିକ୍ଷାଦର୍ଶନ ଆଦି ସହିତ ପରିଚିତ ହୋଇଥାଏ । ମନ ଭିତରେ ଥାଏ ଶିକ୍ଷାକୁ ନେଇ କିଛି ପରୀକ୍ଷା ନୀରିକ୍ଷା କରିବା ପାଇଁ । ସୁଯୋଗ ମିଳୁ ନ ଥାଏ । ସମାଜର ଅବହେଳିତ, ଦୁସ୍ଥ ଜନଗଣଙ୍କ ପାଇଁ ମଧ କିଛି କରିବାପାଇଁ ଆଗ୍ରହ ଥାଏ ।

ବି.ଏ ପରୀକ୍ଷା ଫଳ ପ୍ରକାଶିତ ହେଲା । ମୁଁ ବିଶ୍ୱବିଦ୍ୟାଳୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହେଲି । ଶିକ୍ଷାରେ ଏମ୍.ଏ ନ ଥିବାରୁ ସମାଜ ବିଜ୍ଞାନ ଏମ୍.ଏ ଶ୍ରେଣୀରେ ନାମ ଲେଖେଇଲି । ଠିକ୍ ସେହି ବର୍ଷ ସମ୍ବଲପୁର ସହରରେ ଅସହାୟ, ଦୁଃସ୍ଥ ମହିଳାମାନଙ୍କ ପାଇଁ ଏକ କେନ୍ଦ୍ର ଖୋଲିବା ପାଇଁ ଯୋଜନା ହେଲା । ଏହି ମହିଳାମାନେ ଅନେକ ଦିନରୁ ପାଠ ଛାଡ଼ି ଦେଇଥିଲେ । ମ୍ୟାଟ୍ରିକ୍ ପାଶ୍ କଲେ କିଛି କରିପାରିବେ ସେମାନଙ୍କ ଆର୍ଥିକ ଥଇଥାନ ହେବ, ଏହି ଉଦ୍ଦେଶ୍ୟରେ ଶିକ୍ଷାକେନ୍ଦ୍ର ଖୋଲା ହେଲା । କାର୍ଯ୍ୟ ଖୁବ୍ କଠିନ ଥିଲା । ସେମାନଙ୍କ ଭିତରେ ଆତ୍ମ ବିଶ୍ୱାସ ବୃଦ୍ଧି କରି ପାଠ ପଢ଼ାଇବା, ପାଠରେ ମନ କରାଇବା କଠିଣ

ସମସ୍ୟା ଥିଲା । ଆମକୁ ଭୀଷଣ ପରିଶ୍ରମ କରିବାକୁ ପଡୁଥିଲା ।

ସେହି ଶିକ୍ଷାକେନ୍ଦ୍ରରେ ମୋ ସହିତ ଯୋଗ ଦେଇଥିଲେ ଶ୍ରୀଯୁକ୍ତ ମୁକ୍ତକଣ୍ଠ ପ୍ରଧାନ ଓ କୁମାରୀ ଅନୁରାଧା ପୁରୋହିତ ତଥା ଅନ୍ୟମାନେ । ମୁକ୍ତକଣ୍ଠଭାଇ ଓ ଅନୁଅପାଙ୍କ ସହିତ ମୋର ସାକ୍ଷାତ ମୋ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ମୋର ସମସାମୟିକ ହେଲେ ମଧ ମୁକ୍ତକଣ୍ଠଭାଇଙ୍କ ଜ୍ଞାନ, ଜୀବନ ଦର୍ଶନ ଓ ଅନୁଅପାଙ୍କ ତ୍ୟାଗ, ନିଷ୍ଠା, ସ୍ନେହ ତଥା ପାଠ ପଢ଼ାଇବାର ଶୈଳୀ ମତେ ଅନେକ କିଛି ଶିଖିବା ପାଇଁ ସୁଯୋଗ ଦେଲା । ପାଠପଢ଼ା ସହିତ ଅନେକ ପୁସ୍ତକ ଓ ଦର୍ଶନ ବିଷୟରେ ସେମାନେ ଆଲୋଚନା କରୁଥିଲେ । ମୁଁ ମଧ ସେହି ଆଲୋଚନା ଚକ୍ରରେ ଯୋଗଦାନ କରୁଥିଲି । ଦିନେ ସେମାନେ ଚିତ୍ତରଂଜନ ଦାସଙ୍କ ସମାଜ ବିଜ୍ଞାନ ବିଷୟରେ ଆଲୋଚନା କରୁଥିଲେ । ମୁଁ ଚିତ୍ତରଂଜନ ଦାସଙ୍କ ବହି ମୋଟେ ପଢ଼ି ନଥିଲି । ମତେ ମୁକ୍ତକଣ୍ଠ ଭାଇ ସମାଜ ବିଜ୍ଞାନର ଛାତ୍ରୀ ଭାବରେ ତାଙ୍କ ପ୍ରକାଶିତ ବହି ପଢ଼ିବା ଉଚିତ କହି ଅନେକ ବହି ଆଣିଦେଲେ । ସେଇଠୁ ମୋର ଚିତ୍ତଭାଇଙ୍କ ସହିତ ବହି ମାଧମରେ ପରିଚିତ ହେଲା ।

କିଛି ଦିନ ପରେ ମୁକ୍ତକଣ୍ଠଭାଇ ଭାଗଲପୁର (ବିହାର)କୁ ଚାଲିଗଲେ । ଅନୁଅପା ମଧ ବି.ଇଡି. ପାଶ୍ କରି ବିଦ୍ୟାଳୟରେ ଶିକ୍ଷୟିତ୍ରୀ ଭାବରେ ଯୋଗଦାନ କଲେ । ତଥାପି ଆମର ସଂପର୍କ ନିବିଡ଼ତର ହେଉଥାଏ । ମୁକ୍ତକଣ୍ଠ ବିହାରରୁ ଚାଲି ଆସି ମାଣ୍ଡୋସିଲରେ ଅଧ୍ୟାପକ ଭାବରେ ଯୋଗଦାନ କଲେ । ମୁଁ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଅଧ୍ୟାପିକା ଭାବରେ ଯୋଗଦାନ କଲି । ମୁକ୍ତକଣ୍ଠଭାଇ ଜଣେ ସ୍ୱାଧୀନ ଚେତା ବ୍ୟକ୍ତି । ଚାକିରି ଜୀବନରେ ଅନେକ ସାଲିସ କରିବାକୁ ପଡ଼େ । ସେ ତାକୁ ଚାହିଁଲେ ନାହିଁ ଓ ଚାକିରିରୁ ଅବ୍ୟାହତି ନେଇ ଚାଲିଆସିଲେ ।

ଏ ଭିତରେ ଚିତ୍ତଭାଇଙ୍କ ସହ ଚିଠିର ଆଦାନ ପ୍ରଦାନ ଆରମ୍ଭ ହୋଇଯାଇଥାଏ । ଜୀବନ ବିଦ୍ୟାଳୟ ପୁସ୍ତକକୁ ଆମେ ପଢ଼ିସାରିଥାଉ । ଜୀବନ ବିଦ୍ୟାଳୟର ଅନେକ ଛାତ୍ରଛାତ୍ରୀ ମାନଙ୍କ ସହ ଆମର ଯୋଗାଯୋଗ ହୋଇ ସାରିଥାଏ । ସେମାନଙ୍କଠାରୁ ଚିତ୍ତଭାଇଙ୍କ ବ୍ୟକ୍ତିତ୍ୱ ତାଙ୍କର ସ୍ନେହପୂର୍ଣ୍ଣ ସରଳ ବ୍ୟବହାର ବିଷୟରେ ଜାଣି ସାରିଥିଲୁ । ଆମେ ସମସ୍ତେ ବସି ବିଚାର କଲୁ ଜୀବନ ବିଦ୍ୟାଳୟଟିଏ ଆମେ ନିଜେ ଆରମ୍ଭ କରିବୁ । ମୁକ୍ତକଣ୍ଠଭାଇ ଓ ସମଧର୍ମୀ କେତେଜଣ ଭାଇ ଯୁଯୋମୁରା ବ୍ଲକ୍‌ର ମେଘପାଲ ଅଚଂଳରେ ପହଞ୍ଚିଲେ । ସମ୍ବଲପୁର ସହରରୁ ମାତ୍ର ୪୦କିମି ଦୂର ମାତ୍ର ଅତ୍ୟନ୍ତ ଅବହେଳିତ ଅବସ୍ଥାରେ ଅଛି ମେଘପାଲ । ଶିକ୍ଷିତ ମୋଟେ ନାହାନ୍ତି କହିଲେ ଚଳେ । ବିଦ୍ୟାଳୟଗୁଡ଼ିକ

ପୂରାପୂରି ବନ୍ଦ । ମଦ ନିଶାରେ ସମସ୍ତେ ଚୁରଚୁର । କାମ ଅଭାବ, ଖାଦ୍ୟ ଅଭାବ ଓ ଶିକ୍ଷାର ଅଭାବ ଯୋଗୁଁ ଲୋକମାନେ ଅତ୍ୟନ୍ତ ଦୟନୀୟ ଅବସ୍ଥାରେ ଥାଆନ୍ତି । ନିଘଞ୍ଚ ଶାଳବଣ, ବାଘ, ଭାଲୁ ଓ ସାପର ଉପଦ୍ରବ । ମୁକ୍ତକଣ୍ଠଭାଇ ସ୍ଥିର କଲେ ଯେ ସେ ସେଇଠି କାମ ଆରମ୍ଭ କରିବେ । ଆମେମାନେ ମଧ୍ୟ ଯୋଗଦାନ କଲୁ । କିଛି ସମଧର୍ମୀ ବନ୍ଧୁମାନଙ୍କୁ ନେଇ 'ମାନବ କଲ୍ୟାଣ' ନାମକ ଏକ ସ୍ୱେଚ୍ଛାସେବୀ ସଂଗଠନ ଗଢ଼ିଲୁ । ଏ ସବୁ କଠିଣ କାମରେ ଚିତ୍ତଭାଇଙ୍କ ଚିଠି ହିଁ ଆମମାନଙ୍କ ପ୍ରେରଣାର ଉତ୍ସ ହୋଇ ରହିଥାଏ ।

ସେ ସମୟରେ ଚିତ୍ତ ଭାଇ ଯୁବକମାନଙ୍କୁ ନେଇ ଏକ ଶ୍ରମ ଶିବିର ଆୟୋଜନ କରୁଥାଆନ୍ତି । ବର୍ଷକୁ ୨ ଥର ଏହି ଶ୍ରମ ଶିବିରରେ ହେଉଥାଏ । ଶୀତ ଦିନ ଓ ଗ୍ରୀଷ୍ମ ଦିନେ ଅର୍ଥାତ୍ ଦଶହରା ଛୁଟୀରେ ଓ ଖରାଛୁଟୀରେ । କୌଣସି ଏକ ବିଦ୍ୟାଳୟରେ ଏହା ଆୟୋଜିତ ହୋଇଥାଏ । ଚିତ୍ତଭାଇ ଆମକୁ ବରହମପୁର ଶ୍ରୀଅରବିନ୍ଦ ସ୍କୁଲକୁ ଶ୍ରମ ଶିବିରରେ ଯୋଗଦାନ କରିବାକୁ ଚିଠି ଲେଖିଲେ । ଆମେ ଆମର ସମସ୍ତ କାର୍ଯ୍ୟକ୍ରମ ବନ୍ଦ କରି ସେଠିକୁ ଯିବାପାଇଁ ସ୍ଥିର କଲୁ । ଶେଷରେ ସେ ଦିନ ଆସିଲା, ଆମେ ସମସ୍ତେ ସେଠାରେ ପହଞ୍ଚିଲୁ । ଚିତ୍ତଭାଇଙ୍କ ସହିତ ପ୍ରତ୍ୟକ୍ଷ ଦେଖାସାକ୍ଷାତ୍ ହେଲା । ବଡ଼ିଭୋରରୁ ରବୀନ୍ଦ୍ର ସଙ୍ଗୀତ, ସକାଳୁ କିଛି ଶ୍ରମ, ଦ୍ୱିପ୍ରହରର ଶ୍ରୀମା, ଶ୍ରୀଅରବିନ୍ଦଙ୍କ ଲେଖାର ଆଲୋଚନା ଓ ରାତିରେ ମୁକ୍ତ ଆଲୋଚନା । ତା ସହିତ ଗାଁରୁ ଆରମ୍ଭ କରି ପୃଥିବୀର ପ୍ରତ୍ୟେକ ଘଟଣାବଳୀକୁ ନେଇ ତର୍କ ଓ ବିତର୍କ । ଅନେକ ଦେଶର ନିତିଦିନିଆ ଜୀବନର ଆଲୋଚନା, ଭାଷା, ସଂସ୍କୃତି ସହିତ ସାଧାରଣ ଜୀବନର ଦୁଃଖ, ଦୁର୍ଦ୍ଦଶା, ଆଶା ଆକାଂକ୍ଷା । ଖୁବ୍ ଭଲ ଲାଗିଲା । ଜୀବନର ଅନେକ ଅସମାହିତ ପ୍ରଶ୍ନଗୁଡ଼ିକର ଉତ୍ତର ମିଳିଗଲା । ହୃଦୟଟା ଆନନ୍ଦରେ ପୂରିଗଲା । ଆଗକୁ ବଢ଼ିବାପାଇଁ ସାହସ ମିଳିଗଲା । ଚିତ୍ତଭାଇ ଅନେକ ବହି ପଢ଼ିବାକୁ ପ୍ରସ୍ତାବ ଦେଲେ । ଲେଖିବାକୁ ଉତ୍ସାହ ଦେଲେ । ମୁକ୍ତକଣ୍ଠ ଭାଇଙ୍କୁ ସେ ବୈଦ୍ୟରାଜ ବୋଲି ସମ୍ବୋଧନ କରୁଥିଲେ । ମେଘପାଲସ୍ଥିତ ଜୀବନ ବିଦ୍ୟାଳୟର ଅନେକ ଭବିଷ୍ୟତ ଯୋଜନା ସେଇଠି ତିଆରି ହେଲା ।

ତା'ପରେ ପରେ ଅନେକ ଶ୍ରମ ଶିବିର, ଛାତ୍ର ଶିବିର, ଚିଠି ପତ୍ରର ଆଦାନ ପ୍ରଦାନ ମାଧ୍ୟମରେ ଚିତ୍ତଭାଇଙ୍କ ସହ ଯୋଗାଯୋଗ ହୋଇଛି । ଚିତ୍ତଭାଇ ଅନେକଥର ମେଘପାଳ ଯାଇଛନ୍ତି । ମେଘପାଳର ଛାତ୍ରଛାତ୍ରୀ ଗଛପତ୍ରକୁ ସେ ନିଜର ସ୍ନେହ ସ୍ପର୍ଶରେ ମତୁଆଲ କରିଛନ୍ତି । ସମ୍ବଲପୁରକୁ ଯେତେବେଳେ ବି ସେ ଆସନ୍ତି

ଆମ ପାଖରେ ରହନ୍ତି । ପରବର୍ତ୍ତୀ ସମୟରେ ମୃତ୍ୟୁଞ୍ଜୟ ଭାଇ ଓ ଅନୁଅପା ତଥା ଆମେ ସମସ୍ତେ ଗୋଟିଏ ମିଳିତ ପରିବାର ଗଠନ କରି ତାର ନାଁ ଦେଲୁ 'ଆନନ୍ଦ ଆଶ୍ରମ' ଚିତ୍ତଭାଇ ଏହି ଆନନ୍ଦ ଆଶ୍ରମରେ ହିଁ ରହନ୍ତି । ଅନୁଅପାଙ୍କ ମାଛ ଭଜା, ଶାଗ ଭଜା ଓ ବାଇଗଣ ଭଜା ତାଙ୍କର ଅତି ପ୍ରିୟ । ମଝିରେ ମଝିରେ କୋଳଥ ଡାଲି ପାଇଁ ମଧ୍ୟ ବରାଦ କରନ୍ତି । ଭୁବନେଶ୍ୱର ଗଲେ ଆମେ ମଧ୍ୟ ତାଙ୍କ ସହିତ ଦେଖା କରୁ ।

ବାସ୍ତବିକ ଚିତ୍ତଭାଇଙ୍କ ସରଳ ଜୀବନ ଓ ଉଚ୍ଚ ଚିନ୍ତାଧାରା ଆମ ସମସ୍ତଙ୍କ ପାଇଁ ପ୍ରଣିଧାନଯୋଗ୍ୟ । ଉଚ୍ଚ ଶିକ୍ଷିତ, ବିଦେଶ ଫେରନ୍ତା, ଅନେକ ଭାଷାରେ ଜ୍ଞାନୀ ଚିତ୍ତଭାଇଙ୍କୁ ଯେ ପ୍ରତ୍ୟକ୍ଷ ଭାବରେ ନ ଦେଖିଛି ସେ ଜାଣି ପାରିବ ନାହିଁ ମଣିଷ କେତେଦୂର ନମ୍ର, ସ୍ନେହୀ ହୋଇପାରେ । ପ୍ରତ୍ୟେକ ବ୍ୟକ୍ତିଙ୍କୁ ହୃଦୟ ସହିତ ଭଲ ପାଇବା, ସେମାନଙ୍କର ସମସ୍ୟା ସହିତ ଏକାକାର ହେବା, ପ୍ରତ୍ୟେକ ଚିଠିର ଉତ୍ତର ଦେବା ଓ ଏତେଗୁଡ଼ିଏ ବହି ଲେଖିବା କେବଳ ତାଙ୍କପରି ବ୍ୟକ୍ତିତ୍ୱ ପକ୍ଷରେ ସଂଭବ । ଥରେ ଥରେ ସମସ୍ୟା ବେଶୀ ହେଲେ ମନ ନିରାଶ ହୁଏ । ଚିଠି ଲେଖିଲେ ଯେଉଁ ପ୍ରେରଣାଦାୟକ ଚିଠି ମିଳେ ତାହା ମନରେ ଶତ ସିଂହର ବଳ ସଂଚାରି ଦିଏ ।

ମାନବିକତାର ମୂର୍ତ୍ତିମନ୍ତ ପ୍ରତୀକ ହେଉଛନ୍ତି ଚିତ୍ତଭାଇ । ମୁଁ ପିଆଜ ରସୁଣ ଖାଏ ନାହିଁ ବୋଲି ସେ ମଝିରେ ମଝିରେ ରସିକତା କରି କହନ୍ତି 'ନିରୁଅପା ଉଚ୍ଚଶ୍ରେଣୀର ମାନବ, ଆମେ ସବୁ ପଶୁକୀଟ, ନିମ୍ନ ଶ୍ରେଣୀ, ସେ ଆଶୀର୍ବାଦ କଲେ ହିଁ ଆମର ମୁକ୍ତି ।' କଠୋର ନିୟମ କାନୁନ ମଣିଷକୁ କଠିନ କରିଦିଏ । ଧର୍ମର ବିଭିନ୍ନ ନିୟମ ମଣିଷକୁ ମଣିଷଠାରୁ ଦୂରେଇ ଦିଏ । ଧର୍ମ, ଦେଶ, ଲିଙ୍ଗର ଊର୍ଦ୍ଧ୍ୱରେ ଆମେ ସମସ୍ତେ ଯେ ଏକ, ଏହାହିଁ ତାଙ୍କର ବକ୍ତବ୍ୟର ଅସଲ ଉଦ୍ଦେଶ୍ୟ । ସମସ୍ତ ମଣିଷ ତିଆରି ସୀମାକୁ ଡେଇଁ ଏକ ସୁନ୍ଦର ପୃଥିବୀର ସେ କଳ୍ପନା କରନ୍ତି ଯେଉଁଠି କୌଣସି ପ୍ରକାର ଭେଦଭାବ ନଥିବ, ମଣିଷ ମଣିଷ ଉପରେ ଅତ୍ୟାଚାର କରୁ ନଥିବ । ସମସ୍ତ ମଣିଷ ସମାନ, ସମସ୍ତଙ୍କର ମୌଳିକ ଆବଶ୍ୟକତା ସମାନ, ଏଥିପାଇଁ ମଣିଷ ତିଆରି ନିୟମ ବାଧା ସୃଷ୍ଟି ନ କରୁ ଏହାହିଁ ସେ କହନ୍ତି ।

ଶିଶୁର ସର୍ବାଙ୍ଗୀନ ବିକାଶ ହିଁ ଶିକ୍ଷା, ଏହା ଶିଶୁକୁ ନିର୍ଭୟ କରେ, ଶ୍ରେଣୀ କକ୍ଷର ନୀତିନିୟମ ତାକୁ ତା'ର ପ୍ରଶ୍ନ ପଚାରିବାର ଅଧିକାରରୁ ଦୂରେଇ ରଖେ । ତା'ର ଭିତରେ ଭୟ ସୃଷ୍ଟି କରେ । ଏ ଶିକ୍ଷା କେବଳ କୋକିଶିଆଳୀ ତିଆରି କରେ । ୨୦୦୨ ମସିହାରେ ସମ୍ବଲପୁର ବିଶ୍ୱ ବିଦ୍ୟାଳୟକୁ ଆସିଥିବା ସମୟରେ ଶିକ୍ଷକ. ଅଧ୍ୟାପକ ମାନଙ୍କୁ ସେମାନଙ୍କର ଦାୟିତ୍ୱ ଚେତେଇ ଦେବା ଅବସରରେ ସେ ସମସ୍ତଙ୍କୁ

ଅତ୍ୟନ୍ତ କଡ଼ା ଭାଷାରେ ସମାଲୋଚନା କରିଥିଲେ ।

ଚିତ୍ତଭାଇଙ୍କ ବ୍ୟକ୍ତିତ୍ୱ ଏକ ବହୁମୁଖୀ ପ୍ରତିଭା । ପ୍ରତ୍ୟେକ ଦିଗକୁ ଆଲୋଚନା କଲେ ସେ ଏକ ଗ୍ରନ୍ଥ ହେବ । ଆମମାନଙ୍କ ସହିତ ତାଙ୍କର ପରିଚୟ ଏକ ନିବିଡ଼ ଆନ୍ତରିକତା, ସ୍ନେହର ସଂପର୍କ, ଆମ ପାଇଁ ତାଙ୍କର ସ୍ମୃତି ଅମୂଲ୍ୟ ସଂପଦ । ସେ ଯୁଗେ ଯୁଗେ ଆମକୁ ପ୍ରେରଣା ଦେଉଥାନ୍ତୁ- ଏହାହିଁ କାମନା ।

ଡକ୍ଟର ନିରୁପମା ବଡ଼ପଣ୍ଡା
*ଅଧ୍ୟାପିକା, ଡ.ପ.ମିଶ୍ର ଅଗ୍ରଗାମୀ*
*ଶିକ୍ଷାପ୍ରତିଷ୍ଠାନ, ସମ୍ବଲପୁର*

# ମୋ ଅନୁଭୂତିରେ ଚିତ୍ତଭାଇ

ଏ ଦୁନିଆରେ ସତ୍ୟର ସନ୍ଧାନ ନିମନ୍ତେ ସଚେତନ ଭାବରେ କେତେକ ଆତ୍ମା ଚେଷ୍ଟା କରି ଥାଆନ୍ତି । ଅଜ୍ଞାନ ଓ ଅନ୍ଧକାରର ଦିଗ୍‌ବଳୟରେ ଦିନେ ଉଦିତ ହୁଏ ସତ୍ୟର ସୂର୍ଯ୍ୟ । ଯାହା ସେମାନଙ୍କର ଜୀବନକୁ ଝଲମଲ କରିଦିଏ । ସେହି ଆଲୋକ ଦୀପ୍ତ ଦିବ୍ୟାତ୍ମାଗୁଡ଼ିକ ମଧ୍ୟରେ ଆମେ ଖୋଜି ପାଉ ଚିତ୍ତଭାଇଙ୍କୁ । ସ୍ନେହ, ପ୍ରେମର ପ୍ରତିମୂର୍ତ୍ତି ସେ ଜଣେ ସରଳ ଓ ନିଷ୍ପାପ ମଣିଷ । ସେ ମଣିଷର ରୂପକୁ ଭଲ ପାଆନ୍ତି ନାହିଁ । ଭଲ ପାଆନ୍ତି ତା'ର ମନକୁ ଓ ହୃଦୟକୁ । ତେଣୁ କୁନି କୁନି ପିଲାଙ୍କଠୁଁ ଆରମ୍ଭ କରି ବଡ଼ ବଡ଼ ଅପାଭାଇଙ୍କର ସେ ଅତି ଆଦରର ଚିତ୍ତଭାଇ । ତାଙ୍କର ଏମିତି ଆତ୍ମାଟିଏ ଅଛି, ଯେଉଁଥିରେ ଅହଂକାର, ଗର୍ବ, ଈର୍ଷା, ଶତ୍ରୁତା ନ ଥାଏ । ଥାଏ, ଖାଲି ସ୍ନେହ, ଶ୍ରଦ୍ଧା ଓ ପ୍ରେମ । ତାଙ୍କର ଅଗାଧ ପାଣ୍ଡିତ୍ୟ ଓ ଈଶ୍ୱରୀୟ ପ୍ରତିଭା ତାଙ୍କୁ ଆଜି ମହାନ କରି ତୋଳି ଧରିଛି । ସେ ସବୁବେଳେ କ'ଣ ବସି ଭାବନ୍ତି । ଯେତେବେଳେ ଭାଇଅପାମାନେ ବସନ୍ତି ଓ ଆମେ ସବୁ ଛୋଟ ଛୋଟ ପିଲା ମିଶି ଆଲୋଚନା କରୁ, ସେତେବେଳେ ଚିତ୍ତଭାଇ ସବୁ ମନ ଧ୍ୟାନ ସହ ଶୁଣନ୍ତି । କିନ୍ତୁ ଶେଷରେ ସେ ହଠାତ୍ ହସ୍ତକ୍ଷେପ କରି ଓ ଆମ ବିଚାରର ଭୁଲଟିକୁ ଦେଖାଇଥାନ୍ତି ଏବଂ ଠିକ୍ କଥାଟି କହିଥାନ୍ତି ।

ସେ ଛୋଟ ଛୋଟ ପିଲାମାନଙ୍କୁ ବହୁତ ଭଲ ପାଆନ୍ତି । ସେ ଅନେକ ବହି ଲେଖିଛନ୍ତି, ଅନେକ ଭାଷଣ ଦେଇଛନ୍ତି । କିନ୍ତୁ ସେ ଆମ ପିଲାମାନଙ୍କ ସହ ସାଙ୍ଗ ପରି ରୁହନ୍ତି । ସେ ଆମ ସଂଗେ ମିଶି ଗୀତ ଗାଆନ୍ତି । ସକାଳେ ସେ ଉଠି ସମସ୍ତଙ୍କୁ ଉଠାଇ ରବୀନ୍ଦ୍ରନାଥଙ୍କ ବଙ୍ଗଳା ଗୀତ ଗାଆନ୍ତି । ତାଙ୍କ ଥର ଥର କଣ୍ଠରେ ଭାସି

ଆସେ 'ଓରା ଅବାରନେ ଚଞ୍ଚଲ' ଗୀତ । ତା' ସହ ସେ ଅନେକ ଗୀତ ଗାଆନ୍ତି । ତାଙ୍କ ସ୍ୱରରେ ଥାଏ ଶତ ସିଂହର ବଳ ।

ତାଙ୍କୁ ଯିଏ ଦେଖେ, ଆପଣା ଛାଏଁ ସେ ତାଙ୍କର ନିଜର ହୋଇଯାଏ । ତାଙ୍କର ଆତ୍ମୀୟତା ଓ ଭଲ ପାଇବା ସମସ୍ତଙ୍କୁ ଆପଣାର ବନେଇ ଦିଏ । ସେ ସମସ୍ତଙ୍କ ମନରେ ଥିବା ଅଜ୍ଞତା ଓ ଅନ୍ଧକାରରୁ ବାହାର କରିଦେବାରେ ସାହାଯ୍ୟ କରନ୍ତି । ମୋର ମନେ ହୁଏ ଚିତ୍ତଭାଇ ଜଣେ ଦିବ୍ୟ ପୁରୁଷ । ମୁଁ ଥରେ ତାଙ୍କୁ ଚିଠିରେ ଅନେକ ଗୁଡ଼ିଏ ପ୍ରଶ୍ନ ପଚାରିଥିଲି । ସେ ମୋତେ ମୋ ପ୍ରଶ୍ନର ଉତ୍ତର ମଧ୍ୟ ଦେଇଥିଲେ । ପରେ ମୋ ମନ ଭିତରେ ଥିବା ସମସ୍ତ ପ୍ରଶ୍ନକୁ ମୁଁ ଚିଠିରେ ଲେଖି ତାଙ୍କୁ ଜଣାଇଲି । ସେ ମୋତେ ଉତ୍ତରରେ କହିଲେ- ''ପ୍ରଶ୍ନ ପଚାରିବାଟା ଗୋଟିଏ ଭଲ କଥା । କିନ୍ତୁ ଉତ୍ତର ପାଇଁ ଆଉ କାହା ଉପରେ ନିର୍ଭର କରିବାଟା ଠିକ୍ ନୁହେଁ ।'' ତା'ପରେ ଜାଣିଲି ଚିତ୍ତଭାଇ କେତେ ମହାନ୍ । ସେ ପ୍ରତ୍ୟେକ ଶିଶୁ ଭିତରେ ଥିବା ସୃଜନାତ୍ମକ ବିକାଶ ଦିଗରେ ଏକ ଦିବ୍ୟଦ୍ରଷ୍ଟା ।

ଏ ପୃଥିବୀରେ ଏମିତି କିଛି ଲୋକ ଅଛନ୍ତି ଯେଉଁମାନେ ସବୁବେଳେ ନିଜ କଥା ଚିନ୍ତା କରନ୍ତି । କିନ୍ତୁ ଏମିତି ବି କିଛି ଲୋକ ଅଛନ୍ତି, ଯେଉଁମାନେ ନିଜର ଜୀବନକୁ ଅନ୍ୟମାନଙ୍କ ହାତରେ ଟେକି ଦେଇଥାନ୍ତି । ମୋର ମନେ ହୁଏ, ଚିତ୍ତଭାଇ ଯେପରି ତାଙ୍କ ଜୀବନକୁ ପିଲାମାନଙ୍କ ନିକଟରେ ସମର୍ପି ଦେଇଛନ୍ତି । ସତରେ ତାଙ୍କ ହୃଦୟଟି ପିଲାଙ୍କ ପାଇଁ ।

ସେ ନିହାତି ସରଳ ମଣିଷଟିଏ । ବାବୁମାନଙ୍କ ପରି କୋର୍ଟସାର୍ଟପ୍ୟାଣ୍ଟ୍ ପିନ୍ଧି ବୁଲନ୍ତି ନାହିଁ କି ଗାଡ଼ିରେ ବସି ଅଏସ୍ କରନ୍ତି ନାହିଁ । ସେ କେବେ ନିଜ ପାଣ୍ଡିତ୍ୟ ଓ ପ୍ରତିଭା କାହାରିକୁ ଦେଖେଇ ହୁଅନ୍ତି ନାହିଁ । ସେ ସବୁବେଳେ ସରଳ ଜୀବନ ଯାପନ କରନ୍ତି । ତାଙ୍କୁ ଦେଖିଲେ ମନର ସବୁ ଦୁଶ୍ଚିନ୍ତା କୁଆଡ଼େ ଉଭେଇଯାଏ । ଚିତ୍ତଭାଇଙ୍କୁ ଦେଖିବା ପରେ ମୋ ମନ ଭିତରେ ଅନେକ ପରିବର୍ତ୍ତନ ଆସିଛି । ସେ କହନ୍ତି- 'ଉଦ୍ୟମ ଓ ଆଗ୍ରହ ପ୍ରଶଂସାର ଯୋଗ୍ୟ ।' ତେଣୁ ମୁଁ ତାଙ୍କରି ଏହି ମହାନ୍ ବାକ୍ୟଟିକୁ ଆଜି ପର୍ଯ୍ୟନ୍ତ ପାଳନ କରି ଆସିଛି ।

ମୁଁ କେବେ ଚିତ୍ତଭାଇଙ୍କ କ୍ଲାସରେ ଯୋଗ ଦେଇନାହିଁ । କିନ୍ତୁ ମୁଁ 'ନବପଲ୍ଲବ' ଶିବିରରେ ଯେତିକି ସମୟ ତାଙ୍କ ସହ ବିତାଇଛି, ସେହି ଟିକକ ଅନୁଭୂତିକୁ ଆଜି ମୁଁ କାଗଜ, କଲମ ଜରିଆରେ ଲିପିବଦ୍ଧ କରୁଛି ।

**ରୂପାଭାରତୀ ନାୟକ**

*କୁନ୍ତଳା କୁମାରୀ ମହିଳା ମହାବିଦ୍ୟାଳୟ, ବାଲେଶ୍ୱର*

# ଅତି ଆପଣାର

ଏମିତି ଏକ ଶୀତ ସନ୍ଧ୍ୟା । ପଟେଲ ହଲ୍ ପାଖରେ ଥାଏ ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର । କେନ୍ଦ୍ରରେ କାର୍ଯ୍ୟରତ ଶିକ୍ଷକ ଜଣକ ଶ୍ରୀଯୁକ୍ତ ଚିତ୍ତରଂଜନ ଦାସ ଦେହରେ ଧଳା କାମିଜ ଓ ଧଳା ଧୋତି ଖଣ୍ଡେ ପିନ୍ଧିଥାଆନ୍ତି । ମୁଁ ଓ ମୋ ସ୍ୱାମୀ ତାଙ୍କ ବିଷୟରେ ବହୁତ କଥା ଶୁଣିଥିଲୁ । ମନେ ମନେ ଭାବିଥିଲି କାଇଁ କେତେ ବଡ଼ ଲୋକ ହୋଇଥିବେ । କୋଟ ପ୍ୟାଣ୍ଟ ଯୋତା ଇତ୍ୟାଦି ପିନ୍ଧିଥିବେ । କିନ୍ତୁ ମୋ ଭାବନା ଫସର ଫାଟି ଗଲା । ନିହାତି ସାଧାରଣ ଲୋକଙ୍କ ପରି ବେଶଭୂଷା ପରିହିତ ମଣିଷ ଜଣେ । ବାହାରେ ଗଛ ମୂଳରେ ଠିଆ ହୋଇଥିଲି । ସେ ଯାଇ ଭାଇଙ୍କୁ ଡାକି ଆଣିଲେ । ଛାଇ, ଛାଇକା ଅନ୍ଧାର, ମୁଁ ତାଙ୍କୁ ଦେଖି ମୁଣ୍ଡକୁ ତଳେ ଲଗାଇ ପ୍ରଣାମ କଲି । ଚିତ୍ତଭାଇ କହିଲେ ଛି, ଛି, ଏ ସବୁ କ'ଣ ଯେ ? ଆଉ କ'ଣ ମୁଣ୍ଡିଆ ଅଛି ? କି ଆଦରଭରା ସ୍ନେହ ପୂର୍ଣ୍ଣ କଥା, ମୁଁ ସ୍ତମ୍ଭିତ ହୋଇଗଲି । ଏହା ଥିଲା ମୋର ତାଙ୍କର ପ୍ରଥମ ଦେଖା । ସଂକୋଚରେ କିଛି କହିପାରିଲି ନାହିଁ । ଖାଲି ମନଭରି ଆଖି ପୁରାଇ ଥରେ ଦେଖି ନେଲି । ଗୋରାତକ ତକ ଚେହେରା, ଦୀର୍ଘ ଶରୀର । ସୁନ୍ଦର ସ୍ୱର । ସବୁ କିନ୍ତୁ ସେଦିନ ମୋତେ ସୁନ୍ଦର ଲାଗିଲା । ଇଏ କହିଲେ, "ଚିତ୍ତଭାଇ, ମୁଁ ବିଭାଘର ସାରି ଆପଣଙ୍କ ଠାରୁ ଆଶୀର୍ବାଦ ନେବାକୁ ତାଙ୍କୁ ନେଇ ଆସିଛି ।" ଚିତ୍ତଭାଇ କି ଆଶିଷ ଦେଲେ କେଜାଣି ମୁଁ ତ କିଛି ଶୁଣି ପାରିଲି ନାହିଁ । କିନ୍ତୁ ତାଙ୍କ ହସ ହସ ମୁଖମଣ୍ଡଳ ପରିତୃପ୍ତିର ଚକ୍ଷୁ ଅନେକ ଆଶୀର୍ବାଦ ବର୍ଷଣ କରି ଯାଉଥିଲା । କିଛି ସମୟର ରହଣି ପରେ ମୁଁ ଚାରିବାଟିଆ ମୋ କର୍ମସ୍ଥଳୀକୁ ଫେରି ଆସିଲି । ତା'ପରେ ଆଉ ସେ ମହାପୁରୁଷଙ୍କୁ ଦେଖିବାର ସୁଯୋଗ ମିଳିନି । ମନେ, ମନେ, କେତେ ଖୋଜିଛି, ସୁବିଧା ସୁଯୋଗ ଜୁଟିନି, ଚାରିବାଟିଆ ୟୁ.ଜି.ଏମ୍.ଇ.ସ୍କୁଲଟି ଡେ ସ୍କୁଲ, ବହୁତ କାମ, ଫୁରସତ୍ ବି ମିଳେନି, କିନ୍ତୁ କେତୋଟି ଚିଠି ମୋ ସ୍ୱାମୀଙ୍କ ନାଁରେ ଆସେ, ପଢ଼ିବାର ସୁଯୋଗ ପାଇଛି । ପ୍ରତ୍ୟେକ ଚିଠିରେ ମୋ ନାଁ, ମୋ କଥା ଲେଖାଥାଏ । ମୋତେ ଭାରି ଖୁସୀ ଲାଗେ । ଥରେ କାହିଁକି ଅନେକ ଥର ସେ ଚିଠି ପଢ଼େ ।

ଏମିତି କେତେ ଦିନ ବିତିଗଲା । ମୋର ବଦଳି କଟକ ସହରକୁ ହୋଇ ପାରିଲାନି । ଜଗତପୁର ପାଖରେ ଖଇରା ଗାଁର ସ୍କୁଲ ଇମାମନଗର ୟୁ.ଜି.ଏମ୍.ଇ.ସ୍କୁଲରେ ଜଏନ୍ କଲି । ବଡ଼ ମେଡ଼ିକାଲର କ୍ୟାମ୍ପସ୍ ଭିତରେ ଚିତ୍ତଭାଇ

ସେ ସମୟରେ ରହୁଥିଲେ । ପ୍ରାୟ ଆମ ଘରକୁ ସାଇକେଲରେ ଆସନ୍ତି । ମୋ ପୁଅ (ବାବୁ) ତାଙ୍କର ବଡ଼ ସାଙ୍ଗ । ଉପରବେଳା ସାଇକେଲରେ ଆସି ପହଁଚି ଯାଆନ୍ତି । ମୋ'ର ବଡ଼ ଖୁସୀ ଥିଲା ଚିତ୍ତଭାଇଙ୍କୁ ପିଠା ଖୁଆଇବାରେ, ତାଙ୍କର ସବୁଠାରୁ ପ୍ରିୟ ଖାଦ୍ୟ କୋବି ଶାଗ, ଚକୁଳିପିଠା ଓ ଚିତଉପିଠା । ଏଇ ଅବସରରେ କେତେ ଦେଶ ବିଦେଶର କଥା ତାଙ୍କ ଠାରୁ ଶୁଣେ । ଏ ଥିଲା ୧୯୮୨ ମସିହା ଠାରୁ ୧୯୮୫ ମସିହା ଭିତର କଥା ବୋଧହୁଏ । ମୋ ଘରେ ସାଇକେଲ ରଖି ମୋ ପୁଅ ବାବୁ (ଯାହାର ବୟସ ସେତେବେଳେ ୯/୧୦ ବର୍ଷ ମାତ୍ର)କୁ ସଙ୍ଗରେ ଧରି ତାଙ୍କ କେତେଜଣ ପରିଚିତ ଲୋକଙ୍କ ଘରକୁ ଯାଆନ୍ତି, ମୋତେ ହସ ଲାଗେ । ବାବୁ ମନେ ମନେ ଭାବେ ସେ ଯେମିତି ଚିତ୍ତଭାଇଙ୍କ ବନ୍ଧୁ । ଭାରି ଆଗ୍ରହରେ ଘର ଚିହ୍ନାଇ ଚିତ୍ତଭାଇଙ୍କ ସହ ଯିବା ଆସିବା କରେ । କାହାଘରେ କ'ଣ ଖାଏ ଆସି ମୋ ଆଗରେ ବର୍ଣ୍ଣନା କରେ । ତା'ପରେ ଚିତ୍ତଭାଇ ବିଦେଶ ଯାଆନ୍ତି । ଫେରିବା ପରେ ବାବୁ ଓ ରାଣୀ ପାଇଁ ଖେଳଣା ଓ ମିଠାଇ ସାଙ୍ଗରେ ଧରି ଆସନ୍ତି । ମୋ ପୁଅଝିଅଙ୍କ ଆନନ୍ଦ କାହିଁରେ କ'ଣ ! (ମୋ ଝିଅ ରାଣୀର ଖେଳନା ଥିଲା ଜଣେ ଚୀନ୍ ଝିଅ) ମୁଁ ସେତେବେଳେ ସ୍କୁଲକୁ ବସ୍‌ରେ ଯିବା ଆସିବା କରୁଥାଏ । ଘରୁ ବସଷ୍ଟାଣ୍ଡ, ସେଠୁ ଖଇରା ପୋଲ ସାଲେପୁର ବସ୍ । ସେଥିରେ ଘରକାମ । ଏସବୁ ଦେଖି ମୋତେ କୁହନ୍ତି ନିଶ୍ଚୟ କଟକ ଟାଉନକୁ ବଦଳି ହେବ, ଅପେକ୍ଷା କର । ଆଉ ଥରେ ସେ କଷ୍ଟ ଦେଖି ସହି ନ ପାରି ମୋତେ କହିଲେ, ଗୋଟେ କାଗଜରେ ତୁମ ନାଁ, ସ୍କୁଲ ନାଁ ସବୁ ଲେଖି ଦେଲ, ମୁଁ କାହାକୁ ଦେବି । ମୁଁ ଲେଖି ଦେଇଥିଲି । କହିଲେ କାହାକୁ କହିବେ ବିଚାର କରିବାକୁ । ମୁଁ ଏହା ଶୁଣି ଆଶ୍ଚର୍ଯ୍ୟ ହେଲି । କହିଲେ, ଧର୍ଯ୍ୟଧର ଦିନେ ତୁମେ ବଦଳି ହୋଇ ଆସିବ । ସବୁ ଆଶଙ୍କା,ଦ୍ୱନ୍ଦ୍ୱକୁ ପଛରେ ପକାଇ ସେହି ମହାପୁରୁଷଙ୍କ କଥା ସତ ହେଲା । ୧୯୮୫ମସିହାରେ ମୁଁ ଗଭର୍ଣ୍ଣମେଣ୍ଟ ପ୍ରେସ୍ କଲୋନୀ ରେ ଯୋଗ ଦେଲି । ସେତ ଥିଲେ ମୋ ପାଇଁ ଦେବତା । ତାଙ୍କର ପ୍ରତ୍ୟେକ କଥା ମୋର ଆଜିବି ମନେ ରହିଛି । ଗୋଡ଼ ଖଣ୍ଡିଆ ହୋଇ ନଖ ପାଚି ଯାଇଥିବ । ମୁଁ ବ୍ୟସ୍ତ ହେଇ କିଛି ଅୟଣ୍ଟମେଣ୍ଟ ଲଗାନ୍ତୁ ବୋଲି କହେ, ସେଥିପ୍ରତି ତାଙ୍କର ଖାତିର ନଥିବ । କୁହନ୍ତି ଏହା ମନକୁ ଭଲ ହୋଇଯିବ ।

ଆଉ ଥରେ ତାଙ୍କ ପୁଅ ମାନୁକୁ ନେଇ ଆସିଥାନ୍ତି । ପୁଅକୁ ମୋ ପାଖରେ ଛାଡ଼ି ତାଙ୍କ ସହ କୁଆଡ଼େ ଗଲେ । ପୁଅ ବସି ଚୁପ୍ ଚାପ୍ ବହି ପଢ଼ିଲା । ଏତେ ସୁନ୍ଦର ପୁଅ ମାନୁ, ମୁଁ ବିଶ୍ୱାସ କରିପାରିଲି ନାହିଁ । ବାପାଙ୍କ ଭଳି ବହି ପଢ଼ାରେ ତାର ଝୁଙ୍କ । ଖାଇବାକୁ ଦେଲେ ମଧ ସେଥିପ୍ରତି ତା'ର ଖାତିର ନାହିଁ ।

ସେତେବେଳକୁ ବୋଧେ ନବମ କି ଦଶମରେ ପଢୁଥାଏ । ବେଶୀ କଥା କହେନି, ତା ବାପାଙ୍କ ଆସିବା ପର୍ଯ୍ୟନ୍ତ ଧର୍ଯ୍ୟର ସହ ଅପେକ୍ଷା କରି ମୋ ପାଖରେ ବସି ରହିଲା ।

ଛୋଟିଆ ଟାଇଲ ଘରଟି ଆମର । ମାଷ୍ଟର ଚାକିରି, ଅଭାବ ସଂସାର । ଦିନେ ଅଦିନିଆ ଝଡ଼ରେ ଛପର ଖଣ୍ଡକ ଉଡିଗଲା । ଭାରି ବ୍ୟସ୍ତ ଓ ବିବ୍ରତ ଲାଗିଲା । ରାଗ ବି ଲାଗିଲା । ଚିନ୍ତା କଲି ଟାଇଲ ଭାଙ୍ଗି କୋଠା ଘର କରିବି । ଜି.ପି.ଏଫ୍ ରୁ କିଛି ଲୋନ୍ କରି ଘର ତିଆରି କରିବାର ବନ୍ଦୋବସ୍ତ କଲି । ଆଗରୁ ଯେଉଁ ପୁରୁଣା ମାଟି କାନ୍ଥ ଥିଲା ତାକୁ ଭାଙ୍ଗିବା ମୋ ପକ୍ଷରେ ବହୁତ କଠିନ ଓ ବ୍ୟୟ ବହୁଳ ହେଲା । ତିରିଶ ଇଞ୍ଚିଆ ମାଟି କାନ୍ଥର ଏଇ ଧୂଳିପୂର୍ଣ୍ଣ ଘରେ ସିମେଣ୍ଟ ଲଗା ଚଟାଣରେ ଚିତ୍ତଭାଇ ଆସି ବସିଯାଆନ୍ତି । ମୁଁ ଭାରି ଅପ୍ରସ୍ତୁତ ହୋଇପଡ଼େ । ସିମେଣ୍ଟ ବାଲି ପ୍ରତି ତାଙ୍କର ଖାତିର ନଥାଏ । ସେତେବେଳେ ଚିତ୍ତଭାଇ ଚା ପିଉଥିଲେ । ତଥାପି ଥରଟିଏରୁ ଅଧିକା ପିଅନ୍ତି ନାହିଁ । ଭଜା ଚୂଡ଼ା ଚିତ୍ତଭାଇଙ୍କୁ ଖୁବ୍ ଭଲ ଲାଗେ । ଏ ବାଲି ଗୋଡ଼ି ପୂର୍ଣ୍ଣ ଅରମା ଜାଗାରେ ବସି ମୋ ବାପାଙ୍କ ସହିତ ହସି ହସି କଥା କହି ଚୂଡ଼ାଭଜା ଓ ଚା ପିଉଥିବା ଦୃଶ୍ୟ ଏବେ ବି ମୋ ଆଖିରେ ନାଚି ଯାଉଚି । ମୋ ଆଖି ଛଳ ଛଳ ହୋଇଯାଏ, କି ଉଦାର ଲୋକ, ଜୀବନଟାକୁ ଏ ଯେ କିପରି ବୁଝିଛନ୍ତି ତାହା ମୋତେ ଆଶ୍ଚର୍ଯ୍ୟ କରେ । ଘରତିଆରି ଦେଖନ୍ତି । ମୋ ବ୍ୟସ୍ତତାକୁ ଖାତିର ନ କରି କହନ୍ତି:- 'ମୂଳଦୁଆ ଠିକ୍ ଥିଲେ କିଛି ଅସୁବିଧା ନାହିଁ । ମୂଳଦୁଆ strong ଅଛି ତ ?' ଏବେ ମୁଁ ପରିଣତ ବୟସରେ ମୂଳଦୁଆ କଥା ଭାବି ବସୁଛି । କେତେ ବାସ୍ତବ କଥାଟା ସତେ । ଯାହାର ମୂଳଦୁଆ ଠିକ୍ ସେ ସଂସାରରେ କେବେ ଧୋକା ଖାଇବନି । ସେଇ ଶବ୍ଦଟିକୁ ପାଥେୟ କରି, ମୋ ଜୀବନରେ ତାକୁ ପ୍ରୟୋଗ କରିଛି । ଝିଅଟିକୁ ବି.ଏ ପଢ଼ାଇ ଗୋଟିଏ ପରିବାରରେ ବିଭା ଦେଇଛି । ପୁଅଟି ଯେତେବେଳେ ଚିତ୍ତଭାଇଙ୍କ ସହ ରାସ୍ତାରେ ଯାଉଥାଏ, ମୁଁ ଝରକା ବାଟେ ଲୁଚି ଲୁଚି ଚାହେଁ, ଜଣେ ବଡ଼ ଧୋତି ପିନ୍ଧା ଲୋକଙ୍କ ସହ ଛୋଟିଆ ପିଲା ଖୋଲାମନରେ ହସି ହସି ଚିତ୍ତଭାଇ ଚିତ୍ତଭାଇ କହି କ'ଣ ସବୁ ପୁରୁଖା ଲୋକଙ୍କ ପରି ଗପିଯାଏ । ଚିତ୍ତଭାଇ ମଧ୍ୟ ଜୋରରେ ମୁଣ୍ଡ ହଲାଉଥାନ୍ତି । ଏ ସବୁ ଦେଖି ମୋତେ ହସଲାଗେ । ତାଙ୍କରି ଆଶୀର୍ବାଦ, ସେ ଅଳ୍ପଦିନ ହେବ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଇତିହାସ ଅଧ୍ୟାପକ ଭାବରେ ଯୋଗ ଦେଇଛି । ଅଳ୍ପ ଦିନରେ ପିଲାଙ୍କର ଅତି ପ୍ରିୟ ଅଧ୍ୟାପକ ହୋଇପାରିଛି । ପିଲାଙ୍କ ସହ ମିଳାମିଶା ଓ କଥାବାର୍ତ୍ତାରୁ ମୁଁ ଠଉରେଇ ନେଉଛି ସତେ ଯେମିତି ପିଲାଙ୍କୁ ଭଲପାଇବାର କଳାଟି

ସେ ତାଙ୍କଠାରୁ ହିଁ ଶିଖି ନେଇଥିଲା । ଯାହା ସେ ସଦା ବେଳେ କହନ୍ତି-ସମସ୍ତଙ୍କୁ ଆପଣାର କଲେ ପର କିଏ ? ଆଉ ଦିନର କଥା । ମୁଁ ଚିତ୍ତଭାଇଙ୍କ ପାଇଁ ପିଠା କରୁଥାଏ । ଲାଇନ୍ ଚାଲିଗଲା, ଚୁଲିରୁ କାଠ ବି ସରିଗଲା । କିନ୍ତୁ କାଗଜ ଜଳେଇ କାମ ଚଳେଇ ନେବାକୁ ବସିବାକୁ ଭାବିଲା ବେଳେ ମେଞ୍ଚାଏ କାଗଜ ଭିତରେ ଗୋଟିଏ Passport size ଟାୟ,କୋଟ ପିନ୍ଧା ଫଟୋ ପାଇଲି । ମୁଁ ଥରେ ଫଟୋକୁ ଚାହିଁ ଆଉ ଥରେ ଭାଇଙ୍କୁ ଚାହୁଁଥାଏ । passport size ଫଟୋରେ କି ବଳିଷ୍ଠ ଚେହେରା ଥିଲା ସତେ, ମୁଁ ଭାଇଙ୍କୁ ପଚାରିଲି, ଏ ଫଟୋଟି କେବେ ଉଠାଇଥିଲେ ? ସେ କହିଲେ, ଏଟା ବିଦେଶ ଯିବା ବେଳର ଫଟୋ ।

କଟକରେ ଥିଲା ବେଳେ ସେ ତ ପ୍ରତି ରବିବାର ମାତୃଭବନ Class ପାଇଁ ଯାନ୍ତି । ତା'ଛଡ଼ା ସାଲେପୁର ପାଖରେ ଥିବା ଗୋପୀନାଥପୁର ଇଣ୍ଟିଗ୍ରାଲ୍ ସ୍କୁଲକୁ ମଧ ବେଳେ ବେଳେ ଯାନ୍ତି । ମୁଁ ପଚାରେ ଚିତ୍ତଭାଇ ସେ ଗାଁକୁ ଯିବାକୁ ତ ଦିନ ଭିତରେ ଗୋଟିଏ ବସ । ଆପଣ ଯାନ୍ତି କିମିତି ? ସେ କହନ୍ତି କାହିଁ ସାଇକେଲ ! ଭୋର ୪ଟାରେ ଉଠି ସାଇକେଲରେ ଗାଁ ରାସ୍ତାରେ ଗଲାବେଳେ ମୋତେ ଭାରି ଭଲ ଲାଗେ । କି ଆନନ୍ଦ ସତେ ?

ଏମିତି ଥରେ ଚିତ୍ତଭାଇ ଚୀନ୍‌ରୁ ଫେରିଥାନ୍ତି । ଚୀନ ଦେଶ ବିଷୟରେ ବହୁତ କଥା ପିଲାଙ୍କ ଆଗରେ କହିଲେ । ଚୀନ ଦେଶର ରାସ୍ତା କୁଆଡ଼େ ରାତି ୪ଟାରୁ ପିଚକାରି ପାଣିରେ ସଫା କରି ଦିଆଯାଏ । ସକାଳ ହେଲା କ୍ଷଣି ଯାନବାହନ, ଲୋକବାକ ଯିବା ଆସିବା କରନ୍ତି, ଆମ ଦେଶରେ ସେସବୁ ଓଲଟା, ରାତିରେ କାହାଘରର ଅଳିଆ ଥିବ ସେ ତାକୁ ସାଇତି ରଖିଥିବ ଓ ସକାଳୁ ରାସ୍ତାରେ ପକାଇ ଦେଉଥିବ । ଚିତ୍ତଭାଇ କହନ୍ତି ଚୀନ ଦେଶରେ ଜଣେ ଲୋକର ଦୁଇହଳ ପୋଷାକ ଓ ଦୁଇହଳ ଜୋତା । ଆମ ଦେଶରେ ତ ସବୁ ଓଲଟା ବାବୁଙ୍କର ରୋଜଗାର ନଥାଇ ଦଶହଳ ପୋଷାକ ଯୋତା ଆଣନ୍ତି କେଉଁଠୁ । ତାହା ଏକ ପ୍ରଶ୍ନବାଚୀ । ଚାଇନିଜ୍‌ଙ୍କ ପରି ଏମାନଙ୍କର long living ନାହିଁ । ପାଣି କଖାରୁ ଶିଝେଇ ତିନି ପାଗ ଦେଇ ତିଆରି ହୋଇଥିବା ଏକ ସୁସ୍ୱାଦୁ ମିଠାଇ ସେ ଚୀନରୁ ପିଲାଙ୍କ ପାଇଁ ଆଣିଥିଲେ । ଭାରି ସୁଆଦିଆ ଲାଗୁଥାଏ । ସେ ଦେଶର ଚକଲେଟ୍ ବି ଆମ ଦେଶ ଚକଲେଟ୍ ଠାରୁ ଫରକ, ଭାରି ସୁଆଦିଆ । ମୋ ଝିଅତ ତାକୁ ରଖି ଟିକିଏ ଟିକିଏ ଖାଉଥାଏ । କାଳେ ସରିଯିବ ଚିତ୍ତଭାଇଙ୍କ ଠାରୁ ସବୁ ଶୁଣି ମୁଁ ଥରେ କହିଲି- ଚିତ୍ତଭାଇ, ଚୀନ୍ ଯୋଉ ଛକରେ ଅନଶନ ରତ ୧୦ହଜାର ଛାତ୍ରଙ୍କୁ ଚୀନ ସରକାର ଗୁଳି କରି ମାରିଦେଲେ ବଡ଼ ଅନ୍ୟାୟ କଲେ । ଚିତ୍ତଭାଇ ସଙ୍ଗେ ସଙ୍ଗେ କହିଉଠିଲେ- ''କାହିଁ

ତୁମ ଦେଶରେ ଯେଉଁ ବଧୂହତ୍ୟା, ଶିଶୁହତ୍ୟା ଅନ୍ୟାନ୍ୟ ଲୁଚାଛପା ହତ୍ୟା ହେଉଛି ତାଠୁ ତ ଏ ବେଶୀ ନୁହେଁ। ସେମାନେତ ଗୋଟିଏ ମହତ ଉଦ୍ଦେଶ୍ୟ ନେଇ ଜୀବନ ବିସର୍ଜନ କଲେ। ଆମ ଦେଶ ଭଳି କୁତ୍ସିତ କାର୍ଯ୍ୟ ପାଇଁ ନୁହେଁ ତ। ତା'ପରେ ମୁଁ ଠିକ୍ ଠାକ୍ ସବୁ ବୁଝିଗଲି। ସତରେ ଆମ ଖବର କାଗଜ ପୃଷ୍ଠା ଖୋଲିଲେ ଯେଉଁ ଅପମୃତ୍ୟୁ ସବୁ ବାହାରେ ପଢ଼ିଲେ ମୁଣ୍ଡ ବିନ୍ଧିଉଠେ। ଜୀବନକୁ ନେଇ ଲୋକ କି ଖେଳ ଖେଳୁ ନାହାଁନ୍ତି। ଟିକେ ଟିକେ କଥାରେ ମରାହଣା, ଧର୍ଯ୍ୟର 'ଧ' ଅକ୍ଷର କାହାଠି ନାହିଁ। ଦେଶ ଚାଲିବ ବା କିମିତି, ମଣିଷ ବଞ୍ଚିବ କିଭଳି, ମାନବିକ ଗୁଣ ଗୁଡ଼ିକର ପୁରାମାତ୍ରାରେ ବିଲୋପ ଘଟିଛି। କ'ଣ ଏ ସଂସାରୁ କିଏ ନେଇଯାଉଛି ? ଆଜି ମଲେ କାଲିକି ଦି'ଦିନ, ତଥାପି ମଣିଷ ପିଶାଚ ପାଲଟି ଯାଉଛନ୍ତି। ସ୍ୱାର୍ଥକୁ ଜାବୁଡ଼ି ଧରନ୍ତି। ସେ ଦୃଷ୍ଟିରୁ ନିଃସ୍ୱାର୍ଥପର ମଣିଷଟିଏ- ଶ୍ରୀଯୁକ୍ତ ଚିତ୍ତରଂଜନ ଦାସ, ବିଦେଶ ବୁଲି ବିଦେଶୀ ନୁହଁନ୍ତି, ପୃଥିବୀର ଥୋଡାଏ ଜାଗା ବୁଲି ବୁଲି, କେତେ ଭାଷା ଜାଣିଛନ୍ତି। ଏଇଠି ମନେ ପଡ଼ି ଯାଉଛି। 'ଶୀଳାତୀର୍ଥ' ପଢ଼ିଲା ବେଳର କଥା ଯେତେବେଳେ ଚିତ୍ତଭାଇ ସ୍ୱଇଜରଲ୍ୟାଣ୍ଡର ଭାଷା କହନ୍ତି ଗୋଟିଏ ଛୋଟ ପୁଅ ତା' ମା'କୁ କହିଲା 'ଚିତ୍ତଭାଇ କ'ଣ ସ୍ୱେଡିଶ୍ ତା' ମା' କହିଲେ କାହିଁକି ? ନା ସେ ତ ସ୍ୱଇଜରଲ୍ୟାଣ୍ଡ ଭାଷା ଭଲ କହୁଛନ୍ତି। ବହୁ ବିଦେଶୀ ଭାଷାରେ ତାଙ୍କର ଦକ୍ଷତା ଥିଲା। ଯେଉଁ ଦେଶକୁ ଯାଉଥିଲେ ସେଇ ଭାଷାରେ କଥା ହେଉଥିଲେ। ଅସାଧାରଣ ଧୀଶକ୍ତି ତାଙ୍କର। ପରକୁ ଆପଣାର କରିବାର କଳା ସତେ ଯେପରି ତାଙ୍କରି ପାଖରେ ହିଁ ଥିଲା। ବିଦେଶ କ'ଣ ? ଚିତ୍ତଭାଇଙ୍କର 'ଗଂଜାମ ମାଳରେ ସାତ ଦିନ' ବହିଟି ପଢ଼ିଲେ ଜାଣିପାରିବେ ମାଳ ଅଚଂଳରେ ତାଙ୍କର ଲୋକପ୍ରିୟତା। ସେ ଉକ୍ତ ବହିରେ ଆଦିବାସୀ ମାନଙ୍କର ଆତିଥ୍ୟ ବିଷୟରେ ବର୍ଣ୍ଣନା କରିଛନ୍ତି। ଥରେ ପାହାଡ଼ ଉପରେ ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଦେଖୁ ଦେଖୁ ବାଟ ହରାଇ ବସିଲେ। ଅନ୍ଧାର ମାଡି ଆସିଲା। ଜଙ୍ଗଲ ଭିତରେ ଯିବେ କୁଆଡ଼େ ? ବାଧ୍ୟ ହୋଇ ଗାଁ ଖୋଜିଲେ। ଚାଲି ଚାଲି ନିକଟରେ ଥିବା ଏକ ଆଦିବାସୀ ଗାଁରେ ପହଁଚିଲେ। ଗାଁର ପ୍ରାୟ ସବୁଲୋକ Christian, କିନ୍ତୁ ତାଙ୍କର ଆଚାର ବ୍ୟବହାର ହିନ୍ଦୁମାନଙ୍କ ପରି ପ୍ରଥମେ ଗୋଡ଼ ଧୋଇବାକୁ ପାଣି ଦେଲେ। ବସିବା ପାଇଁ ପିଢ଼ା ଓ ରୁଟି ଅଣ୍ଡା ତରକାରୀ ତାଙ୍କର ଆତିଥ୍ୟରେ ସେଦିନ ଚିତ୍ତଭାଇ ପ୍ରୀତ ହୋଇଗଲେ।

ଚିତ୍ତଭାଇ ପୁଣି ଯାଆନ୍ତି ଫିନ୍‌ଲ୍ୟାଣ୍ଡ, ସଠିକ୍ ମସିହା ମନେ ନାହିଁ, ସେଇଟା କୁଆଡ଼େ ଅତି ଥଣ୍ଡା ଦେଶ। ପିଲାକୁ କହିଲେ, ସେଠି ସିଂଗାଣି ବରଫ ହୋଇଯାଏ। ପାଣି ପାଇଁ ବରଫକୁ ତରଳାଇବାକୁ ପଡ଼େ। ଫିନ୍‌ଲ୍ୟାଣ୍ଡ ଚିତ୍ତଭାଇଙ୍କର ଦ୍ୱିତୀୟ ଜନ୍ମ

ଭୂମି ବୋଲି ସେ କହିଥାଆନ୍ତି । ଫିନ୍‌ଲ୍ୟାଣ୍ଡ ଦେଶକୁ ସେ ମନଭରି ଭଲ ପାଉଥାଆନ୍ତି । ସେ ସେଠାରୁ ଆମ ପିଲାଙ୍କ ପାଇଁ କେତୋଟି ଖେଳନା ଆଣିଥିଲେ । ଦେଶ, ବିଦେଶରେ ସେ ଯେଉଁଠି ଥାଆନ୍ତୁ ନା କାହିଁକି, ତାଙ୍କର ସ୍ନେହର ପିଲା ଓ ସାଥୀମାନଙ୍କୁ ସେ ବରାବର ମନେ ରଖିଥାଆନ୍ତି । ଅଧିକାଂଶ ମଣିଷ ସଂପର୍କ ରଖିବାକୁ ଚାହାଁନ୍ତି ନାହିଁ, କିନ୍ତୁ ଚିତ୍ତଭାଇ ସ୍ନେହ କାଙ୍ଗାଳ । ସେ ଦେଶରୁ କିଛି ଖେଳଣା ପିଲାଙ୍କ ପାଇଁ ଆଣିଥିଲେ । ଚିତ୍ତଭାଇଙ୍କ ସହିତ ଅଗ୍ରଗାମୀ ନିର୍ଦ୍ଦେଶକ ଶ୍ରୀଯୁକ୍ତ ଅଚ୍ୟୁତ ଦାସ ଆମ ଘରେ ଏକାଠି ଆତିଥ୍ୟ ଗ୍ରହଣ କରିବାର ସୁଯୋଗ ଆମକୁ ମିଳିଛି । ଅଚ୍ୟୁତ ଦାସ ମୋ ସ୍ୱାମୀଙ୍କର ଏଯାବତ୍ ରହି ଆସିଥିବା ବାଲ୍ୟ ସାଥୀ ଓ ମୋ ପିଲାଙ୍କର ପରିଚିତ ଦାଦା ଅଟନ୍ତି । ଶ୍ରୀ ଦାସ ଆମ ପରିବାରର ଲୋକ, ଏଣୁ ସେ ଆମ ସହିତ ତାଙ୍କର ଆନ୍ତରିକତା ଓ ସୁସମ୍ପର୍କ ବଜାୟ ରଖିଛନ୍ତି । ଆଜକୁ ବୋଧହୁଏ ୨୨ ବର୍ଷ ତଳେ ସେ ଦିନେ ଏକ ପ୍ରସ୍ତାବ ନେଇ କାଶୀପୁରରୁ ଆସିଥିଲେ ଯେ ଚିତ୍ତଭାଇଙ୍କ ସହ ପରିଚିତ ହୋଇ ତାଙ୍କୁ ତାଙ୍କ ଅନୁଷ୍ଠାନର ସଭାପତି କରିବେ । ମୋ ସ୍ୱାମୀ ତାଙ୍କ ସହିତ କଟକର Medical campus କୁ ଯାଇ ଚିତ୍ତଭାଇଙ୍କ ସହିତ ଅଚ୍ୟୁତ ବାବୁଙ୍କୁ ପରିଚିତ କରାଇ ଦେଲେ, ତାଙ୍କ ଅନୁଷ୍ଠାନ ବିଷୟରେ ବିବରଣୀ ଦେଇ ସେ କାଶୀପୁର ଅନୁଷ୍ଠାନର ସଭାପତି ହେବାପାଇଁ ଅନୁରୋଧ କରିଥିଲେ । ଚିତ୍ତଭାଇ ଅଚ୍ୟୁତବାବୁଙ୍କ ଠାରୁ ସବୁ ଶୁଣି ସଭାପତି ହେବା ପାଇଁ ରାଜି ହେଲେ । ସେଦିନ ଠାରୁ ଚିତ୍ତଭାଇ ଓ ଅଚ୍ୟୁତା ବାବୁ ଆମ ଘରେ ଅନେକଥର ଭେଟ ହୋଇଛନ୍ତି ।

ଚିତ୍ତଭାଇଙ୍କର ପ୍ରାୟ ଲିଖିତ ସବୁ ବହି ଆମ ଘରେ ଅଛି । ଆମେ ତାଙ୍କର ପ୍ରିୟ ପାଠକଙ୍କ ମଧ୍ୟରୁ ଅନ୍ୟତମ ଅଟୁ । ଚିତ୍ତଭାଇଙ୍କ ଲେଖା ସହ ମୁଁ College ଜୀବନରୁ ପରିଚିତ । ତାଙ୍କର ଜୀବନ ବିଦ୍ୟାଳୟ, ଶାଳାତୀର୍ଥ, ଜଙ୍ଗଲ ଚିଠି, ଡେନମାର୍କ ଚିଠି, ସାଗରପଥେ ମୋତେ ଭଲ ଲାଗେ । ତାଙ୍କର ଅନୁବାଦ ବହି ଗୁଡ଼ିକ ମୁଁ ପ୍ରାୟତଃ ପଢ଼ିଛି । ତାଙ୍କର ଅନ୍ୟତମ ବନ୍ଧୁ କଟକର ସ୍ୱର୍ଗତ ପ୍ରଫୁଲ୍ଲ ଦାସ ଆମ ଘରକୁ ପ୍ରାୟ ଆସନ୍ତି ଓ ଚିତ୍ତଭାଇଙ୍କ ବିଷୟରେ ଆମକୁ ଏତେ କଥା କହନ୍ତି ଯେ ତାହା ଶୁଣି ଆମ ମନ ଖୁସୀରେ ଭରିଯାଏ । ତାଙ୍କ ବ୍ୟତୀତ ଓଡ଼ିଶାର ପାଠାଗାର, ଆନ୍ଦୋଳନର ଅନ୍ୟତମ ମହାନ ପୁରୁଷ ଦାଶରଥି ପଟ୍ଟନାୟକ ଆମ ଘରକୁ ବରାବର ଆସୁଥିଲେ । ସେ ମଧ୍ୟ ଚିତ୍ତଭାଇଙ୍କ ବିଷୟରେ ତାଙ୍କର ସମ୍ପର୍କ ବିଷୟରେ କହିଥାନ୍ତି । ଏମାନଙ୍କ ବ୍ୟତୀତ ଚିତ୍ତଭାଇଙ୍କ ଜଣେ ଶୁଭେଚ୍ଛୁ ସଂଜୀବ ପଣ୍ଡା ନାମକ ଜଣେ ଉତ୍ସାହୀ ସମାଜସେବୀ ତଥା ଶ୍ରୀମା ଶ୍ରୀଅରବିନ୍ଦଙ୍କ ଦର୍ଶନରେ ପ୍ରଗାଢ଼

ବିଶ୍ୱାସ ରଖୁଥିବା ଯୁବ ବନ୍ଧୁ ଅଛନ୍ତି । ସେ ମୋ ସ୍ୱାମୀଙ୍କ ଅନୁଜ ପ୍ରତିମ ଅଟନ୍ତି । ସଂଜୀବଙ୍କ ସ୍ତ୍ରୀ ଅତସୀ ରାଉତ (ପଣ୍ଡା) ଏକଦା ବେତନଟୀ ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ବିଦ୍ୟାଳୟର ଶିକ୍ଷୟିତ୍ରୀ ଥିଲେ । ସେ ଆଇନ୍ ବିଦ୍ୟାରେ ସ୍ନାତକ ହେବା ପରେ କଟକରେ ଆମ ଘରେ ରହି, ଏଠିକାର ଉଚ୍ଚ ନ୍ୟାୟାଳୟରେ ଓକିଲାତି ବ୍ୟବସାୟ ଆରମ୍ଭ କଲେ । ସେ ଚିତ୍ତଭାଇଙ୍କର ଜଣେ ଅନୁଗାମୀ । ଚିତ୍ତଭାଇ ଆମ ଘରକୁ ଆସିଲେ ଅତସୀ ତାଙ୍କୁ ଆତିଥ୍ୟ ଦେବାରେ ଆଗ୍ରହ ପ୍ରକାଶ କରୁଥିଲେ । ସେ ବର୍ତ୍ତମାନ କାମାକ୍ଷାନଗର ଅଦାଲତରେ ଆଇନ୍ ବ୍ୟବସାୟ କରି ଭଲ ନାଁ କମାଇଛି ।

ଚିତ୍ତଭାଇଙ୍କୁ କେଉଁ ନିକିତିରେ ତଉଲି ହେବ ? ସେ ଏକାଧାରରେ ଶିକ୍ଷାବିତ୍, ସାହିତ୍ୟିକ, ସମାଲୋଚକ, ଅନୁବାଦକ, ତଥା ବହୁଭାଷାବିତ୍ ପଣ୍ଡିତ ଅଟନ୍ତି । ତାଙ୍କ ପରି ଜଣେ ସର୍ବମାନ୍ୟ ବିଦ୍ୱାନ ବ୍ୟକ୍ତି ବର୍ତ୍ତମାନର ଓଡ଼ିଶାର ଓ ଭାରତରେ ଖୋଜିପାଇବା ସମ୍ଭବ ନୁହେଁ । କିନ୍ତୁ ମୁଁ ବ୍ୟକ୍ତିଗତ ଭାବରେ ଏ ସବୁର କୋଳାହଳ ଠାରୁ ଅନେକ ଦୂରରେ ଥାଇ ନିଜକୁ ଦୂରେଇ ରଖିଛି ଓ ଚିତ୍ତଭାଇଙ୍କୁ ଜଣେ ମାନବବାଦୀ, ଦୁଃଖୀ ତଥା ନିଃସହାୟ ମଣିଷ ମାନଙ୍କର ସାଥୀ ରୂପେ ଗ୍ରହଣ କରିଛି । ସେ ଆମ ସମାଜରେ ଥିବା ନାନାଦି ପ୍ରଥା ଯଥା ଉଚ୍ଚ ନୀଚ ଭେଦାଭେଦଭାବକୁ ପସନ୍ଦ କରନ୍ତି ନାହିଁ । ସମାଜର ସବାତଳେ ରହିଯାଇଥିବା ମଣିଷମାନେ ଦିନେ ଏସବୁକୁ ଭାଙ୍ଗି ଚୁରମାର୍ କରିଦେବେ, ଏପରି ଏକ ବେଳ ନିଶ୍ଚୟ ଆସିବ, ଏକଥା ସେ ଅନେକ ଥର କହିଥିବାର ମୁଁ ଶୁଣିଛି, ଏହାର ଉଦାହରଣ ହେଉଛି ତାଙ୍କ ଦ୍ୱାରା ଲିଖିତ ପ୍ରବନ୍ଧ "ନିରବ ବିପ୍ଳବ" ।

ଚିତ୍ତଭାଇଙ୍କୁ ଈଶ୍ୱର ଶତାୟୁ କରନ୍ତୁ, ଏହାହିଁ ମୋର ପ୍ରାର୍ଥନା ।

ହରପ୍ରିୟା ବେହେରା, ପ୍ରଧାନ ଶିକ୍ଷୟିତ୍ରୀ,
*ପ୍ରାକ୍ଟିସିଂ ବିଦ୍ୟାଳୟ, ଶେଖ ବଜାର*

# ଚିହ୍ନା ମାଟିର ବାସ୍ନା (୩)

ବହୁ ଘଟଣା ଭୁଲି ହୋଇଗଲାଣି । ତଥାପି ସେଗୁଡ଼ିକ ମଧ୍ୟରେ ନିହିତ ଥିବା ଅନ୍ତଃସ୍ୱର ଏବେ ମଧ୍ୟ ମନେପଡ଼େ । ବ୍ରହ୍ମପୁରରେ ଥିବା ସମୟରେ ବହୁବାର ଚିତ୍ତଭାଇ ସ୍କୁଲକୁ ଆସିଛନ୍ତି । ଆଲୋଚନା ହୋଇଛି ଅନେକ । ସେ ଦୃଷ୍ଟିରୁ ସେଠିକାର ଭାଇଅପାମାନେ ଉଦାର । ପାଠଚକ୍ର ଆଲୋଚନାରେ ଅଧିକାଂଶ

ଯୋଗଦାନ କରନ୍ତି । ଏପରିକି ସାମୂହିକ ପାଠଚକ୍ରକୁ ଆସୁ ନଥିବା ଲୋକେ ମଧ୍ୟ ଏଇ ସମୟରେ ଆସନ୍ତି । ଯେଉଁ ବହି ପଢ଼ାଯାଉଥାଏ ତାହା ଧରି ଶିକ୍ଷାର୍ଥୀ ପରି ଦିଶନ୍ତି ।

ଥରେ ଆଶିଷଭାଇ ମତେ କହିଲେ, "ଚିତ୍ତଭାଇ ଆପଣଙ୍କ ଘରକୁ ଯିବାକୁ ଚାହୁଁଛନ୍ତି ।" ଆମର ଯାହା ସାକ୍ଷାତ ହୁଏ ସେସବୁ ସ୍କୁଲରେ । ଘରକୁ ଯିବାକୁ ଚାହୁଁଛନ୍ତି ଶୁଣି ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ଖୁସି ମଧ୍ୟ ଲାଗିଲା । ଏପରି ଅନାହୂତ ଭାବରେ ତାଙ୍କୁ ମୁଁ କେବେ ଅଶା କରି ନ ଥିଲି । ସେଦିନ ଅପରାହ୍ନ ଚାରିଟା ବେଳେ ସିଏ ଆମ ବସା ଘରକୁ ଆସିଲେ । ସାଙ୍ଗରେ ଆଶିଷଭାଇ ଓ ବରେନ୍ଦ୍ରଭାଇ ଥିଲେ । ଆଉ ବୋଧହୁଏ ଜଣେ କିଏ ଥିଲେ, ମନେ ପଡୁନାହିଁ । ଆମ ଘରେ ସିଏ ପ୍ରାୟ ଅଧଘଣ୍ଟାଏ ରହିଲେ । ଆମେ ସବୁ ପାଖରେ ବସିଥାଉ । ମୁଁ ଅପେକ୍ଷା କରିଥାଏ ସେ କିଛି କଥାବାର୍ତ୍ତା ଆରମ୍ଭ କରିବେ ଏବଂ ଆଳାପରେ ସମସ୍ତେ ଅଂଶଗ୍ରହଣ କରିବୁ । ସାମାନ୍ୟ ଜଳଯୋଗ ମଧ୍ୟ ଗ୍ରହଣ କରିନଥିଲେ । ଆରମ୍ଭରୁ ଶେଷଯାଏ ଆମ ପାଖରେ ମୁଣ୍ଡ ତଳକୁ ପୋତି ନୀରବରେ ବସି ରହିଥିଲେ । ଉଁ କି ଚୁଁ କରୁନଥିଲେ । ପରିବେଶ ବେଶ୍ ଭାବଗମ୍ଭୀର ଥିଲା । ମତେ ମାଡ଼ି ମାଡ଼ି ପଡୁଥାଏ । ଭାବୁଥାଏ ବୋଧହୁଏ କୌଣସି କାରଣବଶତଃ ସେ ରାଗିଛନ୍ତି । ମାତ୍ର ତାହା ମୋର ଭୁଲ୍ ଧାରଣା ଥିଲା । ତାଙ୍କ ମୁହଁରେ କ୍ରୋଧର ଲେଶ ମାତ୍ର ଚିହ୍ନ ନଥିଲା । ସିଏ ମଗ୍ନ ରହିଥିଲେ ଏବଂ ଗୋଟିଏ ଦୁଇଟି ଖଣ୍ଡବାକ୍ୟ ଏବଂ ଦୁଇ ତିନୋଟି 'ହଁ' କିମ୍ବା 'ନା' ବ୍ୟତୀତ ଆଉ ଭାଷାରେ କିଛି ନୀରବତା ଭଙ୍ଗ କରି ପଦେ ଅଧେ କହୁଥିଲେ । ଶେଷକୁ ସେ ମଧ୍ୟ ଚୁପ୍ ହୋଇଗଲେ । ବିଦାୟ ନେବା ସମୟରେ 'ଏଥର ଯିବା' କହି ପ୍ରଥମେ ନମସ୍କାର କରି ବାହାରକୁ ଆସିଲେ । ଆମ୍ଭେମାନେ ତାଙ୍କର ଅନୁସରଣ କଲୁ ।

ବର୍ଷକୁ ଦୁଇଟି ପାଞ୍ଚଦିନିଆ ସ୍ୱାଧ୍ୟାୟ ଶିବିରରେ ସେତେବେଳେ ସିଏ ଯୋଗ ଦେଉଥିଲେ । ଏହି ଶିବିରରେ ଶ୍ରୀଅରବିନ୍ଦଙ୍କର 'ଯୋଗ ସମନ୍ୱୟ' ଗ୍ରନ୍ଥର ପ୍ରଥମ ପାଞ୍ଚୋଟି ଅଧ୍ୟାୟ ପାଠ ଏବଂ ଆଲୋଚନା ହୁଏ । କାମ କିଛି ନ ଥାଏ । ପାଠଚକ୍ରର କର୍ମୀମାନେ ବିଶେଷତଃ ଏଥିରେ ଯୋଗ ଦିଅନ୍ତି । ସେଥର ଗଞ୍ଜାମ ଜିଲ୍ଲାର ଚନ୍ଦ୍ରଗିରି ଠାରେ ଶିବିର ଚାଲିଥାଏ । ସେଠାକାର ପାଠଚକ୍ରର ଉଦ୍ୟୋକ୍ତା ନରହରି ପାଣିଗ୍ରାହୀ ବଡ଼ ଉତ୍ସାହରେ ଶିବିରର ଆୟୋଜନ କରିଥାଆନ୍ତି । ପ୍ରାୟ ପଚାଶ ଶିବିରାର୍ଥୀ ଯୋଗ ଦେଇଥାନ୍ତି । ସେଥର ବ୍ରହ୍ମପୁରରୁ ଆମେ ତିନି ଚାରି ଜଣ ଯାଇଥାଉ । ଗଞ୍ଜାମ ଜିଲ୍ଲାର ଜଣେ ପୁରାତନ ମାତୃକର୍ମୀ ଯମୁନାଅପା ମଧ୍ୟ ଶିବିରରେ ଥିଲେ । ଦିନବେଳା ବହିପଢ଼ା ଏବଂ ଆଲୋଚନା ହୁଏ । ସଂଧ୍ୟାରେ ଥାଏ ମୁକ୍ତ ଆଲୋଚନା । ଏତିକି

ବେଳେ ଶିବିରାର୍ଥୀମାନେ ପଢ଼ା ହୋଇଥିବା ବିଷୟ ସମ୍ପର୍କରେ କହିଥାଆନ୍ତି। ଆପଣାର ବକ୍ତବ୍ୟରେ ନିଜ କଥା ମଧ ଶୁଣିବାପାଇଁ ମିଳେ। ସେତେବେଳେ ଚିତ୍ତଭାଇ ତୁଣ୍ଡ ଖୋଲନ୍ତି ନାହିଁ। ଏଣୁ ନିର୍ଭୟରେ ଜଣେ କହିବାରେ ସୁବିଧା ହୁଏ। କୋଉ କୋଣରେ ମୁଣ୍ଡପୋତି ସିଏ ବସିଥାଆନ୍ତି ପୂରା ଅଧିବେଶନ ଶେଷଯାଏ। ସମସ୍ତଙ୍କର ଦୃଷ୍ଟି ଅନ୍ତରାଳରେ ରହି ସେ ସବୁ ଶୁଣୁଥାଆନ୍ତି। ପରଦିନ ଆଲୋଚନା ସମୟରେ ପ୍ରାସଙ୍ଗିକ କଥା କିଏ  କ'ଣ କହିଲା କୁହନ୍ତି। ସେଦିନ ସନ୍ଧ୍ୟାରେ ଯମୁନାଅପା ନିଃସଙ୍କୋଚରେ କହୁଥାଆନ୍ତି। ସିଏ ତ ବିଭିନ୍ନ ପାଠଚକ୍ରରେ କହନ୍ତି। ଚିରାଚରିତ ରୀତିରେ କହିବା ତାଙ୍କର ଅଭ୍ୟାସ। ସେଦିନ କହୁ କହୁ ଜପ, ଧ୍ୟାନ, ଏହିପରି କଅଣ କଅଣ ଏକ, ଦୁଇ, ତିନି କ୍ରମରେ କହିଗଲେ। ପରଦିନ ସକାଳବେଳା। ଅଧ୍ୟୟନ ଏବଂ ଆଲୋଚନା ଚାଲିଥାଏ। କଅଣ କଥା ପଡୁ ପଡୁ ପୂର୍ବଦିନ ଯମୁନାଅପା କହିଥିବା କଥା ଆଲୋଚନା ପରିସରକୁ ଆସିଲା। ତା'ପରେ ଆଉ ଅପାକୁ କିଛି କହିବାପାଇଁ ପଡ଼ି ନଥିଲା। ସବୁ ଏକତରଫା ହୋଇ ଆସୁଥିଲା। ଦେଖିବ ଅପାଙ୍କ ଅବସ୍ଥା। ପିଲାଙ୍କ ଭଳି କାନ୍ଦି ଉଠିଲେ। ପଚାଶ ବର୍ଷର ଜଣେ ଲୋକ ସମସ୍ତଙ୍କ ମେଳରେ କାନ୍ଦିବା ଏକ ବିରଳ ଘଟଣା। ଆମକୁ ସବୁ ମାଡ଼ି ମାଡ଼ି ପଡୁଥାଏ। ତରୁଣମାନେ ସିନା ସହିଯିବେ ! ଆମେ ଭାବିଲୁ ଅପା ଆଉ ଶିବିରରେ ରହିବେ ନାହିଁ। ପରଦିନ ସକାଳେ ଅପାଙ୍କର ଦେଖାଦର୍ଶନ ମିଳିଲା ନାହିଁ। ଆମେ ନିଶ୍ଚିତ ହେଲୁ। ତା' ପରଦିନ ସକାଳ ବେଳା ଆଲୋଚନା ଅଧାରେ ଯମୁନାଅପାଙ୍କର ଆକସ୍ମିକ ଆବିର୍ଭାବ ଆମ ସମସ୍ତଙ୍କୁ ଚକିତ କରିଦେଲା। ଅପା ଚୁପ୍ ଚାପ୍ ବସି ପଡ଼ିଲେ। ପରେ କାରଣ ପଚାରନ୍ତେ ଅପା କହିଲେ, "ମୁଁ ଯାଇଥିଲି ଜରୁରୀ କାମରେ, ଆଗରୁ ଯିବାର ଥିଲା।" ଆଉ ଚିତ୍ତଭାଇଙ୍କ କଥା ବିଷୟରେ ପଚାରିବାରୁ ସେ କହିଲେ, "ସେଥିପାଇଁ ଯାଇ ନ ଥିଲି। ମାତ୍ର ସେଇଥିପାଇଁ ଫେରିଆସିଲି। ଚିତ୍ତଭାଇ ମୋର ଆଖି ଖୋଲିଦେଲେ। ମୁଁ କୃତାର୍ଥ ହେଲି। ଅଭିମାନ କରିବି କାହିଁକି ?"

ଥରେ ସିଏ ବ୍ରହ୍ମପୁର ଆସିଥାଆନ୍ତି। ରହୁଥାଆନ୍ତି ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ। ଯେତେବେଳେ ଆସିଲେ ସ୍କୁଲରେ ହିଁ ରହିବାକୁ ପସନ୍ଦ କରନ୍ତି। ଖାଇବା ପାଇଁ କିଏ ହେଲେ ଜଣେ ଆଣି ପହଞ୍ଚାଇ ଦିଅନ୍ତି। ସେଥିରେ ତାଙ୍କର ଖୁସି। ନାହିଁ ଯଦି ଭୋଜିଭାତ ହେବାର ଥାଏ ତେବେ ତ' ମହାଆନନ୍ଦ। ସବୁରି ମେଳରେ ବସି ଖାଇବାରେ ତାଙ୍କର ପରମ ଆଗ୍ରହ। ଅନ୍ୟାନ୍ୟ କେତେଜଣଙ୍କୁ ଦେଖିଛି ଭାଷଣ ଦେବେ ପୂର୍ଣ୍ଣାଙ୍ଗ ଶିକ୍ଷା ଓ ପୂର୍ଣ୍ଣଯୋଗ ବିଷୟରେ, ଭବିଷ୍ୟତ ପୃଥିବୀର କଥା

ଗଳଦ୍‌ଘର୍ମ ହୋଇ କହିବେ । ମାତ୍ର ପତ୍ର ପଢ଼ିଲାବେଳକୁ ଆଉ ମେଳରେ ଧରା ଦେବେ ନାହିଁ । ଅଲଗା ମଣୋହି କରିବେ । ଏଇ ବ୍ୟବସ୍ଥା ବଡ଼ ଦୃଷ୍ଟିକଟୁ ବୋଧ ହୁଏ । ଖାପଛଡ଼ା ଲାଗେ । ୟାଙ୍କ ପାଖରେ କିନ୍ତୁ ବ୍ୟତିକ୍ରମ ଦେଖିଲି । ସେଦିନ ରାତି ପ୍ରାୟ ସାତଟା ବେଳେ ସେ ଟ୍ରେନ୍‌ରେ ଆସି ପହଞ୍ଚିଲେ । ଆମେ ଷ୍ଟେସନ ଯାଇଥିଲୁ । ସ୍କୁଲକୁ ଆମ ସାଥିରେ ଚାଲି ଚାଲି ଆସିଲେ । ମତେ ଆଶିଷ ଭାଇ ଆଗରୁ ଦାୟିତ୍ୱ ଦେଇଥାଆନ୍ତି ଘରୁ ତାଙ୍କ ପାଇଁ ରୁଟି ଡାଲମା ଆଣିବା ପାଇଁ । ବାଟରେ ଆସିଲାବେଳେ ସିଏ ମତେ ଇସାରା ଦେଲେ ଯିବାପାଇଁ । ଚିଉଭାଇ ଶୁଣିଦେଲେ । ସେଦିନ ପଡ଼ିଥାଏ ଚନ୍ଦ୍ରଗ୍ରହଣ । ସେତେବେଳେକୁ ଗ୍ରହଣ ଛାଡ଼ିନଥାଏ । ସିଏ କହିଲେ, ''ମୁଁ ଏବେ କିଛି ଖାଇବି ନାହିଁ ।'' ମୁଁ ଘରୁ ଟିଫିନ୍ କ୍ୟାରିୟରରେ ରୁଟି ଡାଲମା ଆଣି ସ୍କୁଲରେ ପହଞ୍ଚିଲି । ଖାଇବା ପାଇଁ କିଛି ସମୟ ପରେ ଆଶିଷ ଭାଇ ଅନୁରୋଧ କଲେ । ସେ କହିଲେ, ମୁଁ କ'ଣ ଏକୁଟିଆ ଖାଇବି ! ଆପଣମାନେ କେହି ସାଙ୍ଗରେ ବସିବେ ନାହିଁ ? ଖାଦ୍ୟ ଦୁଇ ଜଣଙ୍କ ପାଇଁ ଥିଲା । ବାଧ କରିବାରୁ ମୋତେ ଶେଷକୁ ତାଙ୍କ ସାଙ୍ଗରେ ଖାଇବା ପାଇଁ ପଡ଼ିଲା । ଥାଳି ନାହିଁ କି ଗିନା ନାହିଁ । କେମିତି ଖିଆଯିବ ! ସେଇ ଗୋଟିଏ ବାଟିରେ ଡାଲମା ରହିଲା ଏବଂ ଆମେ ଦୁଇ ଜଣ ରୁଟି ବାହାରେ ରଖି ବୁଡାଇ ଖାଇଲୁ । ମତେ ପ୍ରଥମେ ପ୍ରଥମେ ଭାରି ଅସଜ ଲାଗୁଥିଲା । ଜୀବନରେ କାହାରି ସାଙ୍ଗରେ ଏକା ଥାଳିରେ ପୂର୍ବରୁ ଖାଇ ନଥିଲି । ସେମିତି ଖାଇବାପାଇଁ ମତେ ଘୃଣା ଲାଗୁଥିଲା । ମାତ୍ର ସେଦିନ ସେସବୁ କୁଆଡ଼େ ଗଲା । ଦୁହେଁ ସାଙ୍ଗ ହୋଇଖାଇଲୁ ।

ସେଥର ଟ୍ରେନ୍‌ରେ ବ୍ରହ୍ମପୁର ବାଟ ଦେଇ ତାଙ୍କର କୁଆଡ଼େ ଯିବାର ଥାଏ । ଆଶିଷଭାଇଙ୍କ ପାଖରେ ଏ ଖବର ଥାଏ । ସେଦିନ ପାଠଚକ୍ରରୁ ଆମେ ପାଞ୍ଚ ସାତ ଜଣ ଷ୍ଟେସନକୁ ଦେଖା କରିବାପାଇଁ ଯାଇଥାଉ । ନିର୍ଦ୍ଦିଷ୍ଟ ସମୟରେ ଗାଡ଼ି ପ୍ଲାଟ୍‌ଫର୍ମରେ ପହଞ୍ଚିଲା । ପୂର୍ବରୁ ସେ ଦରଜା ପାଖରେ ଠିଆ ହୋଇଥାଆନ୍ତି । ଆଉ ଅସୁବିଧା ହେଲାନାହିଁ । ଗାଡ଼ି ରହିବା ପରେ ତଳକୁ ଆସିଲେ ଏବଂ ଏଣୁ ତେଣୁ ଦୁଇପଦ କଥାବାର୍ତ୍ତା ହେଲେ । ସ୍ୱଳ୍ପ ସମୟ ରହଣି ମଧ୍ୟରେ ମତେ ହଠାତ୍ ପଚାରିଦେଲେ, ''ଆଉ ପାଠଚକ୍ର କେମିତି ଚାଲୁଚି ?'' ଗତାନୁଗତିକ ରୀତିରେ ହେଉଥିବା ପାଠଚକ୍ର ପ୍ରତି ମୋର ଭିନ୍ନ ଭାବ ଥାଏ । ପଢ଼ାପଢ଼ି ନାହିଁ, ଆଲୋଚନା ନାହିଁ, ଖାଲି ଘଣ୍ଟାଏ ଫୁଲ ଧୂପ ଫଟୋ ପାଖରେ ଦେଇ ବସିଲେ କଅଣ ହେବ ! ହଠାତ୍ ଉତ୍ତରରେ ପାଟିରୁ ବାହାରିପଡ଼ିଲା ''ଓଃ ! ଧୂପ ପାଠଚକ୍ର !'' କହିତ ଦେଇଛି, ଆଉ ଯାଏ କୁଆଡ଼େ ! ତାଙ୍କ ମୁହଁର ଭାବ ବଦଳିଗଲା । ଅତ୍ୟନ୍ତ କଠୋର

ହୋଇଉଠିଲା ମୁଖମୁଦ୍ରା । ମୁଁ ପ୍ରମାଦ ଗଣୁଥାଏ । ଭାବୁଥାଏ କାହିଁକି ଏକଥା କହିଲି । ମୁଁ ତ କହୁ କହୁ ହାଲୁକାଭାବେ ଏହା କହି ଦେଇଛି । ସେ କିନ୍ତୁ ସେପରି ଗ୍ରହଣ କଲେ ନାହିଁ । ଚାଲିଲା ଦୁଇମିନିଟ୍ ପର୍ଯ୍ୟନ୍ତ ଅବିରାମ ବର୍ଷା । କହିଲେ "ଧୂପ ପାଠଚକ୍ର ! ଆପଣ ଘରେ ଧୂପ ଦେଉ ନାହାନ୍ତି ?? ଫୁଲ ଦେଉନାହାନ୍ତି ?? ଧୂପ ପାଠଚକ୍ର କ'ଣ କହୁଛନ୍ତି ?" ଏମିତି ଆଉ ସବୁ କ'ଣ କହିଗଲେ । ଗାଡ଼ି ଛାଡ଼ିବା ପାଇଁ ଗାର୍ଡ ସଙ୍କେତ ଦେଲେ । ଆଉ କିଛି ନ କହି ସେ ଆମଠାରୁ ବିଦାୟ ନେଇ ରେଳଡ଼ବାରେ ଚଢ଼ିଲେ । ଗାଡ଼ି ଧୀରେ ଧୀରେ ଯାଉଥାଏ । ଆମେ ପ୍ଲାଟଫର୍ମରେ ଚାଲିଥାଉ, ଗାଡ଼ିର ବେଗ ବଢ଼ିବା ଯାଏ । ଦେଖିଲି ତାଙ୍କ ଜାଗାରେ ଲୋକ ବସି ପଡ଼ିଛନ୍ତି, ଯଦିଓ ତାହା ସଂରକ୍ଷିତ ଡ଼ବା । ବସିବାକୁ ସ୍ଥାନ ନାହିଁ । ସେ କିଛି କାହାକୁ ନ କହି ନୀରବରେ ଧ୍ୟାନ ମୁଦ୍ରାରେ ନିଜର ସିଟ୍ ପାଖରେ ଠିଆ ହୋଇଥାଆନ୍ତି ଆମ ଆଖି ଫେରିଆସିବା ପର୍ଯ୍ୟନ୍ତ ।

କେଜାଣି କାହିଁକି ତାଙ୍କ ଲେଖା ମତେ ଭଲ ଲାଗେ । ପିଲାଟି ଦିନରୁ କିଛି ଖୋଜୁଥିଲି । ବିଭିନ୍ନ ଲେଖକଙ୍କର ଅନେକ ଲେଖାପଢ଼ିଛି । ଜ୍ଞାନ ସଂଗ୍ରହ ହୋଇଛି । ପିପାସା ବଢ଼ିଛି, ମୁଗ୍ଧଚକିତ ହୋଇଛି, ଆନନ୍ଦ ପାଇଛି । ତଥାପି ଓଡ଼ିଆ ଭାଷାରେ ଯାଙ୍କର ଲେଖା ପଢ଼ିବାବେଳେ ମୁଁ କେଉଁଠି କେଜାଣି ବାନ୍ଧି ହୋଇଯାଏ । ପଢ଼ିଲାବେଳେ ଅନୁଭବ ହୁଏ ବେଶୀ, ସଂଗ୍ରହ ତୁଳନାରେ । କାରଣ ସେତେବେଳେ ମୁଁ ଲେଖା ଭିତରେ ପଶିଯାଏ । ଆଉ କିଏ କହୁଛି ବୋଲି ମୋତେ ଜଣାପଡ଼େ ନାହିଁ । ଲାଗେ ସତେ ଯେପରି ମୋ ଭିତରେ କିଏ କହୁଛି । ତାଙ୍କ ଲେଖାରେ ଆଗାମୀର ସ୍ପନ୍ଦନ ଥାଏ, ସନ୍ଦେଶ ଥାଏ । ଅବଗାହନର ଗଭୀରତା କଳି ହୁଏନା, ବେଳେ ବେଳେ ଗୋଟିଏ କଥା ଫେଣେଇ କୁହାଯାଇଥିବାରୁ ବିରକ୍ତ ମଧ୍ୟ ଲାଗେ । ତେବେ ସିଏ ଖୁବ୍ କମ୍ ସମୟ ପାଇଁ । ପୁଣି ଅସଲ ସ୍ୱର ଧରିହୁଏ । ବହିଟିଏ ପଢ଼ିବା ପରେ ଅନେକ ଦିନ ଧରି ତାହାର ଅନ୍ତଃସ୍ୱର ନିଜ ଭିତରେ ଅନୁରଣିତ ହୁଏ । ଭୁଲିହୁଏନା । ଭାରି ମାଟିଛୁଆଁ, ମଣିଷଛୁଆଁ । ଯାହାକୁ ଛୁଇଁ ରହିଥିଲେ ଜୀବନ ମାଟି ସହିତ ସମ୍ବନ୍ଧ ରଖେ, ମମତାର ଭାଷା ରଚେ, ମଣିଷକୁ ଛୁଇଁ ଛୁଇଁ ଯାଏ । ସେଇପରି ଲେଖକଙ୍କର ଲେଖା କୁଆଡ଼େ କେତେକଙ୍କ ପାଖରେ ଅଛବ, ଆଉ ସିଏ ଅସ୍ପୃଶ୍ୟ ! ଅସାଧାରଣ ଲେଖକଟିଏ ସର୍ବସାଧାରଣଙ୍କ ପାଖରେ ଆଉ କିପରି ବା ଦିଶନ୍ତା ! ଖଲ୍ଲିକୋଟ ମହାବିଦ୍ୟାଳୟର ବିଶାଳ ଗ୍ରନ୍ଥାଗାର । ଭିତରକୁ ଓଡ଼ିଆ ବହିସବୁ ରହିଥାଏ । ଦିନେ ବହି ଆଡ଼ଉ ଆଡଉ ବୁଢ଼ୀଆଣି ଜାଲଭରା ଥାକରେ ଗୋଟିଏ ବହି ଆଡ଼କୁ ମୋ ହାତର ଦୁଇଟି ଆଙ୍ଗୁଳି ଛୁଟିଗଲା । ବହିଟି କଅଣ ବାହାରକୁ ଅବଶ୍ୟ ଜଣାପଡୁ

ନଥିଲା । ତେବେ ଏକ ପ୍ରବଳ ଆକର୍ଷଣ ଅନୁଭବ କରୁଥିଲି । ମନରେ ଭାବୁଥିଲି ଏଇଟି ବୋଧହୁଏ ଚିତ୍ତଭାଇଙ୍କର ବହିଟିଏ ହୋଇଥିବ ପରା ! ଆଙ୍ଗୁଳି ଦୁଇଟି ଲାଗି ଲାଗି ରହିଥିବା ବହିଥାକରେ କେବଳ ସେଇ ନିର୍ଦ୍ଦିଷ୍ଟ ବହିଟିକୁ ଟାଣି ଆଣିଲା, ଜାଣିଲା ଭଳି । କହିବା ବାହୁଲ୍ୟ ପୁସ୍ତକଟି ମୋର ପ୍ରିୟ ଲେଖକଙ୍କର ହିଁ ଥିଲା । ବହିଟି କଅଣ ଏବେ ଠିକ୍ ମନେ ପଡୁନାହିଁ । ସେ ବହିଟି ସେ ପର୍ଯ୍ୟନ୍ତ ମୁଁ ଜାଣି ନଥିଲି ।

ପକ୍ଷୀ ଆକାଶରେ ଉଡେ । ମାତ୍ର ରହେ ମାଟି ଉପରେ, ଗଛରେ । ମାଟି ତା'ର ଭୂମି, ଆକାଶ ବିହାର କ୍ଷେତ୍ର । ସଞ୍ଜହେଲେ ତଳକୁ ଫେରିଆସିବାର ଆବଶ୍ୟକତା ଅନୁଭବ କରିବା ତା'ର ପ୍ରବୃତ୍ତିଗତ । ତଳୁ ଉପରକୁ ଯିବା ପ୍ରଚେଷ୍ଟାର କଥା, ଅଭୀପ୍ସାର ବିଷୟ । ମାତ୍ର ଉପରୁ ତଳକୁ ଆସିବା ଅବତରଣର କଥା, ଗଭୀରତାର ନିଦର୍ଶନ, ସମସ୍ତଙ୍କୁ ଆକାଶର ସ୍ପର୍ଶ ଦେବାର ବ୍ୟାକୁଳତା । ପ୍ରସ୍ତୁତ ହିଁ ସ୍ପର୍ଶ ପାଏ, ଅପ୍ରସ୍ତୁତ ବାହୁନୁଥାଏ, ବାହ୍ୟରେ ଥାଏ । ଉତ୍ତରଣ ପାଇଁ ତପସ୍ୱୀଟିଏ ଲୋଡ଼ା । ମାତ୍ର ଅବତରଣର ସାଧନା ଏକ ନିଆରା କଥା । ଆମ ମଣିଷମାନେ କୁଦ ଉପରକୁ ଉଠିଗଲେ ତଳକୁ ଆସିବା ଅସମ୍ମାନଜନକ ମନେ କରନ୍ତି, କିନ୍ତୁ ମଣିଷ ଖୁବ୍ କମ୍ ଅଛନ୍ତି ଯିଏ ପର୍ବତର ଶିଖର ଆରୋହଣ କରିଥିଲେ ମଧ୍ୟ ଧରଣୀରେ ପାଦ ଥାପିବା ହିଁ ଆପଣାର ଅସଲ କର୍ମ ବୋଲି ଗ୍ରହଣ କରନ୍ତି । ଶୃଙ୍ଗରୁ ଶୃଙ୍ଗ ଆରୋହଣ କରିଥିବା ମାନବ ମାଟି ଛୁଇଁବା କେବଳ ମାତୃ ଆଶୀର୍ବାଦ ଯୋଗୁଁ ସମ୍ଭବ ହୋଇଥାଏ ପରା ! ଜନନୀର ସ୍ପର୍ଶ ଜନତା ପାଖକୁ ନେଇଆସେ । ତଥାପି ଜନନୀ ଥାଆନ୍ତି, ଜନତା ମଧ୍ୟ ଥାଆନ୍ତି । ଦର୍ଶନ, ମନସ୍ତତ୍ତ୍ୱ, ସାହିତ୍ୟରେ ବୁଡିଥିବା, ଯୁବକ ବେଳୁ ଗବେଷଣାକୁ ନିଜର ପ୍ରକୃତ କ୍ଷେତ୍ର ରୂପେ ଆଦରି ନେଇଥିବା, ଶାନ୍ତି ନିକେତନ ବନ ମହାବିଦ୍ୟାଳୟରେ ପ୍ରଶିକ୍ଷିତ ହୋଇଥିବା ଏବଂ ଡେନମାର୍କର କୋପେନ୍‌ହେଗେନ୍ ବିଶ୍ୱବିଦ୍ୟାଳୟର ଛାତ୍ର, ଆଗ୍ରାସ୍ଥ ଗ୍ରାମୀଣ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ ଅଧ୍ୟାପକ ତଥା ବିଶ୍ୱବିହାରୀ ଏହି ମନସ୍ୱୀ, ବହୁଭାଷାବିଦ୍ ଜ୍ଞାନ ତପସ୍ୱୀ ଜଣକ ସପ୍ତମଶ୍ରେଣୀର ପିଲାଙ୍କୁ ଧରି ସପ୍ତାହ ତମାମ ପାଠ ପଢ଼ାଇବା ଏବଂ ସାତଦିନ ପିଲାଙ୍କ ମେଳରେ ବିତାଇବା ଦେଖି ସେତେବେଳେ ମତେ ଆକାଶରୁ ପଡ଼ିବା ପରି ଲାଗିଥିଲା । ବ୍ରହ୍ମପୁର ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ସପ୍ତମଶ୍ରେଣୀ ପରିକ୍ଷାର୍ଥୀମାନଙ୍କୁ ସବୁ ବିଷୟରେ ଥିବା ସନ୍ଦେହ ଦୂରକରିବା ପାଇଁ ନିଜ ଆଡୁ ଆସି ପହଞ୍ଚିଯିବା ଏକ ବିରଳ ଘଟଣା । ଦୁଇଶହରୁ ଅଧିକ ବହି ଲେଖିଥିବା, ବିଭିନ୍ନ ସଭା, କର୍ମଶାଳା, ଶିବିର ନିୟମିତ ଯାଉଥିବା ଏବଂ ଦେଶ ବିଦେଶ ବୁଲୁଥିବା ତଥା ପ୍ରତିଦିନ ପାଖକୁ ଆସୁଥିବା ପ୍ରତିଚିଠିର ଆତ୍ମୀୟତାପୂର୍ଣ୍ଣ ଉତ୍ତର ଲେଖୁଥିବା ଏଇ

ନୀରବମଣିଷ ସମୟ କୋଉଠୁ ପାଆନ୍ତି, ଆଉ ଶକ୍ତି ପାଆନ୍ତି କେଉଁଠାରୁ ??? ଉଚ୍ଚକୁ ପ୍ରକୃତରେ ଉଡିଯାଇଥିବା କ୍ରିୟାଶୀଳ ଅଗ୍ରଗାମୀ ମଣିଷଟିଏ ହିଁ ତଳେ ସଖ୍ୟସ୍ଥାପନ କରିପାରେ । ତାହାରି ଜୀବନରେ ଯଥାର୍ଥରେ ଉଭୟ ଉତ୍ତରଣ ଓ ଅବତରଣ ସମ୍ଭବପର ।

ବକ୍ତୃତାଦେବାକୁ ସିଏ ପ୍ରାୟ ପସନ୍ଦ କରନ୍ତି ନାହିଁ । ଉପନିଷଦର ଗୁରୁକୁଳ ଢାଞ୍ଚାରେ ଅଭୀପ୍ସୁ, ସତ୍ୟାନ୍ୱେଷୀ ସତୀର୍ଥମାନଙ୍କ ମେଳରେ ବସି ଆଲୋଚନା କରିବା ପାଇଁ ସୁଖ ପାଆନ୍ତି । ଏଥିରେ ଶାନ୍ତିନିକେତନର ପ୍ରଭାବ ମଧ ଥିବ । କେବଳ ସେତିକି ମଧ ନ' ହୋଇପାରେ । ଉପନିଷଦ୍‌ର ଆକ୍ଷରିକ ଅର୍ଥ ପାଖରେ ବସି ଶୁଣିବା । ସଭାସମିତିରେ ତାହା ହୋଇପାରେ ନାହିଁ । ଏଥିରେ ଦୂରତା ଥାଏ । ଭିନ୍ନତା ମଧ ଥାଏ । ବ୍ୟବଧାନ ଥାଏ ବକ୍ତା ଓ ଶ୍ରୋତାଙ୍କ ଭିତରେ ଉଭୟ ଆଙ୍ଗିକ ଏବଂ ଆତ୍ମିକ ଦୃଷ୍ଟିରୁ । ଅସଲକଥା ବକ୍ତା-ଶ୍ରୋତା ପରିବେଶରେ dialogue ନଥାଏ । ପରସ୍ପରାନୁକଥନ କେବଳ ପାଖରେ ବସିଲେ ସୁସ୍ଥ ଭାବରେ ହୋଇପାରେ । ଏହା ନ ହୋଇପାରିଲେ ଅଗ୍ରଗତି ହୁଏନାହିଁ । ତଥାପି କେତେକ ସଭାସମିତିରେ ସିଏ ଯୋଗ ଦିଅନ୍ତି । ସେହିପରି ଏକ ବିଶାଳ ସଭା ହେବାର ଥାଏ ଭଞ୍ଜବିହାର ପରିସରରେ । ଶ୍ରୋତା ପ୍ରାୟତଃ ସ୍ନାତକୋତ୍ତର ଛାତ୍ରଛାତ୍ରୀ ଏବଂ କିଛି ଅଧ୍ୟାପକ ଅଧ୍ୟାପିକା । ଯାଙ୍କୁ ମିଶାଇ ସଭାରେ ତିନିଜଣ ବକ୍ତା ଥିଲେ । କୁଳପତି ବୋଧହୁଏ ସଭା ପରିଚାଳନା କରୁଥାଆନ୍ତି । ପ୍ରଥମ ଦୁଇଜଣ ବକ୍ତା ଭାଷଣ ପାଟିତୁଣ୍ଡ ମଧରେ ଅଳ୍ପ ସମୟ ଭାଷଣ ଦେଇ ବସିବାକୁ ବାଧ ହେଲେ । ସଭାପତିଙ୍କର ଶତ ଅନୁରୋଧ ସତ୍ତ୍ୱେ ଗୋଳ ଥମିଲା ନାହିଁ । ସମବେତ ତରୁଣଙ୍କ କଣ୍ଠରେ ହୁଳହୁଳି ଗଗନ ପବନ କମ୍ପାଇବାରେ ଲାଗିଲା । ଅବସ୍ଥା ଅସମ୍ଭାଳ । ମୁଁ ଶ୍ରୋତାଙ୍କ ଭିତରେ ବସିଥାଏ । ଭାଇଙ୍କର କହିବା ପାଳି ପଡ଼ିଲା ଶେଷକୁ । ସେ କହିବାପାଇଁ ଉଠିବା ମାତ୍ରେ ପୁଣି ହୁଳହୁଳିରେ ସଭା ଉଚ୍ଛୁଳିଲା । ସେ ଚୁପ୍ ଚାପ୍ ତାଆରି ଭିତରେ ଠିଆ ହେଲେ । ଦୁଇଟି ବାକ୍ୟ କହିବା ପରେ କଅଣ ହେଲା କେଜାଣି ଗୋଳ ଅଧା କମିଗଲା । ପ୍ରାୟ ଦୁଇମିନିଟ୍ ପରେ ପୁରା ଥମିଗଲା । ପିଲାଏ ନୀରବରେ ତାଙ୍କ ଭାଷଣ ଶୁଣିଲେ । ସେତେବେଳେ ସିଏ ଯାହା କହିଥିଲେ ତା'ର ପ୍ରଥମ ବାକ୍ୟଟି ଏବେ ମଧ ମନେ ଅଛି । ସେ କହିଥିଲେ, ''ଆପଣମାନଙ୍କ ହୁଳହୁଳି ଶୁଣି ମୋ ବୋଉ କଥା ମନେ ପଡୁଛି । ପିଲାବେଳେ ଏମିତି କିମ୍ବା ଯାଠାରୁ ଆହୁରି ଭଲ ଭାବରେ ସିଏ ହୁଳହୁଳି ପକାଉଥିବାର ଏବେ ମଧ ମନେପଡ଼େ ।''

ଯାତ୍ରୀ । ଯାତ୍ରା ସବୁରି ସାଙ୍ଗରେ, ସେ ସଙ୍ଗୀଟିଏ । ଓଡ଼ିଶାସାରା ବସ୍‌ରେ

ଯିବାଆସିବା କରିବା ତାଙ୍କର ପସନ୍ଦ । ଟ୍ରେନ୍ ସୁବିଧା ଥିଲେ ସେଥିରେ ଯିବେ । ଯେଉଁଠି ଏ ଦୁଇଟି ସୁବିଧା ନଥିବ ସେଠାରେ ସାଇକେଲ୍ । କେତେ ଗାଆଁ ସାଇକେଲ୍‌ରେ ଘୂରିଛନ୍ତି । ନ ହେଲେ ପଦଯାତ୍ରା । ସାରାଜଗତ ସହିତ ଏକ ହେବାର ନିଶା ତାଙ୍କୁ ଜଗତାତୀତଙ୍କୁ ବୁଝିବାରେ, ଅନୁଭବ କରିବାରେ ସାହାଯ୍ୟ କରିଥିବ ପରା ! ଥରେ ପାରଳାଖେମୁଣ୍ଡିରୁ ବସ୍‌ର ପଛସିଟ୍‌ରେ ବସି ବ୍ରହ୍ମପୁର ଆସିବା କଥା ମନେ ଅଛି । କାନ୍ଧରେ ବ୍ୟାଗ ଖଣ୍ଡେ ହିଁ ଯଥେଷ୍ଟ । କେହି ଅଭ୍ୟର୍ଥନା ଜଣାଇବାକୁ ନଥାଉ, କ'ଣ ଭାସି ହୋଇଗଲା ! ନିଜ ସହିତ ଆଉ କିଏ ତ ଅଛି ! ବାଟ ଚାଲୁଛି !

ପାରଳାଖେମୁଣ୍ଡିରେ ସେତେବେଳେ ମୁଁ ଥାଏ । ପ୍ରାୟ ପ୍ରତିବର୍ଷ ସେ ସେଠାକୁ ଆସନ୍ତି । ଦରକାର ପଡ଼ିଲେ ଏକାଧିକଥର । ଉଦ୍ଦେଶ୍ୟ ପୂରା ସପ୍ତାହେ ନ ହେଲେ ପାଞ୍ଚଦିନ ସପ୍ତମ ପିଲାଙ୍କୁ ପଢ଼ାଇବା, ପ୍ରସ୍ତୁତ କରାଇବା । ପାଠଚକ୍ରରେ ସେତେବେଳେ ବସନ୍ତି ନାହିଁ । କହନ୍ତି ପିଲାଏ କ'ଣ ଭାବିବେ ! ପିଲାଙ୍କ ମେଳରେ ଥାଆନ୍ତି । ସବୁ ବିଷୟରେ ସନ୍ଦେହ ମୋଚନ କରନ୍ତି, ବଳ ଭରି ଦିଅନ୍ତି, ସାହସୀ କରାନ୍ତି । ବଡ଼ମାନଙ୍କ ସହିତ ମିଶିବାକୁ ସମୟ ପାଆନ୍ତି ନାହିଁ । ବିଦାୟ ନେବା ଦିନର ଦୃଶ୍ୟ ଭୁଲି ହୋଇନାହିଁ । ବଡ଼ି ସକାଳୁ ସ୍କୁଲ ସାମନାରେ ରାଜବାଟୀ ଛକରେ ବସ୍ ଧରନ୍ତି । ପଛରେ ଦଳେ ପିଲା ଆନନ୍ଦରେ ବେଢ଼ିରହିଥାଆନ୍ତି ।

ଥରେ ଆମେସବୁ ସନ୍ଧ୍ୟାରେ ତାଙ୍କ ସହ ମିଶି ବୁଲି ବାହାରିଥାଉ । ସାଧାରଣତଃ ଅପରାହ୍ନ ଚାରିଟା/ପାଞ୍ଚଟା ବେଳେ ସେ କାହାକୁ କିଛି ନ କହି ଏକା ଏକା ଯାଇ ଘେରାଏ ବୁଲିଆସନ୍ତି । ସେଦିନ ଆମେ ଛକିଥାଉ । ଜମାରୁ ମିଶି ହେଉନାହିଁ । ସଦାବେଳେ ତ ପିଲାଙ୍କ ପାଖରେ ! ଯେମିତି ସିଏ ବାହାରିଲେ ଆମେ ଦୁଇ ତିନିଜଣ ତାଙ୍କ ପିଛା କଲୁ । କହିଲେ "ଆପଣମାନେ କ'ଣ ମୋ ସହିତ ଯିବେ ?" ସୀତାସାଗର ପାଖରେ ଗୋଟିଏ ନିକାଞ୍ଚନିଆ ସ୍ଥାନରେ କିଛି ସମୟ ଗପସପ କଲୁ । ପାଖରେ ଶୃଙ୍ଖଳା ପାଣି ନାଳଟିଏ ଥାଏ । ସେଇଠି ଆମ ସାଙ୍ଗରେ ଥିବା ସପ୍ତମଶ୍ରେଣୀର ଜଣେ ଛାତ୍ର (ପ୍ରଶାନ୍ତ) ଗୀତଟିଏ ବୋଲିଲା । ଗୀତଟିର ପ୍ରଥମ ପଦ ହେଲା, "ଯେ ଆଖିରେ ସାରା ଜଗତ ଦେଖିବୁ ସେ ଆଖି ଆମକୁ ଦିଅ, ଯେ ପାଦରେ ସାରା ସଂସାର ବୁଲିବୁ ସେ ପାଦ ଆମକୁ ଦିଅ .....।"

ଗୀତଟି ତାଙ୍କୁ ଭଲ ଲାଗିଲା । ପିଲାଟିକୁ କହିଲେ ସେଇଟି ଗୋଟିଏ କାଗଜରେ ଲେଖି ପରେ ତାଙ୍କୁ ଦେବାପାଇଁ । ସେଇଟିର ରଚୟିତା ହେଉଛନ୍ତି ବର୍ତ୍ତମାନ ପଣ୍ଡିଚେରୀବାସୀ ମଧୁସୂଦନ ମହାପାତ୍ର । ଗୀତଟି "ଆସ ଗୀତ ଗାଇବା" ନାମରେ ପ୍ରକାଶିତ ପ୍ରାର୍ଥନା ସଂକଳନରେ ସ୍ଥାନିତ ହୋଇଛି । ସାଉଁଟିବା ତାଙ୍କର

ସହଜାତ ପ୍ରକୃତି । ମଣିଷ ସାଉଁଟିବା ତାଙ୍କର ସବୁଠାରୁ ଦୁର୍ଲ୍ଲଭ ଅଭ୍ୟାସ । ମଣିଷଟିଏ ପାଖରେ ପାଇଲେ ସେ ନିଧି ପାଇଯାଆନ୍ତି । ତା' ଭିତରର ସମ୍ଭାବନାକୁ ଠଉରେଇ ପାରନ୍ତି । ସେହିଠାରେ ଗୋଟାସୁଦ୍ଧା ତାଙ୍କୁ ଗୋଟାଇ ନିଅନ୍ତି ତା'ର ସ୍ୱାଭାବିକ ସ୍ଥିତିରେ । ଆଗ୍ରହରେ ସମ୍ପର୍କ ଯୋଡ଼ନ୍ତି । ଅଲୋଡ଼ା ମଣିଷଟିଏ ଭିତରେ ସାହସଭରି ଦିଅନ୍ତି । ସଙ୍ଗୀଟିଏ ହୋଇଯାଆନ୍ତି ତା'ର ଅଲକ୍ଷ୍ୟରେ । ଯିଏ ଯାହା ତାଙ୍କୁ ସେହି ରୂପେ ସ୍ୱୀକାର କରି ଗ୍ରହଣ କରିବା ମହାନୁଭବତାର କଥା । ମଣିଷ ଭିତରେ 'ମଣିଷ'କୁ ସିଏ ଦେଖିପାରନ୍ତି କି କ'ଣ କେଜାଣି ! ବିଭିନ୍ନ ଭାଷାର ବହିରୁ ସେଇମିତି ସିଧା ସାଉଁଟି ଆଣିଛନ୍ତି ଅନେକ ରତ୍ନ ଓଡ଼ିଆ ସାହିତ୍ୟକୁ ଅନୁବାଦ ମାଧମରେ । ଏତଦ୍ ବ୍ୟତୀତ ତାଙ୍କ ଲେଖାରେ ସାରା ଜଗତର ମଣିଷମାନଙ୍କର ସ୍ପନ୍ଦନ, ଅଗ୍ରଦୂତମାନଙ୍କର ପ୍ରତିଶ୍ରୁତି ପ୍ରତିଧ୍ୱନିତ ହୁଏ ଆପଣାର ପ୍ରତ୍ୟୟ ସହିତ ।

ମଣିଷର ବିଚାର ଉପରେ ତାଙ୍କର ପ୍ରଗାଢ଼ ଆସ୍ଥା । ମଣିଷଟିଏ କୌଣସି କାରଣରୁ ବଳି ପଡ଼ିଗଲେ ତାଙ୍କୁ ବ୍ୟଥା ଲାଗେ । ପିଲାଟିଏ ପରି ବ୍ୟାକୁଳ ହୋଇପଡ଼ନ୍ତି ସେଥିରୁ ତାକୁ ମୁକ୍ତ କରିବା ପାଇଁ । ସେଥିରେ ପୁଣି ଜବରଦସ୍ତ ହସ୍ତକ୍ଷେପ କରିବେ ନାହିଁ । କଲେ ତ ଗ୍ରହଣୀୟ ହେବ ହିଁ ହେବ, ତାଙ୍କର ଇଚ୍ଛାକୁ ସମ୍ମାନ ଜଣାଇ । ମାତ୍ର ସିଏ ତାହା ଭଲ ପାଆନ୍ତି ନାହିଁ । ସମସ୍ତଙ୍କୁ ଗୁରୁତ୍ୱ ଦେବେ । ବାଦୀ ଓ ପ୍ରତିବାଦୀ ଉଭୟ ପକ୍ଷଙ୍କୁ ଏକାଠି କରାଇବେ । ଉଭୟ ପକ୍ଷ ହୃଦୟର ସହିତ ସବୁ କଥା ପକାଇବେ । ଆପଣାର ବିଚାର ଗୁଡ଼ିକ ସର୍ବ ସମ୍ମୁଖରେ ରଖୁଥିବେ ସତ, ମାତ୍ର ଉଗ୍ରତା ପ୍ରଦର୍ଶନ କରୁନଥିବେ । ଦାବୀ କରୁନଥିବେ । ସିଏ ପଛରେ ବସି ସବୁ ଶୁଣିବେ । ବୈଠକ୍‌ରେ ଉଁ କି ଚୁଁ କହି ଆପଣାକୁ ଜାହିର କରିବେ ନାହିଁ । ଆଲୋଚନାର ଗତିଧାରାକୁ ତା ବାଟରେ ଯିବାପାଇଁ ପରିବେଶଟିଏ ସୃଷ୍ଟିକରିଦେବେ । ନିହାତି ଆବଶ୍ୟକ ହେଲେ ଆପଣାର ମତ ସଂକ୍ଷେପରେ ପ୍ରକାଶ କରିବେ । ନିଜ ମତ ନ ରହିଲେ ଅଡ଼ି ବସିବେ ନାହିଁ କି ଅପମାନିତ ବୋଧ କରିବେ ନାହିଁ । ଜନତାର ରାୟକୁ ମାନିନେବେ । ଏତାଦୃଶ୍ୟ ଘଟଣାଟିଏ ଘଟିଥିଲା ପାରଳାଖେମୁଣ୍ଡି ପୂର୍ଣ୍ଣାଙ୍ଗଶିକ୍ଷାକେନ୍ଦ୍ରରେ । ସେଠାକାର ଅଧକ୍ଷ ରାମନାରାୟଣଭାଇଙ୍କୁ ସ୍କୁଲ ଛାଡ଼ିବାକୁ ପଡୁଥାଏ । ପରିଚାଳନା କମିଟିର ସିଦ୍ଧାନ୍ତ । ଚିତ୍ତଭାଇ ସେଇ ସମୟରେ ଆସିଥାଆନ୍ତି । ଅପରାହ୍ନ ତିନିଟାରେ ସଭାଟିଏ ଡ଼କାଯାଇଥାଏ । ମୋତେ ସେଥିରେ କଥା ଆରମ୍ଭ କରିବାପାଇଁ ଦାୟିତ୍ୱ ନ୍ୟସ୍ତ କରାଯାଇଥାଏ । କଲେଜ କାମ ସାରି ମୁଁ ସେଠାରେ ପହଞ୍ଚିବାରେ ପନ୍ଦର କୋଡିଏ ମିନିଟ୍ ବିଳମ୍ବ ହୋଇଗଲା । ସଭା କିନ୍ତୁ ଠିକ୍ ତିନିଟାରେ ଆରମ୍ଭ ହୋଇଥାଏ । ମୁଁ ପହଞ୍ଚି ଦେଖିଲି

ସମସ୍ତେ ନିର୍ବାକ୍। ମୁଁ ତ' ଡେରିରେ ପହଞ୍ଚିଥିବାରୁ ଲାଜରା ହୋଇଯାଇଥାଏ। ଭାବିଲି ସଭା ଚାଲିଛି। ମାତ୍ର ଇସାରାରେ ଅନ୍ୟମାନଙ୍କ ଠାରୁ ଜାଣିଲି ସଭା ଆରମ୍ଭ ହୋଇନାହିଁ, ଆପଣଙ୍କୁ ସମସ୍ତେ ଅପେକ୍ଷା କରିଛନ୍ତି। ମତେ ଆହୁରି ଖରାପ ଲାଗିଲା। ଏଇଥିପାଇଁ ଯେ ଖାସ୍ ମୋରି ଯୋଗୁଁ ସଭା ଆରମ୍ଭରେ ବିଳମ୍ବ ଘଟିଲା। ଯାହାହେଉ ମୁଁ ଆରମ୍ଭ କରିବା ପରେ ସଭାକାର୍ଯ୍ୟ ତା ଧାରାରେ ଚାଲିଲା। ମୁଁ ଭାବିଲି ଏଥିଯୋଗୁଁ ସିଏ ରାଗିଥିବେ। ମାତ୍ର ତାହା ହୋଇନଥିଲା। ବରଂ ଧୈର୍ଯ୍ୟର ସହିତ ମୋର ବିଳମ୍ବକୁ ବୁଝିପାରିଥିଲେ ଏବଂ କ୍ଷମା ଦେଇଥିଲେ।

ମଣିଷ ଯାହା ଖୋଜୁଥାଏ ଅନେକ ସମୟରେ ସେ ସମ୍ବନ୍ଧରେ ସ୍ପଷ୍ଟ ଧାରଣା ନଥାଏ। କାହାରି ପାଖରେ ଅନୁରୂପ ଅନ୍ୱେଷା ଦେଖିଲେ ସତୀର୍ଥ ହୋଇଯାଏ। ଏକାଠି ଅନ୍ୱେଷଣ ପର୍ବ ପରସ୍ପରକୁ ସହଜ କରିଦିଏ। ସୃଷ୍ଟିକ୍ଷମ କରାଏ। ଅବଗୁଣ୍ଠିତ ହୋଇରହିବା ପାଇଁ ଅଧିକାଂଶ ସୁଖ ପାଆନ୍ତି। ମାତ୍ର ମୁକୁଳା ମଣିଷ ଧରାଦେଇପାରେ, ଧରିପାରେ ମଧ। ମୁକୁଳା ହେବାରେ ମଧ ଛନ୍ଦ ରହିଛି। ଛନ୍ଦପତନ ହେଲେ ଏହା ସମ୍ଭବ ହୁଏନାହିଁ।

ସେତେବେଳକୁ ମୁଁ ବଦଳି ହୋଇ ପୁରୀ ଆସିଥାଏ। ପାରଳାଖେମୁଣ୍ଡିରୁ ଜିନିଷପତ୍ର ଧରି ହଠାତ୍ କଲେଜ ପାଖରେ ଘରଟିଏ ପାଇ ରହିଥାଏ। ଦିନେ ବର୍ଷା ହେଲା। ମୁଁ ଥାଏ କଲେଜ୍‌ରେ। ଆସି ଦେଖେ ଘରେ ଗୋଟିଏ ବଖରାରେ ତିନି ଇଞ୍ଚ ପାଣି ଭର୍ତ୍ତି। ସେତେବେଳେ ପିଲାମାନେ ଜରୁରୀ କାମରେ ମାମୁଁ ଘର ଯାଇଥାଆନ୍ତି। ବହିପତ୍ର ଟ୍ରଙ୍କ ବାକ୍ସ ସବୁ ଓଦା। ଆଗରୁ ଅନ୍ୟ ଅସୁବିଧା ତ ଥାଏ। ସେଦିନ ନିଷ୍ପତ୍ତି କଲି ଘରଟିଏ ଖୋଜି ଉଠିଯିବା ପାଇଁ। ପରଦିନ ଘର ଖୋଜି ବାହାରିଲି। ସଂଧ୍ୟାରେ କ୍ଳାନ୍ତ ହୋଇ ଅନ୍ୱେଷଣରୁ କ୍ଷାନ୍ତ ହେବାପାଇଁ ବାହାରିଛି ଭାବିଲି ବିରକ୍ତ ତ' ଲାଗୁଛି। ଏବେ ହୋଟେଲ୍‌ରେ ଖାଇ ଘରେ ଯାଇ କରିବି କ'ଣ ! ଆହୁରି ବିରକ୍ତ ଲାଗିବ। ବରଂ କିଛି ବହି ପଢ଼ି କ୍ଳାନ୍ତି ଏବଂ ବିରକ୍ତି ଦୂର କରିବି।'' ସେଇଦିନ ସମାଜରେ 'ପ୍ରାପ୍ତି ସ୍ୱୀକାର' କି ସେହିଭଳି କିଛି ଶିରୋନାମା ତଳେ ନବପ୍ରକାଶିତ କେତେକ ପୁସ୍ତକର ସଂକ୍ଷିପ୍ତ ସମୀକ୍ଷା ବାହାରିଥାଏ। ସେଇଥିରେ ଥାଏ ଚିତ୍ତଭାଇଙ୍କର ଗୋଟିଏ ବହିର ଅବତାରଣା। ସେଇଟି ହେଲା 'ଡେନମାର୍କ ଚିଠି'। ପ୍ରକାଶକ ହେଲେ ପୁରୀର ପ୍ରଜ୍ଞାଲୋକ ପ୍ରକାଶନ ସଂସ୍ଥା। ବର୍ଷା ଝିପି ଝିପି ହେଉଥାଏ। ତଳମାଳି ସାହିର ସେହି ସଂସ୍ଥାଟି ଖୋଜି ଠାବ କରିବାକୁ ମତେ ବହୁ ପରିଶ୍ରମ କରିବାପାଇଁ ପଡ଼ିଲା। ବହି ପଢ଼ିବା ନିଶାରେ କଷ୍ଟ ଜଣା ପଡୁନଥାଏ। ଅବଶେଷରେ ପ୍ରକାଶକଙ୍କର ଘର ପାଇଲି ଏବଂ ବନ୍ଧୁ ବିବୁଧ ରଞ୍ଜନଙ୍କ ସହିତ

ପରିଚୟ ମଧ୍ୟ ହେଲା । ବହି ତ' କିଣା ହେଲା । କଥାବାର୍ତ୍ତା ପ୍ରସଙ୍ଗରେ ଭଡ଼ାଘର ଖୋଜା କଥା ମଧ୍ୟ ପଡ଼ିଲା । କହିବା ବାହୁଲ୍ୟ ବନ୍ଧୁ ତାଙ୍କରି ସାଇରେ ଘରଟିଏ ମୋ ପାଇଁ ଖୋଜିଦେବାରେ ନିମିତ୍ତଟିଏ ହେଲେ । ଘରଟି ମତେ ବହୁ ଭାବରେ ସାହାଯ୍ୟ କଲା । ତାହା କେବଳ ଭଡ଼ାଘରଟିଏ ନଥିଲା, ବରଂ ମୋ ଜୀବନର ସଂପ୍ରସାରଣରେ ବହୁ ଭାବରେ ସାକ୍ଷୀଟିଏ ଥିଲା ।

ପୁରୀରେ ପ୍ରଥମେ ପ୍ରଥମେ ମତେ ସବୁ ଦେଉଳିଆ ଦେଉଳିଆ ଲାଗୁଥିଲା । ପୁରୀ ସହର ମୋ ପାଇଁ ଆଦୌ ନୂଆ ନଥିଲା । ଏଇଠି କିଛି ବର୍ଷ କଲେଜ୍‌ରେ ଛାତ୍ର ହିସାବରେ କଟିଥିଲା । ବନ୍ଧୁ ବାନ୍ଧବ, ସମୁଦ୍ର, ମନ୍ଦିରର ଆକର୍ଷଣରେ ପ୍ରାୟ ମାସେ ଦୁଇମାସ ଅନ୍ତରରେ ପୁରୀ ଆସିବା ବହୁଦିନର ଚିରାଚରିତ ଅଭ୍ୟାସ ଥିଲା । ଜଣେ ସୁହୃଦ୍‌ଙ୍କ ପାଖକୁ ଚିଠି ଲେଖିବା ବେଳେ ମନକଥା ଜଣାଇଥିଲି । ପୁରୀର ଆକର୍ଷଣ ଯେ ମୋ ପାଇଁ ଅନାକର୍ଷଣୀୟ ଥିଲା, ସେ କଥା ନୁହେଁ । ମାତ୍ର ଯାହାର ଆକର୍ଷଣରେ ଜୀବନ ବଞ୍ଚିବା ଅର୍ଥପୂର୍ଣ୍ଣ ହୁଏ ତାହାର ଅଭାବ ଅନୁଭୂତ ହେଉଥିଲା । ପ୍ରକୃତି ଏବଂ ଧର୍ମର ଆହ୍ୱାନ ବେଶୀ ସମୟ ଆକୃଷ୍ଟ କରିପାରୁନଥିଲା । ସେସବୁ ପ୍ରତି ଅନାଗ୍ରହ ନଥିଲେ ମଧ୍ୟ କିପରି ଏକ ଉଦାସୀନ ଭାବ ଜାତ ହେଉଥିଲା । ଏସବୁଥିରେ ବ୍ୟକ୍ତିର ସଂପୃକ୍ତି କେତେ ! ଏଣେ ପାଠଚକ୍ର ସବୁ ଗତାନୁଗତିକ ମନେ ହେଉଥିଲା । ଶ୍ରୀଅରବିନ୍ଦଙ୍କର ଦର୍ଶନର ପୃଷ୍ଠଭୂମିରେ ସାମାନ୍ୟ ଉପଚାରରେ ସନ୍ତୁଷ୍ଟ ହୋଇପାରୁ ନଥିଲି । ମନରେ କେତେ କ'ଣ ବ୍ୟାପ୍ତିର ସୂଚନା ମିଳୁଥିଲା । ମାତ୍ର ସମଧର୍ମୀ ବନ୍ଧୁ ପାଉ ନଥିଲି ଯାହାଙ୍କ ମେଳରେ ବସି ନିଜକୁ ସଂପ୍ରସାରିତ କରିପାରିବ । ସେଇ କେତେ ମାସ ରୁଦ୍ଧକୋଠରୀ ମଧ୍ୟରେ ଆବଦ୍ଧ ରହିବା ପରି ଲାଗୁଥିଲା । ପରିବାରର ଭୂଗୋଳ ଭିତରେ ଆବଦ୍ଧ ରହି ମନର ଭୂଗୋଳ ପ୍ରତି ଆଖି ବୁଜିଦେବାକୁ ହେଉଥିଲା ।

ଦିନକର କଥା । ସଂଧ୍ୟା ପ୍ରାୟ ଛଅଟା କି ସାଢ଼େ ଛଅଟା ହେବ । କଲିଙ୍ଗ୍‌ବେଲ୍ ବାଜି ଉଠିଲା । କବାଟ ଫିଟାଇ ଆଗରେ ଚିତ୍ତଭାଇଙ୍କୁ ଦେଖି ଅବାକ୍ ହୋଇଗଲି । ଅପ୍ରସ୍ତୁତ ଅବସ୍ଥାରେ ମୁଁ ଯାନ୍ତ୍ରିକ ରୀତିରେ ନମସ୍କାରଟିଏ କରିଦେଇ ସେମିତି ଚାହିଁ ରହିଥାଏ । ଭାବୁଥାଏ ଇଏ କିପରି ହଠାତ୍ ଏଠାରେ ! କେଉଁ ଉଦ୍ଦେଶ୍ୟରେ ! ଆଗରୁ ବି କିଛି ଖବର ନାହିଁ । ଯୋଜନା ନାହିଁ । ଅବଶ୍ୟ ତାଙ୍କ ସଙ୍ଗେ ମଝିରେ ପତ୍ର ବିନିମୟ ହେଉଥାଏ । ଘର ଠିକଣା ଜାଣି ଥାଆନ୍ତି । ସୌଜନ୍ୟ ଦୃଷ୍ଟିରୁ ଘର ଭିତରକୁ ଡାକିବାପାଇଁ ମଧ୍ୟ ସେତେବେଳେ ଭୁଲିଯାଇଥିଲି । ସିଏ କିନ୍ତୁ ମୋ ଅବସ୍ଥା ଠିକ୍ ବୁଝିସାରିଥିଲେ । ଡାକରାକୁ ଅପେକ୍ଷା ନକରି ନିଜଆଡ଼ୁ, "ଚାଲନ୍ତୁ

ଭିତରେ ବସିବା'' କହି ପାଦ ବଢ଼ାଇଲେ । ସାଙ୍ଗରେ ଆଉ ଜଣେ ଥାଆନ୍ତି, ଆସିଥିବା ଗାଡିର ଡ୍ରାଇଭର । ଆମେ ତିନିହେଁ ବୈଠକଖାନା ରେ ବସିଲୁ । ମୁଁ ଏ ମଧ୍ୟରେ ପ୍ରକୃତିସ୍ଥ ହୋଇ ଘରେ ଜଣାଇ ସାରିଥାଏ । ସେଥିରୁ ଚିତ୍ତଭାଇ କଥା ଆରମ୍ଭ କଲେ, ଗୋଟିଏ ସଭାରେ ଯୋଗ ଦେବାପାଇଁ ପୁରୀ ଆସିଥିଲି । ସଭାକାର୍ଯ୍ୟ ଶୀଘ୍ର ସରିଗଲା । ହାତରେ ତ ସମୟ ଥିଲା ତେଣୁ ଆପଣଙ୍କ ଆଡେ ବୁଲି ଆସିଲି । ଯା ପରେ ଭୁବନେଶ୍ୱର ଫେରିଯିବି । ଅନାହୂତ ଭାବରେ ପ୍ରଥମ ଥର ପାଇଁ ଘରକୁ ଆସିଥିବାରୁ ମୁଁ ସେ ପର୍ଯ୍ୟନ୍ତ ମଧ୍ୟ ବିସ୍ମୟ ମଧ୍ୟରେ ଥାଏ । ସେ ତ ସହଜରେ କେଉଁଠିକି ଯିବା ଲୋକ ନୁହଁନ୍ତି । କେହି ଡାକିଲେ ମଧ୍ୟ ମନା କରନ୍ତି । ନିଜ ଆଡୁ କେମିତି ଆସିଲେ ! ମୋ ସହିତ ଚିଠିପତ୍ର ମାଧ୍ୟମରେ ଯାହା ଭାବର ଆଦାନ ପ୍ରଦାନ ହୁଏ । ଶିବିର ଗଲେ ସେଠାରେ କିଛିଟା ମିଶିବା ହୁଏ । ବାସ୍ ସେତିକି ।

କଥା ପ୍ରସଙ୍ଗରେ ଭୁବନେଶ୍ୱର ପୂର୍ଣ୍ଣାଙ୍ଗ ଶିକ୍ଷା କେନ୍ଦ୍ରରେ ପ୍ରତି ସପ୍ତାହରେ ଗୁରୁବାର ଓ ରବିବାର ନିୟମିତ ହେଉଥିବା ଶ୍ରୀଅରବିନ୍ଦ ଦର୍ଶନ କ୍ଲାସ ବିଷୟ ପଡ଼ିଲା । କହିଲେ, ''ଆମେ ଗତ କ୍ଲାସରେ ଏଇ ବିଷୟ ପଢୁଥିଲୁ । ପଢ଼ି ଅବାକ୍ ହେଲୁ ।'' ବୋଧହୁଏ ବହିଟି Life Divine ନହୁବା Synthesis of Yoga ଥିଲା । ସେଇ ବହିଟି ମୋ ପାଖରେ ଅଛି କି ନାହିଁ ପଚାରିଥିଲେ । ବହିଟି ବଢ଼ାଇ ଦେଲି । ଆମେ ଦୁହେଁ ପାଖାପାଖି ସୋଫାରେ ବସିଲୁ । ସେ ନିର୍ଦ୍ଦିଷ୍ଟ ଅଂଶ ପଢ଼ିବା ପାଇଁ ଲାଗିଲେ । ତା'ଉପରେ ଆଲୋଚନା ମଧ୍ୟ କଲେ । ଏମିତି କଥାବାର୍ତ୍ତା ହେଉ ହେଉ କେତେବେଳେ ରାତି ନଅଟା ପାଖାପାଖି ହେଲାଣି ଆମକୁ ମାଲୁମ୍ ନଥିଲା । ଡ୍ରାଇଭର କହିନଥିଲେ ବୋଧହୁଏ ଆଉ କିଛି ସମୟ ଆଲୋଚନା ଚାଲିଥାଆନ୍ତା । ଶେଷକୁ ପଚାରିଲେ, ''କେମିତି ଲାଗିଲା ?'' ମୁଁ ସେତେବେଳକୁ ହାଲୁକା ଏବଂ ସହଜ ଅନୁଭବ କଲିଣି । କହିଲି 'ଭଲ ଲାଗିଲା ।' ମୁହଁରେ ମୃଦୁ ଶାନ୍ତ ତୃପ୍ତ ହସ ଫୁଟାଇ ପୁଣି କହିଲେ, ''ଏମିତି ଥରେ ଥରେ ବସିଲେ କେମିତି ହୁଅନ୍ତା ?'' ଆଶ୍ଚର୍ଯ୍ୟ ହେଲି । ଇଏ ତ କାହାକୁ ଧରାଦେବା ଲୋକ ନୁହଁନ୍ତି । ଯାହାକୁ ଧରାଦେବେ କେବଳ ନିଜଆଡୁ । ଥରେ ଜଟଣୀ ପାଠଚକ୍ର ସମ୍ମିଳନୀ ପାଇଁ ତାଙ୍କର ସମ୍ମତି ଲୋଡ଼ି ନିରାଶ ହୋଇଥିଲି । ସାହସ ସଞ୍ଚୟ କରି ବିସ୍ମିତ ହୋଇ ବିସ୍ତାରିତ ନୟନ ଯୁଗଳରେ ଅନାଇ ପଚାରିଲି, ''ଆପଣ ଏଠାକୁ ସତରେ ଆସିବେ ?'' ଉତ୍ତର ଆସିଲା, ''ମାସକୁ ମାତ୍ର ଥରେ ।'' ବିଶ୍ୱାସ ହେଲାନାହିଁ । ପୁଣି ସେଇ ପ୍ରଶ୍ନ ପଚାରନ୍ତେ ଏକା ଉତ୍ତର ମଧ୍ୟ ମିଳିଲା । କଥା ବଢ଼ାଇ କହିଲେ, 'ଆପଣ ସମଧର୍ମୀ ବନ୍ଧୁ କେତେଜଣଙ୍କୁ

ଠାବ କରନ୍ତୁ । ତା'ପରେ ମତେ ଜଣାଇଲେ ଆମେ ବସିବା ଦିନ ଠିକ୍ କରିବା ।''
ପିଲାବେଳୁ କ'ଣ ଖୋଜୁଥିଲି । ଭାବିଥିଲି ମୋର ଉଦ୍ୟମ ଯଥେଷ୍ଟ ନୁହେଁ, କିଛି ପାଇବା ପାଇଁ ବାମନଟିଏ ହୋଇ ଚନ୍ଦ୍ର ଆଡ଼କୁ ଅନାଉଥିଲି । ସାଧାରଣ ପୃଥିବୀରେ ଅସାଧାରଣର ତୃଷା କେଉଁ କାଳରୁ ରହିଥିଲା ସିନା ପୂରା ସାକାର ହୋଇପାରୁ ନଥିଲା । କିଶୋର ସମୟରୁ ଜାଣିବା, ବୁଝିବା, ଆଲୋଚନା ମାଧ୍ୟମରେ ବଢ଼ି ବଢ଼ି ଯିବା, ସମଧର୍ମୀଙ୍କ ମେଳରେ ସମୟ ବିତାଇବା ମୋର ରୁଚି ଥିଲା, ଏବେ ବି ଅଛି । ଚିତ୍ତଭାଇଙ୍କର ଆମନ୍ତ୍ରଣ ମୋତେ ପାହାଡ଼େ ବଳ ଓ ଶକ୍ତି ଆଣି ଦେଲା । ସେଦିନ ସେ ବିଦାୟ ଗ୍ରହଣ କରିଥିଲେ ।

ବନ୍ଧୁ ଖୋଜାରେ ବାହାରିଲି । ବିଶେଷ କିଛି ଅସୁବିଧା ହେଲାନାହିଁ । ସତେ ଯେପରି ସେମାନେ ଏଥିପାଇଁ ପ୍ରସ୍ତୁତ ହୋଇ ଅପେକ୍ଷା କରିଥିଲେ । ଯେଉଁମାନଙ୍କ ସହିତ ଜୀବନର କ୍ଷେତ୍ରରେ ଏକ ଭିନ୍ନ ଧରଣର ସମ୍ପର୍କ ଥିଲା ଏବଂ ଯେଉଁମାନେ ବିଭିନ୍ନ ଅବସରରେ ମନ ଓ ହୃଦୟଛୁଆଁ ହୋଇପାରିଥିଲେ ସେଇଥିରୁ କେତେଜଣଙ୍କୁ କହିଲି ।

ବନ୍ଧୁ ସଂଗ୍ରହ ସରିଲା । ଚିଠି ଲେଖିଲି । ଦିନ ମଧ ଠିକ୍ ହେଲା, କିନ୍ତୁ ଠିକ୍ ହୋଇପାରିଲା ନାହିଁ ଆଲୋଚନାର ବିଷୟବସ୍ତୁ । ପ୍ରାୟ କୋଡ଼ିଏ ଜଣ ଅଭୀପ୍ସୁଙ୍କ ଗହଣରେ ଅପରାହ୍ନରେ ପ୍ରଥମ ବୈଠକ ଅନୁଷ୍ଠିତ ହେଲା ତଳମାଛି ସାହିର ସେଇ ବସାଘରେ । ନାନା ପ୍ରଶ୍ନ ଓ ଉତ୍ତର ମଧ୍ୟରେ ଆଲୋଚନାର ଧାରା ଅଙ୍କୁରିତ ହେବାରେ ଲାଗିଲା । ସେଦିନ ଥିଲା ସେପ୍ଟେମ୍ବର ଦଶ ତାରିଖ, ଚଉରାନବେ ମସିହା, ଶନିବାର ।

ହଁ, ଆଉ ଗୋଟିଏ କଥା ମନେ ପଡ଼ିଲା । ଚିତ୍ତଭାଇଙ୍କ ସହିତ ଆମର ଆଲୋଚନାର ଦିନ ଠିକ୍ ହୋଇସାରିଥାଏ । ଦିନେ ସକାଳ ପ୍ରାୟ ନଅଟା ବେଳେ ପୁରୀର ଜଣେ ଉଦୀୟମାନ ଯୁବକ ଜଣେ ବନ୍ଧୁଙ୍କ ସହିତ ଆମ ଘରେ ପହଞ୍ଚିଲେ । ମୁଁ ତାଙ୍କୁ ଚିହ୍ନି ନଥାଏ । ସେ କିନ୍ତୁ ମୋ ବିଷୟରେ ଖବର ନେଇ ଆସିଥାଆନ୍ତି ଗୋଟିଏ ଉଦ୍ଦେଶ୍ୟରେ । କଥା ହେଲା ପୁରୀରେ ଶ୍ରୀଅରବିନ୍ଦ ପାଠଚକ୍ରକୁ ଆଧାର କରି ଆମେ କଅଣ ସବୁ ନୂଆ କଥା କରିପାରିବା । ବନ୍ଧୁ ଜଣେ ଯୁବ ଇଞ୍ଜିନିୟର । ନାଆଁ ହେଉଛି ନବକେତନ । ଆଳାପାନ୍ତେ ଜାଣିଲି ସେ ପାଠଚକ୍ର ଆନ୍ଦୋଳନ ସହ ପିଲାଟି ଦିନରୁ ପରିବାର ସୂତ୍ରରୁ ସଂପୃକ୍ତ । ସେ ମତେ କହିଲେ, ''ଆପଣ ଜାଣନ୍ତି ଶ୍ରୀଅରବିନ୍ଦ ଏକ ନୂତନ ଚେତନାର ପ୍ରତୀକ । ପାଠଚକ୍ର ଏକ ଧର୍ମସଭା ନୁହେଁ । ଏହା ହେଉଛି ଏକ ଆଧ୍ୟାତ୍ମିକ ଆନ୍ଦୋଳନ । ପୃଥିବୀର ପରିବର୍ତ୍ତନ ପରିପ୍ରେକ୍ଷୀରେ

ମଣିପର ଦିଗ ଦିଗନ୍ତ ଉନ୍ମୋଚନ ଯୋଗଧାରାରେ ସମ୍ଭବ ବୋଲି ଶ୍ରୀଅରବିନ୍ଦ ଦର୍ଶନ କୁହେ । ପୁରୀରେ ଅବସର ପରେ ଜଣେ ଉତ୍ସାହୀ ଅଗ୍ରଜ ଅବସ୍ଥାନ କରୁଛନ୍ତି । ସେ ହେଉଛନ୍ତି ରାଜକୃଷ୍ଣ ମହାନ୍ତି । ପୂର୍ବରୁ ତାଙ୍କର ଏହି ଧାରାରେ କିଛି ଅଭିଜ୍ଞତା ଅଛି । ସିଏ ମଧ୍ୟ ଅଭୀପ୍‌ସୁମାନଙ୍କ ଅପେକ୍ଷାରେ ଅଛନ୍ତି । ଆପଣଙ୍କ ପାଖକୁ ଆସିଛୁ । ଆପଣ ଏକ ନୂତନ ଉଦ୍ୟମରେ ସାମିଲ ହେବାପାଇଁ ଅନୁରୋଧ ଜଣାଉଛୁ ।' ମୁଁ ସବୁ ଶୁଣିଲି । ତାଙ୍କୁ ଗୋଟିଏ 'ସୁହୃଦ୍' ପତ୍ରିକା ଏବଂ 'ତୀର୍ଥଦର୍ଶନ' ବହି ପଢ଼ିବାପାଇଁ ଦେଲି । କହିଲି ''ମୁଁ ମଧ୍ୟ ଏପରି ଏକ ନୂତନ କାର୍ଯ୍ୟକ୍ରମ ଅପେକ୍ଷାରେ ଅଛି, ତେବେ ତାହା କିପରି ହେବ ଜାଣେ ନାହିଁ । ଶ୍ରୀଅରବିନ୍ଦଙ୍କ ଧାରାରେ ହେବ କି ଆଉ କେଉଁ ପ୍ରକାରେ ହେବ ମୋତେ ତାହା ଅଜଣା । ମାତ୍ର ଏକ ଦୃଢ଼ ଇଚ୍ଛା କିଛି ନୂଆ କଥା କରିବା ଅବସରରେ ଜୀବନ ବଞ୍ଚିବ । ଚିତ୍ତରଂଜନ ଦାସ ଆମ ଗହଣରେ ଦିନଟିଏ ବସିବେ ବୋଲି ସମ୍ମତି ଦେଇଛନ୍ତି । ଆପଣ ଯଦି ଚାହାନ୍ତି ସେଥିରେ ଯୋଗ ଦେଇପାରନ୍ତି ।''

ଚିତ୍ତଭାଇଙ୍କ ନାମ ସହିତ ସେ ପୂର୍ବରୁ ପରିଚିତ ଥିଲେ । ଏଣୁ ଖୁବ୍ ଖୁସିରେ କହିଲେ, ''ତାଙ୍କୁ ତ ପୁରୀରେ ବହୁଲୋକ, ବିଶେଷ କରି ଯୁବକ ଚାହାନ୍ତି । ତେବେ ଗୋଟିଏ କାମ କରିବା । ଆପଣଙ୍କ ଘରେ ତ ବୈଠକ ହେବ ଏହା ବ୍ୟତୀତ ସେଇ ଯୁବକମାନଙ୍କ ପାଇଁ ଆଉ କେଉଁଠାରେ ଏକ ବୈଠକ କରିବା ।'' ସେଇଆ ହେଲା, ଚିତ୍ତଭାଇଙ୍କ ସହିତ କଥାବାର୍ତ୍ତା କରି ନବକେତନ ଯୁବ ବୈଠକଟି ସକାଳେ କରିବା ପାଇଁ ସ୍ଥିର କଲେ । ସ୍ୱାଭାବିକ ଭାବରେ ଆମ ଘରେ ଅପରାହ୍ନ ଅଧିବେଶନ ହେବା ମଧ୍ୟ ସ୍ଥିର ହୋଇଗଲା । ବର୍ତ୍ତମାନ କଥା ହେଲା ବୈଠକର ସ୍ଥାନ ନିରୂପଣ । ବନ୍ଧୁ କହିଲେ, ''କିଛି ନାହିଁ । ଆମେ ଶ୍ରୀଅରବିନ୍ଦ ଧାମରେ ବସିବା, ସୁବିଧା ହେବ ।'' ବନ୍ଧୁଙ୍କର ପ୍ରସ୍ତାବ କାହିଁକି ପ୍ରାସଙ୍ଗିକ ମନେ ହେଲାନାହିଁ । ତେବେ ଯାହା ହେଉ ଦାୟିତ୍ୱ ତ' ତାଙ୍କର । ସେଦିନ ଚିତ୍ତଭାଇ ଆମ ଘରେ ସକାଳୁ ସକାଳୁ ବସ୍‌ରେ ଆସି ପହଞ୍ଚିଗଲେ । ଧାମକୁ ଯିବା କଥା । ହଠାତ୍ ନବକେତନ ଝାଳନାଳ ହୋଇ ପହଞ୍ଚି ମୋତେ କହିଲେ, ''ଧାମରେ ବସିବା ନୋହିଲା । ତେବେ ଆପଣ ଚିନ୍ତା କରନ୍ତୁ ନାହିଁ । ଯାଗା ଠିକ୍ ହୋଇଯିବ ।'' ଯାଗା ଠିକ୍ ହୋଇଗଲା । ଚକ୍ରତୀର୍ଥ ରୋଡ଼ର ନନ୍ଦୀ କଟେଜ୍‌ରେ ବୈଠକ ହେଲା । ପ୍ରାୟ ତିରିଶ ପଇଁତିରିଶ ଯୁବକଙ୍କ ଗହଣରେ ପ୍ରାୟ ଅଢ଼େଇ ଘଣ୍ଟା ଜୀବନର ନାନା ଦିଗ ଉପରେ ଆଲୋଚନା ପ୍ରଶ୍ନୋତ୍ତର ଇତ୍ୟାଦି ହେଲା । ଚିତ୍ତଭାଇ ଏଥିରେ ଆଦୌ ବିଚଳିତ ହୋଇନଥିଲେ କି ସାମାନ୍ୟ ପ୍ରତିକ୍ରିୟା ମଧ୍ୟ ପ୍ରକାଶ କରିନଥିଲେ । ସ୍କୁଟରରେ ଗଲାବେଳେ କେବଳ ଥରେ

ପଚାରିଥିଲେ ଯେ ଏଇ ରାସ୍ତା ତ ଶ୍ରୀଅରବିନ୍ଦ ଧାମକୁ ନୁହେଁ । ବାସ୍ ସେତିକି । ଅପରାହ୍ନ ଅଧିବେଶନ ଘରେ ହୋଇଥିଲା । ସେତିକିବେଳେ ଠିକ୍ ହେଲା ଯେ ଆମେ ଗୋଟିଏ ବହି ବିଷୟରେ ପ୍ରତିଥର ଆଲୋଚନା କରିବା । ପରବର୍ତ୍ତୀ ବୈଠକ ପାଇଁ ବହି ବଛାଗଲା । ସେଇଟି ଥିଲା ଅର୍ଥନୀତିରେ ଚହଳ ପକାଇଥିବା ଏକ ଭିନ୍ନ ରୁଚିର ବହୁଳ ପ୍ରସାରିତ ପୁସ୍ତକ "Small is Beautiful" । ଲେଖକ E.F Schumacher । ପ୍ରତିମାସରେ ଥରେ ବସିଲୁ । ଚିତ୍ତଭାଇ ସବୁ ଥର ଆମ ସାଙ୍ଗରେ ନଥାନ୍ତି ସତ, ମାତ୍ର ଥିଲାପରି ଲାଗେ । ସବୁ କିଛି ପୂର୍ଣ୍ଣ ଲାଗେ । ଏଇ ମର୍ମରେ ଚିଠି ମଧ୍ୟ ଆସିଥାଏ ।

ଗୋଟିଏ ମାସରେ ଥରେ ବସିଥିଲୁ ସମୁଦ୍ରକୂଳରେ ସାତଲହଡ଼ି ମଠରେ । ଏଇଟି ଓଡ଼ିଆ ଭାଗବତ ସ୍ରଷ୍ଟା ଜଗନ୍ନାଥ ଦାସଙ୍କ ସାଧନା ପୀଠ । ସେଦିନ ଥାଏ ଏପ୍ରିଲ୍ ତେଇଶି ତାରିଖ । ନାନା ଆଲୋଚନା ମଧ୍ୟରେ ଆମେ ସ୍ଥିର କଲୁ ଆଉ ଗୋଟିଏ ବହି ଏଥର ଧାରା ବାହିକ ଆଲୋଚନା କରିବା । ବହିଟି ପାଇଁ ପ୍ରସ୍ତାବ ଦେବାପାଇଁ ସମସ୍ତଙ୍କୁ କୁହାଗଲା । ମୁଁ ଚୁପ୍ ଚାପ୍ ବସିଥାଏ । ସମବେତ ବନ୍ଧୁଗଣ ସମାଜର ବିଭିନ୍ନ ସ୍ତର, ବିଶ୍ୱାସ, ବୃତ୍ତି ଏବଂ ରୁଚିର ଥିଲେ । ଏଣୁ ଠୋସ୍ କିଛି କିଛି ଲଦିଦେବା ଉଚିତ ହେବନାହିଁ ବୋଲି ବିଚାର କରୁଥିଲି । ଯଦିଓ ମୁଁ ବ୍ୟକ୍ତିଗତ ଭାବରେ ଶ୍ରୀଅରବିନ୍ଦ ଦର୍ଶନ ଆଲୋଚନା କରିବାରେ ଆଗ୍ରହୀ ଥିଲି ତଥାପି କିଛି ବି ସୂଚନା ଦେଉନଥିଲି । କେବଳ ନୀରବରେ ଘଟଣା ପ୍ରବାହକୁ ତା' ବାଟରେ ଗତିକରିବା ପାଇଁ ସୁଯୋଗ ଦେଇଥିଲି । ଏଇ ବିଶ୍ୱାସ ଥିଲା ଯେ ଯାହା କରଣୀୟ ତାହା ଅବଶ୍ୟ ହେବ । ମୋର ରୁଚି ଏବଂ ବିଶ୍ୱାସ ଅନ୍ୟମାନଙ୍କ ଉପରେ ଲଦିଦେବା ଆଦୌ ସମୀଚିନ ହେବନାହିଁ । ନୀରବତା ଭଙ୍ଗ କରି ହଠାତ୍ ନବକେତନ କହିଲେ, 'ଆର ଥର ଠାରୁ ଶ୍ରୀଅରବିନ୍ଦଙ୍କର The Synthesis of Yoga ଧାରାବାହିକ ଭାବରେ ଆଲୋଚନା କରାଯାଉ । ଆସନ୍ତା ମାସରେ ମୁଁ ସେଇ ବହିଟିର ପ୍ରଥମ ପାଞ୍ଚ ଅଧ୍ୟାୟ ପ୍ରସ୍ତୁତ ହୋଇ ଆଲୋଚନା କରିବି । ତା'ପର ମାସରେ ଅନ୍ୟ କେହି କରିବେ । ନିର୍ଦ୍ଧାରିତ ଦିନ ଆସି ପହଞ୍ଚିଲା । ନବକେତନ ସମାବେଶରେ ଆଲୋଚନା ଆରମ୍ଭ କଲେ । ପାଞ୍ଚୋଟି ଅଧ୍ୟାୟ କଥଣ ପ୍ରଥମ ଅଧ୍ୟାୟର ପାଞ୍ଚୋଟି ବାକ୍ୟ ମଧ୍ୟ ଆଲୋଚିତ ହୋଇ ପାରିଲା ନାହିଁ । ପୂରା ଗଣତାନ୍ତ୍ରିକ ଧାରାରେ ସବୁ କାର୍ଯ୍ୟ ଚାଲୁଥିଲା । ସାତଲହଡ଼ି ମଠରୁ ଘରକୁ ବୈଠକ ପ୍ରସାରିତ ହେଲା । ମାସକୁ ଥରେ ବଦଳରେ ସପ୍ତାହକୁ ଥରେ ହେଲା । ନିର୍ଦ୍ଦିଷ୍ଟ ବାର ପ୍ରଥମେ ନଥିଲା । ସୁବିଧା ଦେଖି ବସୁଥିଲୁ । କ୍ରମେ ତାହା ସ୍ଥିର ହୋଇ ପ୍ରତି ଶନିବାର ସଂଧ୍ୟା ହେଲା । ଏ ପର୍ଯ୍ୟନ୍ତ

ଏଇ ସପ୍ତାହାନ୍ତ ଅଧିବେଶନ ସେଇଦିନୁ ଚାଲିଛି । ଦୁଇହଜାର ଅପ୍ରେଲ ପନ୍ଦର ତାରିଖ ଶନିବାର ଦିନ ବହିଟିର ପାଠ ଏବଂ ଆଲୋଚନା ସରିଲା । ପ୍ରାୟ ଛଅ ବର୍ଷକାଳ ନିରବଚ୍ଛିନ୍ନ ଭାବରେ ଏଇ ବହିଟି ଆମ କେତେକଙ୍କୁ ମନ୍ତ୍ରମୁଗ୍ଧ କରି ରଖିଲା । ଏହା ପରେ The Life Divine ଏଯାଏ ଆଲୋଚିତ ହୋଇ ଆସୁଅଛି । ଏସବୁ ସ୍ମୃତିଚାରଣ କରିବାର ଉଦ୍ଦେଶ୍ୟ ହେଲା କେମିତି ଆମ ଅଜାଣତରେ ଚିତ୍ତଭାଇ ଆମକୁ ଏକାଠି କଲେ, ନିମିତ୍ତଟିଏ ହୋଇ ଆମ ସାଥିରେ ବାଟ ଚାଲି ଚାଲିବା ଶିଖାଇଲେ । ଶ୍ରୀଅରବିନ୍ଦଙ୍କୁ ଅଧିକରୁ ଅଧିକ ଜାଣିବା ଅବସରରେ ଜୀବନ ଭିତରକୁ ବାଟଟିଏ ଫିଟାଇବାରେ ସିଏ ଅଗ୍ରଣୀ ମିତ୍ରଟିଏ ପରି ପାଖେ ପାଖେ ରହିଲେ, ମିତ୍ରର ଚକ୍ଷୁରେ ଜଗତକୁ ଅବଲୋକନ କରିବାର କଳା ଶିଖାଇଲେ ।

ଶିକ୍ଷା ଘରେ ଶିକ୍ଷକମାନେ ସଚରାଚର ଥାଆନ୍ତି । ପ୍ରେମୀମାନେ ମଧ୍ୟ ଥାଆନ୍ତି । ମାତ୍ର ଶିକ୍ଷା ସହିତ ଏକାକାର ହୋଇପାରୁଥିବା ବ୍ୟକ୍ତି ଖୁବ୍ କମ୍ ଥାଆନ୍ତି । ଜଣେ ହୁଏତ ଶିକ୍ଷାବିତ୍ ହୋଇପାରେ ତଥାପି ଶିକ୍ଷାସହ ଏକାତ୍ମ ନହୋଇପାରେ । ଚିତ୍ତଭାଇ ଶିକ୍ଷା ସହିତ ଘର କରିଥାଆନ୍ତି ବୋଧହୁଏ । ଥରକର କଥା । ପୁରୀ ସ୍କୁଲରେ ପୂର୍ଣ୍ଣାଙ୍ଗ ଶିକ୍ଷା ଆଲୋଚନାଚକ୍ରକୁ ସେ ନିମନ୍ତ୍ରିତ ହୋଇ ଆସିଥାଆନ୍ତି । ଆଲୋଚନାରେ ଅଂଶଗ୍ରହଣ କଲେ । ଫେରିବାବେଳେ ଅସୁସ୍ଥତା ଅନୁଭବ କଲେ । କଥା ପ୍ରସଙ୍ଗରେ ପଚାରିଲେ କହନ୍ତି ତାହା ପ୍ରକୃତରେ ଶାରିରୀକ ଅସୁସ୍ଥତା ନଥିଲା । ପୂର୍ଣ୍ଣାଙ୍ଗ ଶିକ୍ଷାର ଆଲୋଚନାରେ ଜଣେ ବି ଅପା କିମ୍ବା ଭାଇ ଅଂଶ ଗ୍ରହଣ କରି ନଥିବା ହିଁ ତାଙ୍କ ଅସୁସ୍ଥତାର ମୂଳ କାରଣ । ଶିକ୍ଷା ସହିତ କି ନିବିଡ଼ତା !

ଦୈନିକ ଖବରକାଗଜ ପ୍ରଗତିବାଦୀରେ ପ୍ରତି ସୋମବାର ଚିତ୍ତଭାଇଙ୍କର ଲେଖା ପ୍ରକାଶିତ ହେବା ବୋଧହୁଏ ପଚିଶ ବର୍ଷରୁ ଅଧିକ ହେବ । ସେଇଧାରା ଏଯାବତ୍ ମଧ୍ୟ ଚାଲିଛି । ଭାରତର ନେତୃତ୍ୱ ପରିବର୍ତ୍ତନ ପରିପ୍ରେକ୍ଷୀରେ ଶ୍ରୀ ଅଟଳ ବିହାରୀ ବାଜପେୟୀ ହୋଇଥାଆନ୍ତି ନୂଆ ପ୍ରଧାନମନ୍ତ୍ରୀ । ଏଇ ସମ୍ବନ୍ଧରେ ତାଙ୍କର ଲେଖାଟିଏ କାଗଜରେ ବାହାରିଥାଏ । ସେଥି ସହିତ ଏକମତ ନ ହୋଇ ପାରିବାରୁ ଚିଠିଟିଏ ଲେଖିଥିଲି । ଉତ୍ତର ଆସିଲା, ''କେବେ ଦେଖାହେଲେ କଥାବାର୍ତ୍ତା ହେବା'' । ମୁଁ ଭୁଲି ଯାଇଥାଏ । ସେ କିନ୍ତୁ ଏତେ କାମ ଭିତରେ ଏଇଟି ଭୁଲିନଥାନ୍ତି । ପ୍ରାୟ ଦୁଇମାସ ପରେ ଘଟଣା ଚକ୍ରରେ ସେ ପୁରୀ ୟୁଥ୍ ହଷ୍ଟେଲ୍ ଆସିଥାଆନ୍ତି ଏକ କର୍ମଶାଳାରେ ଯୋଗଦାନ କରିବା ପାଇଁ । ଡାକରା ଆସିଲା । କର୍ମଶାଳା ସରିଯାଇଥାଏ । କିଛି ସମୟ କଥାବାର୍ତ୍ତା ହେଲୁ । କେତେଜଣଙ୍କ ସହିତ ପରିଚୟ କରାଇଦେଲେ । ଆୟୋଜକଙ୍କୁ କହିଲେ, ''ବନ୍ଧୁ ଆସିଛନ୍ତି । ଏଠା କାମ ତ'

ସରିଲା ! ମୁଁ ଏଥର ଯାଏ ।'' ସାଙ୍ଗ ହୋଇ ଘରକୁ ଆସିଲୁ । ଆଉ ଜଣେ କିଏ ସାଙ୍ଗରେ ଥାଆନ୍ତି । ଦାଣ୍ଡଘରେ ବସିବା ଅବସରରେ ସେଇ ଚିଠି କଥା ପଡ଼ିଲା । ଆଲୋଚନା ଯାହା ହେଲା ତାହା ସମ୍ପୂର୍ଣ୍ଣ ବୋଧଗମ୍ୟ ହେବାକୁ ଲାଗିଲା ଦୁଇ ମାସ । କେତେ ଟିକି ନିଖି କଥା ମନେ ରଖି ଅନ୍ୟର ସନ୍ଦେହ ଦୂର କରିବାରେ ମନୋଯୋଗୀ ଏପରି ବିରଳ ମଣିଷ ଜଣେ ପ୍ରକୃତରେ କେତେ ଆପଣାର !

ଚିରଭାଇ ସମସ୍ତଙ୍କର ଆପଣାର ମଣିଷ ପରି ଲାଗନ୍ତି । ତାଙ୍କୁ ଗ୍ରହଣ କରିପାରୁନଥିବା ମଣିଷମାନେ ମଧ ତାଙ୍କର ମିତ୍ରତା ପାଖରେ ଆବଦ୍ଧ ବୋଲି ଆପଣା କଣ୍ଠରେ କହନ୍ତି । ମଣିଷ ମନର ପ୍ରଚଳିତ ଧାରା ଠାରୁ ଭିନ୍ନ ଏକ ସଂପ୍ରସାରିତ ଇଲାକାରେ ତାଙ୍କର ଆହ୍ୱାନ କିଏ ଶୁଣେ ଆଉ କିଏ ଅବା ଶୁଣି ନ ଶୁଣିଲା ପରି ରହିଯାଏ । କିଶୋର ବୟସର ପ୍ରଥମ ପ୍ରକାଶିତ ପୁସ୍ତିକା 'ଦ୍ୱନ୍ଦ୍ୱ ଅଧ୍ୟାୟ' ରୁ କେତେ ଧାଡ଼ି ତାଙ୍କର ପରିଚୟ ଦେଇପାରେ ନିଜ ଭାଷାରେ ।

ଚିରଦିନ ଗାଇବି ମୁଁ ଖାଲି କେହି ପଛେ ନ କରୁ ବିଶ୍ୱାସ
ବିଶ୍ୱଦାଣ୍ଡେ କହି ମୁଁ ବୁଲିବି- ''ଆସିଥିଲି ଆଗାମୀ ମଣିଷ ।''

*******

ଅନାଗତ କଥା କହେ ବୋଲି ଏ ମଣିଷ ବୁଝେ ନାହିଁ ମତେ
କରେ ବୋଲି ଅଶ୍ରୁତ ଘୋଷଣା ପାଏ ନାହିଁ ସ୍ଥାନ ଏ ଜଗତେ ।

*******

ଯୁଗେ ଯୁଗେ ନୂତନ ଆସିଛି ଏହିପରି ଅନାଗତ ରୂପେ
ଶୁଣାଇଛି ଅଶ୍ରୁତ କାହାଣୀ, ମଜାଇଛି ଅନଭ୍ୟସ୍ତ ଧୂପେ ।

*******

ଆତଙ୍କେ କେ ଲୁଚି ପଳାଉଛି ମିଶେ ନାହିଁ ମୋର ଅଭିଯାନେ
ଶିଖେ ନାହିଁ ନୂତନର ଗୀତ ଭବିଷ୍ୟର ଯୁଗ ଆବାହନେ ।
ପୁନଶ୍ଚ : ଏକା ଏକା ଚାଲିଛି ମୁଁ ବୋଲି ବୋଲାଏ ମୁଁ ଲୁପ୍ତ ଅନାହୂତ
ବିଜୟ ଯେ ଲୁଚିଛି ଗରଭେ ବିଶ୍ୱ ଦିନେ ନେବ ମୋର ପଥ ।

ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର
*ଅଧ୍ୟାପକ (ଦର୍ଶନ ବିଭାଗ)*
*ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀ*

... ତାଙ୍କ ସଂସ୍ପର୍ଶରେ ଯେଉଁମାନେ ଆସିଛନ୍ତି ସେମାନେ ଜାଣନ୍ତି ଯେ ବିନମ୍ରତାର ସେ ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ତାଙ୍କ ଭିତରେ ସବୁବେଳେ କଲ୍ଲୋଳିତ ହେଉଥାଏ ସମ୍ପର୍କ ଯୋଡିବାର ବ୍ୟାକୁଳତା, ଆପଣେଇ ନେବାର ସହଜ ପଣ । ଅନାୟାସରେ ଆପେ ଆସି ସେ ଧରା ଦିଅନ୍ତି, ସକାଳର ସୂର୍ଯ୍ୟ ଯେମିତି ଧରା ଦିଏ ଘାସ ଓଠରେ ଶିହରି ଉଠୁଥିବା ଛୋଟ ଏକ ଶିଶିର ଟୋପା ଭିତରେ । ମିତ ବସିବାର ଅମିତ ସରାଗ ନେଇ ସେ ସଂସାର ସାରା ଘୂରି ବୁଲନ୍ତି । ଆତ୍ମୀୟତା ଢ଼ାଳି ଅନ୍ୟର ଭଲମନ୍ଦ ବୁଝନ୍ତି, ସୁଖଦୁଃଖରେ ସହଭାଗୀ ହୁଅନ୍ତି ।...

ପରାର୍ଥ ପଥିକ (ପ୍ରଥମ ଭାଗ)ରୁ ଉଦ୍ଧୃତ ।

... କେତେ କେତେ ଅମଡା ବାଟର ବାଟୋଇ ସେ । ନୂତନ ଅନ୍ୱେଷାରେ ସେ ସବୁବେଳେ ଜଣେ ଅଗ୍ରଦୂତର ଭୂମିକା ନିଭାଇ ଆସିଛନ୍ତି । କାହାପାଇଁ ସେ ସଖା ତ ଆଉ କାହାପାଇଁ ଭାଇ, ଗୁରୁ ବା ମାର୍ଗଦର୍ଶକ । ଯିଏ ବି ତାଙ୍କ ସଂସ୍ପର୍ଶରେ ଆସିଛି, ସିଏ ଅନୁଭବ କରିଛି ଯେ ଚିତ୍ତଭାଇ ତା' ଭିତରେ ଉତ୍ସାହ ଓ ଆତ୍ମବିଶ୍ୱାସ ଆଣିଦେଇଛନ୍ତି, ତା' ମନରୁ ଅବସାଦ ଓ ସଂକୀର୍ଣ୍ଣତାର ମେଘକୁ ଅପସାରି ଦେଇଛନ୍ତି ।

'ପରାର୍ଥ ପଥିକ'ଙ୍କର ଯାତ୍ରା ଅବ୍ୟାହତ ରହୁ, ସହଯାତ୍ରୀ ଦଳକୁ ଏକ ନୂତନ ଭବିଷ୍ୟତ ଅଭିମୁଖେ ଆଗେଇ ନେବାପାଇଁ ଯିଏ ତାଙ୍କୁ ନିମିତ୍ତ କରି ସଂସାରକୁ ପଠାଇଛନ୍ତି ସେହି ପରମ ଶାଶ୍ୱତଙ୍କର ଆଶୀର୍ବାଦ-ମଧୁ ବରଷୁଥାଉ ତାଙ୍କ ଚଲାପଥରେ ।...

ପରାର୍ଥ ପଥିକ (ଦ୍ୱିତୀୟ ଭାଗ)ରୁ ଉଦ୍ଧୃତ ।

ସହଯୋଗ ରାଶି : ୪୫.୦୦ ଟଙ୍କା ମାତ୍ର ISBN - 81 - 88034 - 12 - 6